Vol. XLVI No. 7 UTKAL PRASANGA Regd. ...
Licence No. C.R.N.P 5—Licenced to Post without Pre-Payment



ବଲାଙ୍ଗୀରରେ ସାଧାରଣତନ୍ତ୍ର ଦିବସ, ୧୯୯୦



ବଲାଙ୍ଗୀରରେ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ବେହେରାଙ୍କ ପ୍ୟାରେଡ୍ ପରିଦର୍ଶନ

# ଉତ୍କଳ ପ୍ରସଙ୍ଗ

ଫାଲ୍‌ଗୁନ/ଚୈତ୍ର ୧୯୧୧ ଶକାବ୍ଦ ୪୬ ଭାଗ ୮/୯ମ ସଂଖ୍ୟା ମାର୍ଚ୍ଚ/ଅପ୍ରେଲ ୧୯୯୦



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

*Type setting by Phototype Setter process*

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ଛଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ

# ବନ୍ଦେ ଉତ୍କଳ ଜନନୀ

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ବନ୍ଦେ ଉତ୍କଳ ଜନନୀ ।
ଚାରୁହାସମୟୀ ଚାରୁ ଭାଷମୟୀ
ଜନନୀ, ଜନନୀ, ଜନନୀ ॥

ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ର ତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ॥

ଘନ ବନଭୂମି ରାଜିତ ଅଙ୍ଗେ
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ॥

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ॥

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ ବେଶା,
ପୁଣ୍ୟତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ॥

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡନ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ॥

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନ ବିଘୋଷିତ-କୀର୍ତ୍ତି ଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିର ଶରଣ୍ୟେ
ଜନନୀ, ଜନନୀ, ଜନନୀ ॥



• କୋଟି କୋଟି କଣ୍ଠେ ଆଜି ଉଠୁଛି ଗର୍ଜନରେ ବାଜି , ଉତ୍କଳର ଜୟଗୀତି ଉନ୍ମାଦନା ଭରା ,
କମ୍ପିଉଠୁ ଶୈଳରାଜି ସସାଗରା ଧରା ।
କମ୍ପିଉଠୁ ପୁଣ୍ୟେ ପୁଣ୍ୟେ ଆକାଶ ଅବନୀ ,
ପୁଣ୍ୟମୟୀ ମା' ମୋର ଉତ୍କଳ ଜନନୀ ,
ମୋର ଉତ୍କଳ ଜନନୀ ,
ମୋର ଉତ୍କଳ ଜନନୀ ॥





# ୧୯୯୦
# ଓଡ଼ିଶା ଦିବସ ଉପଲକ୍ଷେ ରାଜ୍ୟପାଳଙ୍କ ବାର୍ତ୍ତା

## କଠିନ ଏବଂ ଅନ୍ତରଙ୍ଗ ପ୍ରୟାସ ହୃତ ଗୌରବକୁ ପୁନରୁଦ୍ଧାର କରିବ

ଓଡ଼ିଶା ପାଇଁ ୧୯୩୬ ମସିହା ଅପ୍ରେଲ ପହିଲା ଦିନର ମହାନ୍ ଐତିହାସିକ ତାତ୍ପର୍ଯ୍ୟ ରହିଛି । ଏହି ଦିବସରେ ତା'ର ଦୀର୍ଘ ଅଭିଳଷିତ ଲକ୍ଷ୍ୟ ପୂର୍ଣ୍ଣ ହୋଇଥିଲା । ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନରେ ଏଇ ମାଟିର ସହସ୍ର ସହସ୍ର ଯୋଗ୍ୟ ସନ୍ତାନ ଦୀର୍ଘ ୩୩ ବର୍ଷ ଧରି ନିଜକୁ ଉତ୍ସର୍ଗ କରିଥିଲେ । ସେମାନଙ୍କର ଦୀପ୍ତିମନ୍ତ ଦେଶପ୍ରେମ ଓ ତ୍ୟାଗପୂତ ଜୀବନ ଆମ ପାଇଁ ପ୍ରେରଣାର ଚିରନ୍ତନ ଉତ୍ସ ହୋଇ ରହିବ । ଓଡ଼ିଶାର ସେହି ନେତୃବର୍ଗଙ୍କ ଉଦ୍ଦେଶ୍ୟରେ ମୁଁ ମୋର ସମ୍ମାନାର୍ହ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ମୂଲ୍ୟବାନ୍ । ଭାରତୀୟ ସଭ୍ୟତାର ବିକାଶ ପାଇଁ ଏହି ମାଟିର ଗୌରବମୟ ଅତୀତ ଏବଂ ଏହାର ଆଧ୍ୟାତ୍ମିକ ତଥା ବୌଦ୍ଧିକ ମୂଲ୍ୟବୋଧର ଅବଦାନ ତାତ୍ପର୍ଯ୍ୟପୂର୍ଣ୍ଣ । ସମ୍ରାଟ ଅଶୋକ ଏଠାରେ ଅହିଂସାର ମୂଳମନ୍ତ୍ର ଶିକ୍ଷା କରିଥିଲେ । ଜୀବନର ସନାତନ ମୂଲ୍ୟବୋଧ ଧର୍ମ ଏବଂ ସେହି 'ଧର୍ମ' ସେ ନିଜେ ପ୍ରଚାର ଓ ଆଚରଣ କରିଥିଲେ । ମାନବ ସମାଜ ତଥା ବିଶ୍ୱ ଶାନ୍ତିକୁ ଏହା ପ୍ରଭାବିତ କରିଥିଲା । ଓଡ଼ିଶାର ବାଣିଜ୍ୟ, ସାହିତ୍ୟ, ନୃତ୍ୟ, ସଙ୍ଗୀତ ଓ କଳା ମଧ୍ୟ ମୂଲ୍ୟବାନ୍ । ଆମର ଅତୀତ, ଗତିଶୀଳ ଓ ଦୁଃସାହସୀ ଜାତି ରୂପେ ଯେ କୌଣସି ଆହ୍ୱାନର ମୁକାବିଲା କରିବା ନିମନ୍ତେ ଲୋକମାନଙ୍କୁ ଅନୁପ୍ରାଣିତ କରିଛି । କେବଳ କଠିନ ଏବଂ ଅନ୍ତରଙ୍ଗ ପ୍ରୟାସ ହିଁ ଓଡ଼ିଶାର ହୃତ ଗୌରବକୁ ପୁନରୁଦ୍ଧାର କରିବ ।

ଓଡ଼ିଶାବାସୀଙ୍କୁ ଏଇ ସ୍ମରଣୀୟ ଦିବସରେ ମୁଁ ମୋର ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି ।

*ଯଜ୍ଞଦତ୍ତ ଶର୍ମା*
(ରାଜ୍ୟପାଳ, ଓଡ଼ିଶା)



# ୧୯୯୦

# ଓଡ଼ିଶା ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

ଅପ୍ରେଲ ପହିଲା ଦିନ ପାଳିତ ହେଉଥିବା ଓଡ଼ିଶା ଦିବସ ଉପଲକ୍ଷେ ରାଜ୍ୟବାସୀଙ୍କ ପ୍ରତି ମୁଁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଓଡ଼ିଶାର ବିପୁଳ ପ୍ରାକୃତିକ ସମ୍ପଦକୁ ବିନିଯୋଗ କରି ଆମେ ଆମ ରାଜ୍ୟକୁ ଅଚିରେ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ଓ ଏହାର ଗର୍ବ, ଗୌରବ ଓ ସ୍ୱାଭିମାନକୁ ପୁନଃ ପ୍ରତିଷ୍ଠିତ କରିବା । ଆଜି ରାଜ୍ୟବାସୀ ଏହି ମହାନ୍ ସଂକଳ୍ପ ନିଅନ୍ତୁ ।

ବନ୍ଦେ ଉତ୍କଳ ଜନନୀ

ବିଜୁ ପଟ୍ଟନାୟକ
(ମୁଖ୍ୟମନ୍ତ୍ରୀ)

# ଏକ ନୂତନ କାର୍ଯ୍ୟକ୍ରମ ନିମନ୍ତେ ଜନସାଧାରଣଙ୍କର ରାଜ୍ୟ

ପ୍ରଧାନମନ୍ତ୍ରୀ ଭି. ପି. ସିଂହ

ପ୍ରିୟ ଦେଶବାସୀ,

କିଛିଦିନ ତଳେ ମାତ୍ର ଆମେ ଆପଣମାନଙ୍କ ମଧ୍ୟରେ ବୁଲୁଥିଲୁ । ଆପଣମାନଙ୍କର ଆସ୍ଥା ପ୍ରାପ୍ତ କରିବା ପାଇଁ, ଗାଁ ଏବଂ ସହରମାନଙ୍କର ଗଳି କନ୍ଦି, ରାସ୍ତା ସବୁଆଡ଼େ ଆମେ ଆପଣମାନଙ୍କ ସଙ୍ଗେ ସମ୍ପର୍କ ରକ୍ଷା କରୁଥିଲୁ । ଆପଣ ଏବଂ ଆମମାନଙ୍କ ମଧ୍ୟରେ ସମ୍ପର୍କରେ ସରକାର ଏକ ପ୍ରତିବନ୍ଧକ ନହୁଅନ୍ତୁ, ସେଥିପାଇଁ ମୁଁ ପ୍ରୟାସ କରିବି । ଆମେ, ଭାରତବର୍ଷର ଜମି ଏବଂ ଶସ୍ୟଭଣ୍ଡାରର ଧୂଳି ଏହି ରାଜଧାନୀକୁ ନେଇ ଆସିଛୁ । ଆମର ପ୍ରତ୍ୟେକ କାର୍ଯ୍ୟରେ ଏହାର ବାସ୍ନା ପଥ ପ୍ରଦର୍ଶକ ହେବ ।

ଦିଲ୍ଲୀ ବେଶ୍ ଚକ୍‌ଚକ୍ ଦେଖାଯାଉଥିଲେ ମଧ୍ୟ, ଲକ୍ଷ ଲକ୍ଷ ଭାରତୀୟଙ୍କ ଗୃହରେ ନିରାଶା ଘୋଟିହୋଇ ରହିଛି । ସେହି ସବୁ ଗୃହର ସ୍ୱର ଏବଂ କୃଷୀ, ଶ୍ରମିକ ଏବଂ ଯୁବଗୋଷ୍ଠୀଙ୍କ ସ୍ୱର ହିଁ ସରକାରଙ୍କର ସ୍ୱର ହେବ । ଯଦି କ୍ଷମତାକୁ ଖଣ୍ଡା ବୋଲି ଧରି ନିଆଯାଏ, ତେବେ ଏହାକୁ ଗରିବ ତଥା କଠିଣ ପରିଶ୍ରମକାରୀ ଜନସମୁଦାୟଙ୍କ ପକ୍ଷରୁ ହିଁ ଚାଳନା କରାଯିବ ।

ଗତ କେଇବର୍ଷ ହେଲା ପରିବର୍ତ୍ତନ ପାଇଁ ସଂଘର୍ଷରେ ଭାରତର ଜନସାଧାରଣଙ୍କର ଏକ ମୁଖ୍ୟ ଅବଦାନ ରହିଛି । ଏଥିପାଇଁ ମୁଁ ଆପଣମାନଙ୍କ ପାଖରେ କୃତଜ୍ଞ । ଆମମାନଙ୍କ ସମ୍ମୁଖରେ ଥିବା ନୂତନ ଆହ୍ୱାନଗୁଡ଼ିକର ମୁକାବିଲା ପାଇଁ ନୂତନ ସରକାରଙ୍କୁ ସମର୍ଥନ ଜଣାଇଥିବାରୁ ମୁଁ ବାମପନ୍ଥୀ ଦଳ ଏବଂ ବି: ଜେ: ପି:ଙ୍କୁ, ଜାତୀୟ ସାମ୍ମୁଖ୍ୟ ଏବଂ ଜନତା ଦଳ ପକ୍ଷରୁ ଧନ୍ୟବାଦ ଅର୍ପଣ କରୁଛି ।

## ସର୍ବସମ୍ମତି ଏବଂ ପୁଣି ମିଳାମିଶାର ଆବଶ୍ୟକତା

ଏକ ଦୀର୍ଘ ଏବଂ ଅନ୍ଧକାରାଚ୍ଛନ୍ନ ରାତି ପରେ, ପ୍ରଭାତ ଆସିଛି, କିନ୍ତୁ ଏହା କୁହୁଡ଼ିଭରା ହୋଇ ରହିଛି । ସରକାରଙ୍କର ଧନାଗାର ଶୂନ୍ୟ । ଆମମାନଙ୍କର ହୃଦୟ ପ୍ରଜ୍ୱଳିତ । ହିଂସା ଏବଂ ରକ୍ତପାତ ଘଟଣା ବହୁତ ହୋଇଛି । ମୁଦ୍ରାସ୍ଫୀତି ଆମ ଲୋକଙ୍କୁ ଦରିଦ୍ର କରିଦେଇଛି । କିନ୍ତୁ ଆମର ଦୁଇଟି ପ୍ରଧାନ ବଳ ରହିଛି । ତାହା ହେଲା ଆପଣମାନଙ୍କର ବିଶ୍ୱାସ ଏବଂ ଆମର ସାହସ । ଏହି ବଳଗୁଡ଼ିକ ଯୋଗୁଁ ଆମେ ଆମର କଠିଣ ସଂଗ୍ରାମରେ ସଫଳ ହୋଇପାରିଲୁ ଏବଂ ତାହା ଏକାକୀ ହିଁ ଆମକୁ ଆମର ନିର୍ଦ୍ଧାରିତ ମାର୍ଗରେ ଅଗ୍ରସର ହେବା ପାଇଁ ପୁନଶ୍ଚ ସାହାଯ୍ୟ କରିବ । ଦେଶ ହେଉଛି ଯେ କୌଣସି ଦଳଠାରୁ ବଡ଼ ।

ଆମେ ଦେଶର ଜ୍ୱଳନ୍ତ ସମସ୍ୟାଗୁଡ଼ିକ ସର୍ବସମ୍ମତି ଏବଂ ପୁଣି ମିଳାମିଶା ଭିତରେ ସମାଧାନ କରିବା ପାଇଁ ଚେଷ୍ଟା କରିବୁ । ଆମେ ବିପକ୍ଷ ଦଳଙ୍କୁ ମଧ୍ୟ ବିଶ୍ୱାସ କରିବୁ । ଗଠନାତ୍ମକ ସହଯୋଗ କରିବା ପାଇଁ ବିପକ୍ଷ ଦଳ ପ୍ରତିଶ୍ରୁତି ଦେଇଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଭାରତ ହେଉଛି ଆମ ସମସ୍ତଙ୍କର ଏବଂ ସମସ୍ତେ ଏହାର ଉନ୍ନତି ନିମନ୍ତେ କାର୍ଯ୍ୟ କରିବା ଅବଶ୍ୟ ଉଚିତ ।

ପଞ୍ଜାବ ଜନିତ ଦୁର୍ଦ୍ଦଶା ବର୍ତ୍ତମାନ ସୁଦ୍ଧା ରହିଛି । ବିଚ୍ଛିନ୍ନବାଦ ଆମ ସମସ୍ୟାର ସମାଧାନ କରିପାରିବ ନାହିଁ । ସେହି ସମସ୍ୟାର ସମାଧାନ ପାଇଁ ଏକ ଜାତୀୟ ପ୍ରଚେଷ୍ଟାର ଗୁରୁ ଆବଶ୍ୟକତା ରହିଛି । ହିନ୍ଦୁ ଓ ଶିଖ୍‌ମାନେ ଏକତ୍ର ବହୁତ ବଳିଦାନ ଦେଇଥିଛନ୍ତି ଏବଂ ଏହା ହେଲା ଆମ ଆଶାର ମୂଳଭିତ୍ତି । ପଞ୍ଜାବ, ଜାମ୍ମୁ ଓ କାଶ୍ମୀର ଏବଂ ରାମ ଜନ୍ମଭୂମି/ବାବ୍ରୀ ମସ୍‌ଜିଦ୍ ପ୍ରଭୃତି ଜଟିଳ ସମସ୍ୟାଗୁଡ଼ିକର ସମାଧାନ ନିମନ୍ତେ ଜାତୀୟ ସ୍ତରରେ ଚେଷ୍ଟା କରାଯିବ ।

ଦଙ୍ଗା ଏବଂ ହିଂସାତ୍ମକ ଘଟଣା ଆମକୁ ଦୋହଲାଇ ଦେଇଥିଲେ ମଧ୍ୟ ଆମେ ନଭୁଲିବା ଉଚିତ୍ ଯେ ଦେଶର ଭାବନାତ୍ମକ ଏକତା ହେଉଛି ଆମର ସବୁଠାରୁ ବଡ଼ ବଳ । ଆମେ ଏହାକୁ ଦୁର୍ବଳ ହେବା ପାଇଁ ଦେବା ନାହିଁ । ଗୋଟିଏ ଦେଶ ଖଣ୍ଡେ କାଗଜ ଉପରେ ଏକ ମାନଚିତ୍ର ନୁହେଁ, ଏହା ଲୋକମାନଙ୍କର ହୃଦୟରେ ଅଧିଷ୍ଠିତ ଏବଂ ହୃଦୟ ଯଦି ବିଭକ୍ତ ହୋଇଯାଏ, ଦେଶ ମଧ୍ୟ ବିଭକ୍ତ ହୋଇଯାଏ । ଆମେ ଏହା ଘଟିବା ପାଇଁ ଦେବାନାହିଁ । ରକ୍ତପାତ ବହୁତ ହୋଇଛି । ବର୍ତ୍ତମାନ ଆମକୁ ଅଶ୍ରୁ ଗଡ଼ାଇ ଏହି ରକ୍ତକୁ ଧୋଇ ନେବାକୁ ହେବ । ଆମେ ସ୍ୱର୍ଗ ପାଇଁ ପ୍ରତିଶ୍ରୁତି ଦେଉନାହୁଁ । ତେବେ, ଆମ ପାଖରେ ଯଦି କେବଳ ଏକ କୁଡ଼ିଆ ଘର ଅଛି ସେହି କୁଡ଼ିଆ ଘରେ ଆପଣ ଯେପରି ରହିପାରନ୍ତି, ସେଥିପାଇଁ ଆପଣଙ୍କ ସହିତ ଆମେ ସହଯୋଗ କରିବୁ । ଆମ ପାଖରେ ଯଦି ଅଳ୍ପ କିଛି ଖାଦ୍ୟ ଥାଏ, ଆମେ ସମସ୍ତେ ତାହାକୁ ଏକତ୍ର ବାଣ୍ଟିକରି ଖାଇବା ।

## ନୈତିକ ମୂଲ୍ୟବୋଧର ପୁନରୁଦ୍ଧାର

କ୍ଷମତା ଯଦି ସରକାରୀ ସଚିବାଳୟମାନଙ୍କରେ ଠୁଳ ହୋଇ ରହେ, ତେବେ ସ୍ୱାଧୀନତାର ମହତ୍ତ୍ୱ ଏହି ବିରାଟ ଦେଶ ହୃଦୟଙ୍ଗମ କରିପାରିବ ନାହିଁ । ଭାରତରେ ଗ୍ରାମ, ସହର ତଥା ନଗରୀମାନଙ୍କରେ ବାସ କରୁଥିବା ଆମର ନିୟୁତ ନିୟୁତ ଲୋକ ନିଜ ନିଜକୁ ଶାସନ କରିବାର ଦାୟିତ୍ୱ ନିଜେ ବହନ କରିବା ଉଚିତ । ରାମ ମନୋହର ଲୋହିଆ ଏବଂ ଜୟପ୍ରକାଶ ନାରାୟଣଙ୍କର କ୍ଷମତା ବିକେନ୍ଦ୍ରୀକରଣ ନିମନ୍ତେ ଯେଉଁ ସ୍ୱପ୍ନ ଥିଲା, ଆମେ ତାହାକୁ ପୂରଣ କରିବୁ । ଆମେ ପ୍ରକୃତ ପଞ୍ଚାୟତରାଜ ପାଇଁ ଆଇନ କରିବୁ ଯାହାକି ଆମର ସମ୍ବିଧାନିକ ଗଠନ ସଂକ୍ରାନ୍ତ ମୂଳ ଆବଶ୍ୟକତାଗୁଡ଼ିକ ପ୍ରତି ଧ୍ୟାନ ଦେବ ।

ମାନ ଏବଂ ମୂଲ୍ୟବୋଧ ହେଉଛି ଗଣତନ୍ତ୍ରର ମୂଳଭିତ୍ତି । ତେଣୁ ଗଣତାନ୍ତ୍ରିକ ସଂସ୍ଥାମାନଙ୍କ ମର୍ଯ୍ୟାଦାର ପୁନରୁଦ୍ଧାର କରାଯିବ ଏବଂ ବିଚାର ବିଭାଗ, ସି: ଏ: ଜି: ଏବଂ ପାର୍ଲ୍ୟାମେଣ୍ଟର ସ୍ୱାଧୀନତା ଦୃଢ଼ୀଭୂତ କରାଯିବ ।

ଜନ ଜୀବନର ନୈତିକ ମୂଲ୍ୟବୋଧଗୁଡ଼ିକୁ ଯେପରି ଉଲ୍ଲଂଘନ ନକରାଯାଏ, ସେଥିପାଇଁ ଆମେ "ଲୋକପାଳ" ପ୍ରତିଷ୍ଠା କରିବୁ ଯେ କି ଏପରିକି ପ୍ରଧାନମନ୍ତ୍ରୀଙ୍କ ବିଷୟରେ ମଧ୍ୟ ତଦନ୍ତ କରିପାରିବେ ।

## ଉନ୍ମୁକ୍ତ ସରକାର

ଆମକୁ ଖବର ସଂଗ୍ରହ କାର୍ଯ୍ୟ ଅଧିକ ସୁଗମ କରିବାକୁ ପଡ଼ିବ । ସରକାର ଯଦି ପୂର୍ଣ୍ଣ ଲୋକ ଲୋଚନରେ କାର୍ଯ୍ୟ କରେ, ତେବେ ଅନୁଚିତ କାର୍ଯ୍ୟ କମ୍ ହୋଇଯିବ । ଏହି ପରିପ୍ରେକ୍ଷୀରେ ସରକାରୀ ଗୋପନୀୟତା ଆଇନକୁ ସଂଶୋଧିତ କରାଯିବ ଏବଂ ସରକାରୀ କାର୍ଯ୍ୟ ଅଧିକ ନିର୍ମଳ ଭାବରେ ସମ୍ପାଦନ କରାଯିବ । ଯେଉଁ କ୍ଷେତ୍ରରେ ଜାତୀୟ ନିରାପତ୍ତା ଏବଂ ବୈଦେଶିକ ସମ୍ପର୍କ ଦୃଷ୍ଟିକୋଣରୁ ଗୋପନୀୟତାର ଆବଶ୍ୟକତା ଥିବ, ସେହି ସବୁ କ୍ଷେତ୍ରରେ କେବଳ ଗୋପନୀୟତା ଅବଲମ୍ବନ କରାଯିବ ।

ଖବରର ଅବାଧ ସରବରାହ ଗଣତନ୍ତ୍ର ନିମନ୍ତେ ଏକ ପ୍ରଥମ ଆବଶ୍ୟକତା । ଖବର ଜାଣିବାର ଅଧିକାର ଆମ ସମ୍ବିଧାନରେ ଅନ୍ତର୍ଭୁକ୍ତ କରାଯିବ ଏବଂ ଦୁରଦର୍ଶନ ଓ ଆକାଶବାଣୀକୁ ସ୍ୱୟଂଶାସିତ କରାଯିବ ।

ମୁଦ୍ରାସ୍ଫୀତି ଗରିବ ଲୋକମାନଙ୍କୁ ବ୍ୟଥିତ କରିଛି । ଏହି କଷ୍ଟକର ପରିସ୍ଥିତିରେ ଆମେ ଶାସନ ଭାର ଗ୍ରହଣ କରିଛୁ । ଏହି ସବୁ ଅସୁବିଧା ଆମକୁ ଶକ୍ତି ଏବଂ ସଙ୍କଳ୍ପ ଯୋଗାଇବାରେ ସାହାଯ୍ୟ କରିବ । ଏହି କାର୍ଯ୍ୟରେ ଆମେ ଆପଣମାନଙ୍କର ସମର୍ଥନ ଦରକାର କରୁ ।

## ଦୁର୍ବଳ ଶ୍ରେଣୀଙ୍କ ପାଇଁ ସହାୟତା

ଭାରତ ଏହାର ଗ୍ରାମଗୁଡ଼ିକରେ ବାସ କରେ । ଆଜିକାଲି ଗ୍ରାମଗୁଡ଼ିକରୁ ଧନ, ଶ୍ରମଶକ୍ତି ଏବଂ ପ୍ରତିଭା ବାହାରକୁ ଚାଲିଯାଉଛି । ଯେତେଦିନ ପର୍ଯ୍ୟନ୍ତ ଏହି ଅବସ୍ଥା ରହିଥିବ, ସେତେଦିନ ପର୍ଯ୍ୟନ୍ତ ଗ୍ରାମଗୁଡ଼ିକ ଅର୍ଥନୈତିକ ହିସାବରେ ଦୁର୍ବଳ ହୋଇ ରହିଥିବେ । ଆମେ, ଦେଶରେ ବିନିଯୋଗ କରାଯାଉଥିବା ଅର୍ଥର ଅନ୍ୟୁନ ଅର୍ଦ୍ଧ ଭାଗ ଗ୍ରାମାଞ୍ଚଳରେ ଲଗାଇବା ପାଇଁ ସଙ୍କଳ୍ପ ନେଉଛୁ । କୃଷୀ ଏବଂ ଶ୍ରମିକମାନଙ୍କ କାରବାର ଅଧିକ ଖରାପ ଦିଗକୁ ଗତି କରିଛି ଏବଂ ସେମାନଙ୍କୁ କଠିଣ ପରିଶ୍ରମ ବଦଳରେ କରଜ ଭାର ଏବଂ ଦାରିଦ୍ର୍ୟ ମିଳିଛି । କ୍ଷୁଦ୍ର କୃଷୀ, ଭୂମିହୀନ ଶ୍ରମିକ, କ୍ଷେତ ମଜୁରିଆ, କାରିଗର ଏବଂ ତନ୍ତୀମାନଙ୍କୁ ଋଣ ସାହାଯ୍ୟ ଯୋଗାଇ ଦିଆଯିବ । କୃଷି ଆମ ଅର୍ଥନୀତିର ପ୍ରଧାନ ଅବଲମ୍ବନ ହୋଇଥିଲେ ମଧ୍ୟ, ଆମକୁ ଶିଳ୍ପ ମଧ୍ୟ ଦୃଢ଼ୀଭୂତ କରିବାକୁ ପଡ଼ିବ । ଏକ ବଳିଷ୍ଠ ଭାରତ ପାଇଁ ଏକ ବଳିଷ୍ଠ ଔଦ୍ୟୋଗିକ ଆଧାର ଆବଶ୍ୟକ । ତେଣୁ ସବୁ ଶିଳ୍ପ ବିଶେଷ କରି କ୍ଷୁଦ୍ର ଏବଂ କୃଷିଭିତ୍ତିକ ଶିଳ୍ପଗୁଡ଼ିକୁ ଗଠନମୂଳକ ଭାବରେ ସାହାଯ୍ୟ ପ୍ରଦାନ କରାଯିବ ।

ଶିଳ୍ପ କାରଖାନା ଚାଲିବାରେ ଶ୍ରମିକମାନଙ୍କର ମତକୁ ଅଧିକତର ଭାବରେ ବିଚାରକୁ ନେବାପାଇଁ ଆମେ ଶିଳ୍ପ ପରିଚାଳନାରେ ଶ୍ରମିକମାନଙ୍କୁ ଭାଗ ଦେବା ସକାଶେ ଏକ ଯୋଜନା ଆରମ୍ଭ କରିବୁ । ସରକାରୀ କ୍ଷେତ୍ରରେ ଏହା ଶୀଘ୍ର ପ୍ରବର୍ତ୍ତନ କରିବା ପାଇଁ ଚେଷ୍ଟା କରାଯିବ ।

ତଫସିଲଭୁକ୍ତ ଜାତି ଏବଂ ତଫସିଲଭୁକ୍ତ ଉପଜାତିର ବହୁ ସଂଖ୍ୟକ ଭାଇମାନଙ୍କର ଏପରିକି ମୂଳ ଆଶ୍ରୟସ୍ଥଳ ମଧ୍ୟ ନାହିଁ । ସେମାନେ ଯେପରି ଏକ ମହତ୍ୱପୂର୍ଣ୍ଣ ଓ ସମ୍ମାନଜନକ ଜୀବନ ବିତାଇ ପାରିବେ, ତାହା ନିଶ୍ଚିତ ରୂପେ ଦେଖିବା ଆମର ପ୍ରଥମ କାର୍ଯ୍ୟ ହେବ । କ୍ଷୁଧା ରୂପକ ଅଗ୍ନିକୁ ଖାଦ୍ୟ ଦ୍ୱାରା ଲିଭାଇ ଦିଆଯାଇ ପାରିବ । କିନ୍ତୁ ବଞ୍ଚିତ ଲୋକଙ୍କର ମନରେ ଯେଉଁ ଅଗ୍ନି ଲାଗିଥାଏ, ତାହା କେବଳ ବିଦ୍ରୋହ ସୃଷ୍ଟି କରିବାରେ ସହାୟକ ହୋଇଥାଏ । ଅର୍ଥନୈତିକ ଓ ସାମାଜିକ ନ୍ୟାୟ ନିମନ୍ତେ କ'ଣ କ'ଣ ଆବଶ୍ୟକ, ସେଥିନେଇ ଏକ କାର୍ଯ୍ୟକ୍ରମ ଇତିହାସ ଦେଶ ଆଗରେ ଉପସ୍ଥାପନା କରିଛି । ସାରା ଜୀବନ ଦୁଃଖ ଭୋଗ କରିବା ଦୁର୍ବଳ ଶ୍ରେଣୀ

ବ୍ୟକ୍ତିମାନଙ୍କ ପକ୍ଷରେ ଏକ ପ୍ରକାର ନିୟତିର ବିଧାନ ହୋଇ ରହିଛି । ଏକ ମର୍ଯ୍ୟାଦାବିହୀନ ଜୀବନ ବିତାଇବାଠାରୁ ବଳି ଅଧିକ ଖରାପ ବା ଦୁଃଖଦାୟକ କଥା ଆଉ କିଛି ହୋଇ ନପାରେ । ଦୁର୍ବଳ ଶ୍ରେଣୀର ବ୍ୟକ୍ତିଙ୍କ ଜୀବନରେ ଆଶା ଯେ ଆଲୋକ ଆଣି ଦେଉ, ତାହା ସାମାଜିକ ନ୍ୟାୟ ଦୃଢ଼ ଭାବରେ ଉଲ୍ଲେଖ କରେ ।

ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକେ ଯେ ବିନା ଭୟରେ ଆମ ଦେଶର ପ୍ରଗତି କାର୍ଯ୍ୟରେ ସମଭାଗୀଦାର ହୋଇ ବାସ କରନ୍ତୁ, ତାହା ଦେଖିବା ପାଇଁ ଆମେ ଚେଷ୍ଟିତ ରହିବୁ । ଦେଶର ଭବିଷ୍ୟତ ମହିଳା ।ନଙ୍କ ଉପରେ ନିର୍ଭର କରେ । ସେମାନେ ଆଜି ଅବହେଳିତ ଓ ନିଷ୍ପେଷିତ ହୋଇ ରହିଛନ୍ତି । ପଦ୍ଧତିଗତ ପରିବର୍ତ୍ତନ ଦିଗରେ ପ୍ରଥମ ଚରଣ ହେଲା ମହିଳାମାନଙ୍କୁ ଜାତୀୟ ମୁଖ୍ୟ ଧାରାରେ ଅନ୍ତର୍ଭୁକ୍ତ କରିବା ।

ମାନବ ସଂସ୍ଥାନ ହେଉଛି ଆମ ଦେଶର ସବୁଠାରୁ ବଡ଼ ସମ୍ପଦ । ବେରୋଜଗାରୀ ଯୋଗୁଁ ଏହି ସମ୍ପଦର ଉଚିତ୍ ସଦ୍‌ବ୍ୟବହାର କରାଯାଇ ପାରୁନାହିଁ । ଆମେ କାର୍ଯ୍ୟ କରିବାର ଅଧିକାରକୁ ସମ୍ବିଧାନର ଏକ ଅଂଶ ରୂପେ ଅନ୍ତର୍ଭୁକ୍ତ କରିବୁ । ଏହାର ଅର୍ଥ ନୁହେଁ ଯେ, ପ୍ରତ୍ୟେକଙ୍କୁ ସରକାରୀ ଚାକିରୀ ମିଳିବ । କିନ୍ତୁ, ଏହାର ନିଶ୍ଚିତ ଅର୍ଥ ହେଉଛି ଏହା ଯେ, ଲୋକମାନଙ୍କର ଏକ ରାଜନୈତିକ ଅଧିକାର ରହିବ, ଯଦ୍ଵାରା କି ସରକାର ବେକାରମାନଙ୍କ ପାଇଁ କାର୍ଯ୍ୟ ସୃଷ୍ଟି କରିବା ନିମନ୍ତେ ଉପଯୁକ୍ତ ନୀତି ଅନୁସରଣ କରିବା ପାଇଁ ବାଧ୍ୟ ହେବେ ।

## ଯୁବଗୋଷ୍ଠୀଙ୍କ ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ଭୂମିକା

ସରକାର ପରିବର୍ତ୍ତନରେ ଯୁବଗୋଷ୍ଠୀ ଏକ ପ୍ରଧାନ ଭୂମିକା ଗ୍ରହଣ କରିଛି । ମୁଁ ସେମାନଙ୍କ ନିକଟରେ କୃତଜ୍ଞ । କୌଣସି ଦେଶର ଯୁବଗୋଷ୍ଠୀଙ୍କୁ କେବଳ ସରକାର ପରିବର୍ତ୍ତନ କରିବା ପାଇଁ ଆହ୍ୱାନ ଦିଆଯାଏ ନାହିଁ, ବରଂ ସେମାନଙ୍କୁ ଇତିହାସ ପରିବର୍ତ୍ତନ କରିବା ପାଇଁ ଆହ୍ୱାନ ଦିଆଯାଇଥାଏ । ଯେଉଁଠାରେ କ୍ଷମତା ରହିଥାଏ, ସେହି ସ୍ଥାନରେ କେବଳ ଅନୁଷ୍ଠାନ ବା ପଦ୍ଧତିର ପରିବର୍ତ୍ତନ କରାଯାଏ ନାହିଁ । ସମାଜକୁ ବଦଳାଇବାକୁ ହେଲେ, ସାମାଜିକ ଶକ୍ତିଗୁଡ଼ିକୁ ଗତିଶୀଳ କରିବାକୁ ପଡ଼ିବ । ମୁଁ ଆମର ଯୁବଗୋଷ୍ଠୀକୁ ଆହ୍ୱାନ କରୁଛି ଯେ, ସେମାନେ କେବଳ ସରକାରକୁ ବଦଳାଇବା ପାଇଁ ନୁହେଁ ବରଂ ଗରିବ ଲୋକମାନଙ୍କ ଜୀବନରେ ମୌଳିକ ପରିବର୍ତ୍ତନ ଆଣିବା ପାଇଁ ଜନସାଧାରଣଙ୍କୁ ସଙ୍ଗଠିତ କରନ୍ତୁ । ଅର୍ଥ କ୍ଷମତାର କୁପ୍ରଭାବରୁ ଆମ ଗଣତନ୍ତ୍ରକୁ ଉଦ୍ଧାର କରିବାକୁ ହେବ । ଏହି ପରିପ୍ରେକ୍ଷୀରେ, ଯୁବଗୋଷ୍ଠୀ ସମସ୍ତ କାର୍ଯ୍ୟକ୍ଷମ ବ୍ୟକ୍ତିମାନଙ୍କୁ ଏକ ନୂଆ ବ୍ୟବସ୍ଥା ନିମନ୍ତେ ହେଉଥିବା ସଂଗ୍ରାମ ପାଇଁ ଗତିଶୀଳ କରିପାରିବେ ।

## ନିରପେକ୍ଷ ନୀତିର ଦୃଢ଼ୀକରଣ

ଏକ ଜାତୀୟ ସମ୍ମତି ବା ବୁଝାମଣା ଉପରେ ଗୋଟିଏ ଦେଶର ବୈଦେଶିକ ନୀତି ଗଠିତ ହୋଇଥାଏ । ଆମର ନିରପେକ୍ଷ ନୀତି ଏକ ଜାତୀୟ ପ୍ରତିଶ୍ରୁତିରୁ ଉଦ୍‌ଭୂତ ହୋଇଅଛି । ପରିବର୍ତ୍ତିତ ପରିସ୍ଥିତିରେ ଆମେ ନିରପେକ୍ଷ ନୀତିକୁ ଦୃଢ଼ୀଭୂତ କରିବା ପାଇଁ ଚେଷ୍ଟା କରିବୁ । ଶାନ୍ତି, ନିରସ୍ତ୍ରୀକରଣ ଏବଂ ବିକାଶ ପାଇଁ ଆମର ସଂଗ୍ରାମ ଅବ୍ୟାହତ ରହିବ । ଦକ୍ଷିଣ ଆଫ୍ରିକାର ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ତଥା ସାହସିକ ପାଲେଷ୍ଟାଇନ୍ ଲୋକଙ୍କ ଅବିଚ୍ଛେଦ୍ୟ ଅଧିକାର ସାବ୍ୟସ୍ତ କରାଇବା ପାଇଁ ଆମେ ପ୍ରତିଶ୍ରୁତିବଦ୍ଧ । ଆମର ପଡ଼ୋଶୀ ଦେଶମାନଙ୍କ ସଙ୍ଗେ ସମ୍ପର୍କରେ ଉନ୍ନତି ଆଣିବା ପାଇଁ ଉପଯୁକ୍ତ ପଦକ୍ଷେପ ନିଆଯିବ । "ସାର୍କ"କୁ ଏକ ସକ୍ରିୟ ଅନୁଷ୍ଠାନରେ ପରିଣତ କରିବା ପାଇଁ ଆମେ ଚେଷ୍ଟିତ ରହିବୁ ।

ସରକାର ପରିବର୍ତ୍ତନ କରିବା ନିମନ୍ତେ ସମର୍ଥନ ଦେଇଥିବାରୁ ମୁଁ ଆପଣମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଛି । ନୂତନ ସରକାରର କାର୍ଯ୍ୟ ପାଇଁ ଆମେ ଅଧିକତର ସମର୍ଥନ ଆବଶ୍ୟକ କରୁଛୁ । ଆମେ ଏପରି ଏକ ସରକାର ପ୍ରତିଷ୍ଠା କରିବୁ, ଯାହା ପାଇଁ ପ୍ରତି ଭାରତୀୟ ଗର୍ବିତ ମନେ କରିବେ ।

"ଜୟହିନ୍ଦ୍"

---

ଜାତି ଉଦ୍ଦେଶ୍ୟରେ ବେତାର ଭାଷଣ
୩ ଡିସେମ୍ବର ୧୯୮୯



## ଓଡ଼ିଶାର ଏକ ପ୍ରାଚୀନ ଓ ସୁପ୍ରସିଦ୍ଧ ଶୈବପୀଠ

# ଧବଳେଶ୍ୱର

### ଚୌଦ୍ୱାର - ଢେଙ୍କାନାଳ ମଧ୍ୟସ୍ଥ କୁଶପଙ୍ଗିଂ ଛକଠାରୁ ମାତ୍ର ପାଞ୍ଚ କି.ମି. ଦୂର



- କଟକ - ସମ୍ବଲପୁର ୪୨ ନମ୍ବର ଜାତୀୟ ରାଜପଥରେ ଯାଉଥିବାବେଳେ ଆପଣ ଯଦିମାତ୍ର ଏକ ଘଣ୍ଟା ସମୟ ଦେଇପାରିବେ , ତେବେ ଧବଳେଶ୍ୱର ପରିଦର୍ଶନର ସୁଯୋଗ ଲାଭ କରିପାରିବେ ।
- ଧବଳେଶ୍ୱର ଗ୍ରାମରୁ ମହାନଦୀସ୍ଥିତ ଏହି ରମଣୀୟ ଦ୍ୱୀପକୁ ଦିନର ଯେକୌଣସି ସମୟରେ ଯିବା ଆସିବା କରିବା ପାଇଁ ନୌକାର ସୁବ୍ୟବସ୍ଥା ରହିଛି ।
- ପର୍ଯ୍ୟଟକମାନଙ୍କ ସୁବିଧାପାଇଁ ଓଡିଶା ପର୍ଯ୍ୟଟନ ବିଭାଗ ପକ୍ଷରୁ ଏଠାରେ ଗୋଟିଏ ପାନ୍ଥଶାଳା ନିର୍ମିତ ହୋଇଛି । ସେଠାରେ ଖାଦ୍ୟପେୟର ବନ୍ଦୋବସ୍ତ ମଧ୍ୟ କରାଯାଇଛି ।

ସବିଶେଷ ବିବରଣୀ ପାଇଁ ଯୋଗାଯୋଗ ସ୍ଥାପନ କରନ୍ତୁ :—

- ପର୍ଯ୍ୟଟନ କାର୍ଯ୍ୟାଳୟ
  ଅରୁଣୋଦୟ ମାର୍କେଟ୍ ପରିସର
  କଟକ . ଫୋନ୍ - 23525

- ପାନ୍ଥଶାଳା , ଧବଳେଶ୍ୱର
  ଫୋନ୍ - ଆଠଗଡ଼ - 64

ପର୍ଯ୍ୟଟନ ବିଭାଗ
ଓଡ଼ିଶା ସରକାର
ଭୁବନେଶ୍ୱର 751014

# ବାଲ୍ମୀକି ରାମାୟଣରେ କଳିଙ୍ଗ

ଶ୍ରୀ ଗଣେଶ ପ୍ରସାଦ ପରିଡା

ତ୍ରେତୟା ଯୁଗର ପରମପୁରୁଷ ଶ୍ରୀରାମଚନ୍ଦ୍ର ତତ୍କାଳୀନ କଳିଙ୍ଗ ତଥା ବର୍ତ୍ତମାନର ଓଡ଼ିଶାକୁ ଆସିଥିଲେ ଓ କିଛି କାଳ ଅତିବାହିତ କରିଥିଲେ। ଏହା ବାଲ୍ମୀକି ରାମାୟଣରୁ ଜଣାଯାଏ। ଜନକ ନନ୍ଦିନୀ ସୀତାଙ୍କୁ ରାବଣ ଦଣ୍ଡକାରଣ୍ୟର ପଞ୍ଚବଟୀରୁ ଅପହରଣ କରି ନେଇଥିବା ବାଲ୍ମୀକି ଲେଖିଛନ୍ତି। ତତ୍କାଳୀନ କଳିଙ୍ଗରେ ସମଗ୍ର ଦଣ୍ଡକାରଣ୍ୟ ଥିଲା ଓ ବର୍ତ୍ତମାନର ଓଡ଼ିଶାରେ କିଛି ଅଂଶ ଅଛି। କେତେକ ଧାରଣା କରନ୍ତି ଓଡ଼ିଶାର ଚିତ୍ରକୋଣ୍ଡା ହେଉଛି ରାମାୟଣ ବର୍ଣ୍ଣିତ ଚିତ୍ରକୁଟ। କିନ୍ତୁ ବସ୍ତରରେ ଥିବା ଚିତ୍ରକୁଟ ବାଲ୍ମୀକି ବର୍ଣ୍ଣିତ ଚିତ୍ରକୁଟ ବୋଲି କେତେକ ମନେ କରନ୍ତି। ବସ୍ତର ଓଡ଼ିଶାର ଏକ ଅଂଶ ଥିଲା ଓ ୧୯୦୨ରେ ମଧ୍ୟପ୍ରଦେଶ ଶାସନଭୁକ୍ତ ସମ୍ବଲପୁର ଆଦି ସହିତ ସାମିଲ ହୋଇଥିଲା। ୧୯୩୬ରେ ମଧୁ ବାରିଷ୍ଟରଙ୍କ ଚେଷ୍ଟାରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ହେଲାବେଳେ ସମ୍ବଲପୁର ଆଦି ଫେରି ଆସିଲେ ମଧ୍ୟ ବସ୍ତର ଫେରିଲା ନାହିଁ। ପୁରାଣ ବର୍ଣ୍ଣିତ ମାଲ୍ୟବନ୍ତ ପର୍ବତ ଗୁହାରେ ସୀତାଙ୍କୁ ହରାଇ ରାମ ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ। ବାଳି ବଧ ପରେ ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ଏଠାରେ ବର୍ଷାକାଳ ଅତିବାହିତ କରିଥିଲେ। ତାହା ବର୍ତ୍ତମାନ ମାଲକାନଗିରି ନାମରେ ନାମିତ। ସେହିଭଳି ବାଳି ଯେଉଁ ସ୍ଥାନରେ ମରିଥିଲା ତାହା ବାଳିମେଲା ବା ବାଲିମେଲାଭାବେ ପରିଚିତ। ଋକ୍ଷ ବାନରଙ୍କର ରାଜଧାନୀ କିଷ୍କିନ୍ଧା। ତାହାରି ନିକଟରେ ସଂରକ୍ଷିତ ଜଙ୍ଗଲ ମଧ୍ୟରେ ଅବସ୍ଥିତ। ଓଡ଼ିଶାର ଗବେଷକମାନେ ଏହା ଉପରେ ଏତେ ଧ୍ୟାନ ଦେଇ ନଥିବା ଯୋଗୁ ସଂରକ୍ଷିତ ଜଙ୍ଗଲ ମଧ୍ୟରୁ ତାହା ଯଥାର୍ଥ ଭାବରେ ଆବିଷ୍କୃତ ହୋଇ ନାହିଁ। ସେହିଭଳି ଫୁଲବାଣୀ ଜିଲ୍ଲାରେ ରାମାୟଣ ବର୍ଣ୍ଣିତ ପମ୍ପାସର ଥିଲେ ମଧ୍ୟ ତାହା ସମସ୍ତଙ୍କ ଆଗରେ ଉପସ୍ଥାପିତ କରାଯାଇ ନାହିଁ। ରାମ ସୀତାଙ୍କ ସ୍ମୃତି ବହନ କରି ବହୁ ଅଞ୍ଚଳ, ବହୁ ଆଦିବାସୀ ସମ୍ପ୍ରଦାୟ ଏବେବି ଓଡ଼ିଶାରେ ଅଛି। ସେ ସବୁକୁ ଉପଯୁକ୍ତ ପ୍ରମାଣ ସହିତ ଜାତି ସମକ୍ଷରେ ଥୋଇବା ଐତିହାସିକ ପ୍ରତ୍ନତାତ୍ତ୍ୱିକଙ୍କ କର୍ତ୍ତବ୍ୟ। କେବଳ ଅବହେଳାରୁ ସେଥିପ୍ରତି ସେମାନଙ୍କ ଦୃଷ୍ଟି ପଡ଼ିନାହିଁ।

ଏଫ୍. ଇ. ପାର୍ଜିଟାର୍, ଐତିହାସିକ ହେମଚନ୍ଦ୍ର ରାୟ ଚୌଧୁରୀ ଓ ଡଃ ନବୀନ କୁମାର ସାହୁ ପ୍ରଭୃତି କୁରୁକ୍ଷେତ୍ର ଯୁଦ୍ଧର କାଳ ଖ୍ରୀଷ୍ଟପୂର୍ବ ୯୦୦ରୁ ୧୦୦୦ ଶତାବ୍ଦୀ ପର୍ଯ୍ୟନ୍ତ ନିରୂପଣ କରନ୍ତି। କୁରୁକ୍ଷେତ୍ର ଯୁଦ୍ଧଠାରୁ ରାମାୟଣର କାଳ ଖୁବ୍ ବେଶୀ ହେଲେ ୫୦୦ ବର୍ଷ ହୋଇପାରେ। କାରଣ କୁରୁକ୍ଷେତ୍ର ଯୁଦ୍ଧ ସମୟକୁ ରାମାୟଣର ପ୍ରଧାନ ବାନର ବୀର ହନୁମାନ ବଞ୍ଚିଥିଲେ। ମାତ୍ର ଯୁଦ୍ଧ କରିବାର ବିପୁଳ ଶକ୍ତି ତାଙ୍କର ନଥିଲା। ତାହା ଥିଲେ ସେ ତାଙ୍କ ସାନଭାଇ ପବନକୁମାର ଭୀମଙ୍କ ସହ ମିଶି କୁରୁବଳ ସଂହାର କରି ପାରିଥାନ୍ତେ। ସେ କେବଳ ନନ୍ଦୀଘୋଷ ରଥ ଉପରେ ଅବସ୍ଥାପିତ ହୋଇଥିଲେ। ସେହିଭଳି ୨୧ ଥର ନିକ୍ଷତ୍ରୀ କରିଥିବା ମହାବୀର ପରଶୁରାମ ମହାଭାରତ ସମୟକୁ ବୃଦ୍ଧ ହୋଇ ଯାଇଥିଲେ। ସେ ମହାଭାରତର ପ୍ରଧାନ ପ୍ରଧାନ ବୀର ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣଙ୍କର ଗୁରୁ ଥିଲେ। ତେଣୁ ଏହି ସବୁ କାରଣରୁ ରାମାୟଣର କାଳ ଖ୍ରୀ: ପୂ: ୧୫୦୦ ବର୍ଷ ହୋଇପାରେ। ସେତେବେଳକୁ କଳିଙ୍ଗର ଶାସକ କୌଣସି ଆର୍ଯ୍ୟ ନଥିଲେ। କୁରୁକ୍ଷେତ୍ର ଯୁଦ୍ଧ ସମୟକୁ ମଧ୍ୟ ନିଷାଦରାଜ ଶ୍ରୁତାୟୁଧ ରାଜା ଥିଲେ। ରାମାୟଣରେ ବର୍ଣ୍ଣିତ ଦଣ୍ଡକାରଣ୍ୟ, ପମ୍ପାସର ଆଦିରେ ଶାବରୀୟ ଆଦିମାନେ ଥିବାର ସୂଚନା ମିଳେ। ଏଭଳି କି ମହେନ୍ଦ୍ରଗିରି ଉପରେ ଗୃଧରାଜ ସମ୍ପାତି ଥିଲେ। କିଷ୍କିନ୍ଧା କାଣ୍ଡର ୩୭/୨ରେ ବାନରମାନଙ୍କର ଯେଉଁ ବସତି ବର୍ଣ୍ଣନା ରହିଛି ସେଥିରେ ସ୍ପଷ୍ଟ ଭାବରେ କୁହା ହୋଇଛି, "ମହେନ୍ଦ୍ର, ହିମବଦ୍ ବିନ୍ଧ୍ୟ କଳ୍ୟାସ ଶିଖରେଷୁ ଚ।" ତେଣୁ ବିନ୍ଧ୍ୟ ପର୍ବତ ଉପରେ ବାନର ଜାତୀୟ ଆଦିବାସୀ ବାସ କରୁଥିବା ପ୍ରମାଣ ଅଭାବ ନାହିଁ। ଏହି ବାନରମାନେ ଆଦିବାସୀ ଶ୍ରେଣୀୟ। ସେତେବେଳେ ସେମାନେ ଅଶିକ୍ଷିତ ନଥିଲେ। ବାଲ୍ମୀକି ରାମାୟଣ କିଷ୍କିନ୍ଧା କାଣ୍ଡ ତୃତୀୟ ସର୍ଗ ୨୮ ଶ୍ଳୋକରେ ଶ୍ରୀରାମ ଲକ୍ଷ୍ମଣଙ୍କୁ କହୁଛନ୍ତି, ଯେ ଋଗ୍‌ବେଦ ଶିକ୍ଷା କରିନାହିଁ, ଯାହାର ଯଜୁର୍ବେଦର ଜ୍ଞାନ ନାହିଁ ଏବଂ ସାମ ବେଦରେ ଯେ ବିଦ୍ୱାନ ନୁହେଁ ସେ କେବେ ଏଭଳି କଥା କହି ପାରନ୍ତା ନାହିଁ। ତେଣୁ ବାନରମାନେ ଶିକ୍ଷିତ ଥିଲେ। ପୁଣି ବାଲ୍ମୀକି ୫/୫୩/୩ରେ ଲେଖିଛନ୍ତି; କପିନାଂ କିଳ ଲାଙ୍ଗୁଳମିଷ୍ଟଂ ଭବତି ଭୂଷଣମ୍। ଅର୍ଥାତ୍ ଲାଙ୍ଗୁଳ ସେମାନଙ୍କର ଭୂଷଣ ଥିଲା। ଲଙ୍କା କାଣ୍ଡରେ ବର୍ଣ୍ଣିତ ଅଛି ଭରତ ହନୁମାନଙ୍କଠାରୁ ଶ୍ରୀରାମଙ୍କ ଆଗମନ ସମ୍ବାଦ ପାଇ ଆନନ୍ଦରେ ଷୋଳଟି ସୁନ୍ଦରୀ କନ୍ୟା ତାଙ୍କୁ ଦାନ କରିଥିଲେ। ସେ ବାନର ହୋଇଥିଲେ ଭରତ କନ୍ୟା ପ୍ରଦାନ କରନ୍ତେ ନାହିଁ କିମ୍ବା କନ୍ୟାମାନେ ହନୁମାନଙ୍କୁ ଗ୍ରହଣ କରନ୍ତେ ନାହିଁ। ତେଣୁ ଖୁବ୍ ସମ୍ଭବତଃ ଏହି ବାନର ଓଡ଼ିଶାର ଲାଞ୍ଜିଆ ଶବର ଥିଲେ। ଏବେ ବି ତାଙ୍କ ପଛ ପଟରେ ଲାଞ୍ଜ ଭଳି ପିନ୍ଧା ବସନ ରହେ।

ଶ୍ରୀରାମଚନ୍ଦ୍ର ବନ ଗମନ କଲାବେଳେ ତାଙ୍କର ବୟସ ପଚିଶ ହୋଇଥିଲା । ୩/୪୭/୧୦ରେ ବାଲ୍ମୀକି କହନ୍ତି :

ମମ ଭର୍ତାମହାତେଜା ବୟସା ପଞ୍ଚବିଂଶକଃ ।
ଅଷ୍ଟାଦଶ ହି ବର୍ଷାଣି ମମ ଜନ୍ମାନି ଗଣ୍ୟତେ ॥

– "ସେତେବେଳେ ମୋର ସ୍ୱାମୀ ମହାତେଜା ରାମଙ୍କର ବୟସ ପଚିଶ ବର୍ଷ ହୋଇଥିଲା ଏବଂ ମୋର ବୟସ ଜନ୍ମ ସମୟରୁ ଗଣନା କଲେ ଅଠର ବର୍ଷ ହୋଇଥିଲା ।"

ଅରଣ୍ୟ କାଣ୍ଡ ୩୮/୬ରେ ବାଲ୍ମୀକି ମାରୀଚ ମୁଖରେ ରାବଣଙ୍କୁ ରାମଙ୍କ ବିଷୟରେ କୁହାଇଛନ୍ତି :

ବାଲୋ ଦ୍ୱାଦଶ ବର୍ଷୋଽୟମକୃତାସ୍ତ୍ର ରାଘବଃ ।

ଅର୍ଥାତ୍ – ମୋ ମା ତାଡ଼କାକୁ ବଧ କରି ମୋତେ ଶାଣିତ ଶର ଦ୍ୱାରା ତାଡ଼ିତ କରି ଶତ ଯୋଜନ ଦୂରବର୍ତୀ ସମୁଦ୍ରରେ ଫୋପାଡ଼ି ଦେଲେ । "ସେତେବେଳେ ସେ ପିଲା ଓ ତାଙ୍କର ବୟସ ହୋଇଥିଲା ବାର ବର୍ଷ ।" ଏହି ଉକ୍ତିରୁ ଜଣାଯାଉଛି ସୀତାଙ୍କୁ ବିବାହ କଲାବେଳକୁ ରାମଙ୍କର ବୟସ ୨୫–୧୨=୧୩ ବର୍ଷ ଓ ସୀତାଙ୍କର ବୟସ ହୋଇଥିଲା ମାତ୍ର ଛଅ । ୩/୪୭/୪–୫ରେ ସୀତା ଲଙ୍କାଧିପତି ରାବଣଙ୍କୁ କହିଛନ୍ତି, ମୁଁ ଇକ୍ଷ୍ୱାକୁ ରାଜଭବନରେ ବାର ବର୍ଷ ବାସ କରି ସର୍ବଥା ପୂର୍ଣ୍ଣ ମନୋରଥା ହୋଇ ନାନା ପ୍ରକାର ଅମାନୁଷିକ ଭୋଗ ସମ୍ଭୋଗ କରିଥିଲି । ଅନନ୍ତର ତ୍ରୟୋଦଶ ବର୍ଷରେ ରାଜା ଦଶରଥ ମନ୍ତ୍ରୀମାନଙ୍କ ସହିତ ରାମଙ୍କୁ ରାଜ୍ୟରେ ଅଭିଷିକ୍ତ କରିବା ପାଇଁ ମନ୍ତ୍ରଣା କଲେ ଇତ୍ୟାଦି । ତେଣୁ ବନ ଗମନ କଲା ବେଳକୁ ସୀତାଙ୍କୁ ୧୮ ହୋଇଥିଲା ଏବଂ ବାର ବର୍ଷ ସେ ଅଯୋଧ୍ୟାରେ ଇକ୍ଷ୍ୱାକୁ ବଂଶର ବୋହୂ ହୋଇଥିଲେ । ଶ୍ରୀରାମଙ୍କର ଅଭିଷେକର କାଳ ସ୍ଥିର ହୋଇଥିଲା – ଚୈତ୍ରମାସର ପୁଷ୍ୟା ନକ୍ଷତ୍ରଯୁକ୍ତ ଶୁଭଲଗ୍ନରେ । ମହାରାଜ ଦଶରଥ ତାଙ୍କର ପୁରୋହିତ ଓ ଅମାତ୍ୟବର୍ଗଙ୍କୁ ୨/୩/୪ରେ କହିଛନ୍ତି :

ଚୈତ୍ରଃ ଶ୍ରୀମାନୟଂ ମାସଃ ପୁଣ୍ୟଃ ପୁଷ୍ପିତ କାନନଃ ।
ଯୌବରାଜ୍ୟାୟ ରାମସ୍ୟ ସର୍ବମେବୋପକଳ୍ପ୍ୟତାମ୍ ॥

– ଅତି ଶୋଭାମୟ ଶୁଭ ଚୈତ୍ରମାସ ଉପସ୍ଥିତ । ଏହି ସମୟରେ କାନନ ସମୂହ ପୁଷ୍ପରାଜିରେ ସମୃଦ୍ଧ । ଏହି ମାସରେ ଆପଣଙ୍କ ରାମଚନ୍ଦ୍ରଙ୍କ ଅଭିଷେକର ପ୍ରୟୋଜନୀୟ ବସ୍ତୁ ସଂଗ୍ରହ କରନ୍ତୁ । ଦଶରଥ ମଧ୍ୟ ଶ୍ରୀରାମଙ୍କୁ କହିଛନ୍ତି :

ତସ୍ମାତ୍ତ୍ୱଂ ପୁଷ୍ୟା ଯୋଗେନ ଯୌବରାଜ୍ୟମବାପ୍ନୁ ହି ।
୨/୩/୪୧

– ସେଣୁ ତୁ ମୋର ଉପଯୁକ୍ତ ପୁତ୍ର, ତେଣୁ ପୁଷ୍ୟା ନକ୍ଷତ୍ରଯୁକ୍ତ ଶୁଭ ଲଗ୍ନରେ ଯୁବରାଜ ପଦ ଲାଭ କର ।

ଚନ୍ଦ୍ର ଚୈତ୍ର ମାସର ପୂର୍ଣ୍ଣିମା ତଥିରେ ଚିତ୍ରା ନକ୍ଷତ୍ରଯୁକ୍ତ ହୁଏ । ଚିତ୍ରା ହେଉଛି – ଚତୁର୍ଦଶ ନକ୍ଷତ୍ର । ଆଉ ପୁଷ୍ୟା ହେଉଛି ଅଷ୍ଟମ ନକ୍ଷତ୍ର । ସାଧାରଣତଃ ଚୈତ୍ର ଶୁକ୍ଳ ପଞ୍ଚମୀରୁ ନବମୀ ମଧ୍ୟରେ ବାସନ୍ତୀ ଦୁର୍ଗାପୂଜା ସମୟରେ ପୁଷ୍ୟା ନକ୍ଷତ୍ର ଯୋଗ ହୁଏ । ଚୈତ୍ର ଶୁକ୍ଳ ନବମୀରେ ଶ୍ରୀରାମ ଜନ୍ମ ଗ୍ରହଣ କରିଥିଲେ । ତେଣୁ ପଚିଶ ବର୍ଷ ପୂର୍ଣ୍ଣ ହେବାର ତିନିଦିନ ପୂର୍ବରୁ ପଞ୍ଚମୀ କିମ୍ବା ଷଷ୍ଠୀ ତିଥିରେ ସେ ଅଷ୍ଟାଦଶ ବର୍ଷୀୟା ପତ୍ନୀ ସହିତ ବନବାସ କରିଥିଲେ । ସେମାନେ ବନବାସର ଶେଷଦିନ ପହଞ୍ଚିଥିଲେ ଚିତ୍ରକୂଟରେ । ବର୍ତମାନ ଏହି ଚିତ୍ରକୂଟ ମହାରାଷ୍ଟ୍ର ପ୍ରଦେଶରେ ଗୋଦାବରୀ କୂଳରେ ବୋଲି ନିରୂପିତ ହୋଇଛି । ମାତ୍ର ଚିତ୍ରକୂଟ କେବେ ମହାରାଷ୍ଟ୍ର ପ୍ରଦେଶରେ ହେବ ନାହିଁ, ମଧ୍ୟପ୍ରଦେଶର ବସ୍ତର ଜିଲ୍ଲାରେ କିମ୍ବା ଓଡ଼ିଶାରେ ତାହା ହେବ । ସେହି ଚିତ୍ରକୂଟରେ ସେ ବାଲ୍ମୀକିଙ୍କ ଆଶ୍ରମକୁ ଯାଇଥିଲେ । ଏହି ବାଲ୍ମୀକି, ରାମାୟଣ ଲେଖକ ନୁହନ୍ତି । କୋରାପୁଟରେ ବାଲ୍ମୀକି ନାମରେ ଗୋଟିଏ ଜାତି ଅଛନ୍ତି । ମନେହୁଏ ଏହି ବାଲ୍ମୀକି ଜାତି ଚିତ୍ରକୂଟରେ ଥିବା ସେହି ଋଷି ବାଲ୍ମୀକିଙ୍କ ବଂଶଧର । ସେହି ଚିତ୍ରକୂଟରେ ଭରତ ଶ୍ରୀରାମଙ୍କୁ ଭେଟିଥିଲେ । ଭରତ ଫେରିଯିବାର କେତୋଟି ଦିନ ପରେ ରାମ ଜାଣିଲେ ରାକ୍ଷସ ଖର ଅଧ୍ୟକ୍ଷତାରେ ତାହାର ଅନୁଚର ରାକ୍ଷସମାନେ ତପସ୍ୱୀମାନଙ୍କ ଉପରେ ଭୀଷଣ ଅତ୍ୟାଚାର ଆରମ୍ଭ କରି ଦେଇଛନ୍ତି । ଶ୍ରୀରାମ ସେମାନଙ୍କୁ ଅଭୟ ଦେଇ ସେଠାରେ କେତେଦିନ ରହିଗଲେ । ତାପରେ ସେ ବୃଦ୍ଧ ଅତ୍ରି ମୁନିଙ୍କ ଆଶ୍ରମକୁ ଗ୍ଲଲିଗଲେ । ସେଠାରେ ମୁନି ଓ ତାଙ୍କ ପତ୍ନୀ ଅନସୂୟା ତାଙ୍କୁ ଆଦର କରିଥିଲେ । ତାପର ଦିନ ସେମାନେ ଦଣ୍ଡକାରଣ୍ୟ ଆଡ଼କୁ ଗ୍ଲଲିଗଲେ ଓ ବାଟରେ ଶ୍ରୀରାମ ବିରାଧକୁ ବଧ କଲେ । ପରେ ସେ ବିଭିନ୍ନ ମୁନି ଆଶ୍ରମ ମଧ୍ୟ ଦେଇ ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ସେଠାରେ ସେ ଦେଖିବାକୁ ପାଇଥିଲେ ମୁନି ମାଣ୍ଡକର୍ଣ୍ଣିଙ୍କ ତପୋବଳେ ନିର୍ମିତ 'ପଞ୍ଚପସରା' – ନାମକ ସରୋବର । ଏହି ସରୋବର କଥା କାଳିଦାସ ମଧ୍ୟ ଉଲ୍ଲେଖ କରିଛନ୍ତି । ଏଥିରେ ସବୁ ସମୟରେ ଜଳପୂର୍ଣ୍ଣ ହୋଇଥାଏ ଏବଂ ସରୋବର ମଧ୍ୟ ସଙ୍ଗୀତ ଓ ବାଦ୍ୟର ଶବ୍ଦ ଶୁଣାଯାଇଥାଏ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ସହ ଦଣ୍ଡକାରଣ୍ୟର ବିଭିନ୍ନ ଋଷିଙ୍କ ଆଶ୍ରମରେ ଏକାଧିକ ଥର ବାସ କରିଛନ୍ତି । ସେମାନେ କେଉଁଠି ଗ୍ଲରି ମାସ, କେଉଁଠି ଛଅ ମାସ, କେଉଁଠି ପନ୍ଦର ଦିନ, କେଉଁଠି ଏକ ବର୍ଷ ଅତୀତ କରିଥିବା ବାଲ୍ମୀକି ଲେଖିଛନ୍ତି । ଏହିଭଳି ଭାବେ ସେ ବିଭିନ୍ନ ମୁନି ଆଶ୍ରମରେ ଦଶ ବର୍ଷ ଅତୀତ କଲେ ।

ରମତସ୍ତାନୁକୂଲ୍ୟେନ ଯଯୁଃ ସମ୍ବତ୍ସରା ଦଶ ।

ତାପରେ ସେମାନେ ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଫେରିଆସି ପ୍ରାୟ ଦୁଇ ବର୍ଷରୁ କିଛି ବେଶୀ କାଳ କଟାଇଲେ । ସେଠାରୁ ସେମାନେ ମୁନିଶ୍ରେଷ୍ଠ ଅଗସ୍ତ୍ୟଙ୍କ ଆଶ୍ରମକୁ ଗଲେ । ଅଗସ୍ତ୍ୟ ସେମାନଙ୍କୁ ଆଦର କରି ଆଶ୍ରମରେ ସ୍ଥାନ ଦେଲେ ଓ ମହେନ୍ଦ୍ର ପ୍ରଦତ୍ତ ବୈଷ୍ଣବ ଧନୁ, ଉତ୍ତମ ଶର, ତୂଣ ଦ୍ୱୟ ଅସି ପ୍ରଭୃତି ଦାନ କରିଥିଲେ । ଅଗସ୍ତ୍ୟଙ୍କ ଆଶ୍ରମରୁ ଶ୍ରୀରାମ ପଞ୍ଚବଟୀକୁ ଗଲେ । ପଞ୍ଚବଟୀ ସେଠାରୁ ଆଠ କ୍ରୋଶ ଉତ୍ତରରେ ଗୋଦାବରୀ କୂଳରେ । ପଞ୍ଚବଟୀକୁ ଯିବା ବାଟରେ ଅରୁଣ ପୁତ୍ର ଗୃଧରାଜ ଜଟାୟୁ ସହିତ ଭେଟ ହେଲା । ତାପରେ ପଞ୍ଚବଟୀର ଏକ ସୁରମ୍ୟ ସ୍ଥାନରେ ପର୍ଣ୍ଣଶାଳା ନିର୍ମାଣ କରି ବାସ କଲେ । ଏହିଭଳି ତେର ବର୍ଷ ଅତୀତ ହେବାକୁ ମାତ୍ର କେତୋଟି ମାସ ଅଛି ହେମନ୍ତ ଋତୁରେ ସୂର୍ପଣଖା ପଞ୍ଚବଟୀକୁ ଆସି ଶ୍ରୀରାମ ପ୍ରଭୃତିଙ୍କୁ ଦେଖିଲା । ସୂର୍ପଣଖା ପୂର୍ବେ ବିବାହ କରିଥିଲା ବିଦ୍ୟୁଜ୍ଜିହ୍ୱକୁ । ରାବଣ ରସାତଳକୁ ଜୟ କରିବା ଉଦ୍ଦେଶ୍ୟରେ ଯାଇଥିଲା ବେଳେ କାଳକେୟମାନଙ୍କ ସହିତ ବିଦ୍ୟୁଜ୍ଜିହ୍ୱକୁ ସେ ହାଣି ପକାଇଥିଲା । ରାବଣ ରସାତଳରୁ ଫେରିଲା ପରେ ସୂର୍ପଣଖା କାନ୍ଦି କାନ୍ଦି ତାର ବୈଧବ୍ୟ କଥା ଜଣାଇବାରୁ ତାକୁ ଜନସ୍ଥାନରେ ରଖାଇଥିଲା ଏବଂ ତାକୁ ଜଗି ରଖିବା ପାଇଁ ଚଉଦ ହଜାର ରାକ୍ଷସଙ୍କ ସହିତ ଖର ସେଠାରେ ରହିଥିଲା । ରାମାୟଣରେ ରହିଛି । ରାମଚନ୍ଦ୍ରଙ୍କ ବନବାସର ତ୍ରୟୋଦଶ ବର୍ଷର ହେମନ୍ତ କାଳର ବର୍ଣ୍ଣନା ରହିଛି । ସେତେବେଳେ ଖୁବ୍ ସମ୍ଭବତଃ ମାର୍ଗଶିର ମାସ ହେବ – ଶସ୍ୟଶାଳିନୀ ପୃଥିବୀ ଏବଂ ତୁଷାରମାଳିନୀ କୌମୁଦୀ ରାମ ସୀତାଙ୍କର ପରମ ପ୍ରୀତି ଉତ୍ପାଦନ କରୁଥାଏ । ଲକ୍ଷ୍ମଣ କହୁଛନ୍ତି :

ରବି ସଂକ୍ରାନ୍ତ ସୌଭାଗ୍ୟସ୍ତୁଷାରାବୃତ ମଣ୍ଡଳଃ ।
ନିଶ୍ୱାସାନ୍ଧ ଇବାଦର୍ଶଶ୍ଚନ୍ଦ୍ରମା ନ ପ୍ରକାଶତେ ।

– "ଚନ୍ଦ୍ରଙ୍କ ସୌଭାଗ୍ୟ ସୂର୍ଯ୍ୟଙ୍କ ପ୍ରତି ସଂକ୍ରମିତ ହୋଇଛି । ଚନ୍ଦ୍ରମଣ୍ଡଳ ତୁଷାର ଦ୍ୱାରା ଆବୃତ ହେବାରୁ ନିଃଶ୍ୱାସର ବାଷ୍ପ ଦ୍ୱାରା ମଳିନ ହୋଇଯାଇଥିବା ଦର୍ପଣ ଭଳି ଚନ୍ଦ୍ର ଶୋଭା ପାଉ ନାହାନ୍ତି ।"

ଏହି ବର୍ଣ୍ଣନା ଉପକୂଳର ଶୀତ ଋତୁର ବର୍ଣ୍ଣନା ଭଳି ହୋଇଥିଲେ ମଧ୍ୟ ଏହା ଶୀତ ଋତୁର ନୁହେଁ । ମାର୍ଗଶିର ମାସରେ ଦଣ୍ଡକାରଣ୍ୟ ଅଞ୍ଚଳରେ ଶୀତର ପ୍ରକୋପ ଉପକୂଳଠାରୁ ଯଥେଷ୍ଟ ଅଧିକ । ମାର୍ଗଶିର ମାସରେ

ଯେ ଦଣ୍ଡକାରଣ୍ୟ ଯାଇଛି ସେ ବୁଝିବ ସେଠାରେ ଶୀତର ପ୍ରଭାବ କିପରି । ଅରଣ୍ୟ କାଣ୍ଡ ୩/୧୬/୬ରେ ନବ ଶସ୍ୟ ଓ ପିତୃଗଣଙ୍କ ପୂଜା କଥା କୁହା ହୋଇଛି । କାରଣ ପୌଷ ମାସରେ ନବାନ୍ନକୃତ୍ୟ ସ୍ମୃତି ଶାସ୍ତ୍ରରେ ନିଷିଦ୍ଧ । ବାଲ୍ମୀକି ଲକ୍ଷ୍ମଣଙ୍କ ମୁଖରେ କୁହାଇଛନ୍ତି :

ନବାଗ୍ରୟଣ ପୂଜାଭିରଭ୍ୟର୍ଚ୍ୟ ପିତୃ ଦେବତାଃ ।
କୃତାଗ୍ରୟଣକାଃ କାଳେ ସନ୍ତୋ ବିଗତକଲ୍ମଷାଃ । ୩/୧୬/୬

— ଏହି ସମୟରେ ସାଧୁ ପୁରୁଷମାନେ ନବ ଶସ୍ୟ ଦ୍ୱାରା ଦେବ ଓ ପିତୃଗଣଙ୍କ ଅର୍ଚ୍ଚନା କରି ଏବଂ ନବ ଶସ୍ୟ ଯଜ୍ଞ ଯଥା ସମୟରେ ସମ୍ପାଦନ କରି ପାପଶୂନ୍ୟ ହୋଇଛନ୍ତି ।

ଏହି ସମୟରେ ସୂର୍ପଣଖା ସେଠାକୁ ଆସି ରାମଙ୍କୁ ବିବାହ କରିବାକୁ ଇଚ୍ଛା କରନ୍ତେ ଶ୍ରୀରାମଙ୍କ ଆଦେଶରେ ଲକ୍ଷ୍ମଣ ତାର ନାକ ଓ କାନ କାଟି ଦେଲେ । ସେ ସଙ୍ଗେ ସଙ୍ଗେ ତାର ମାଉସୀ ପୁଅ ଭାଇ ଖରକୁ ନିଜର ଦୁର୍ଦ୍ଦଶା ଜଣାଇଲା ଓ ଖର ଦୂଷଣ ଚଉଦ ହଜାର ସୈନ୍ୟ ଧରି ରାମ ଲକ୍ଷ୍ମଣଙ୍କୁ ମାରି ଦେବାକୁ ଯୁଦ୍ଧ କଲା । ସମସ୍ତେ ଶ୍ରୀରାମଙ୍କ ଦ୍ୱାରା ବଧ ହେଲେ । ଏହି କଥା ରାବଣ ଜାଣିବାକୁ ବେଶୀ ସମୟ ଲାଗିଲା ନାହିଁ । ସେ ମାରୀଚକୁ ବୁଝାଇ ମାୟା ମୃଗ କରି ପଠାଇ ଦେଲା । ସୁନାର ହରିଣ ଦେଖି ସୀତା ଲୋଭ କରନ୍ତେ ଶ୍ରୀରାମ ତାକୁ ମାରି ଆଣିବା ପାଇଁ ଗଲେ । ରାମଙ୍କ ଶରରେ ମାରୀଚ ବଧ ହେଲା ବେଳେ ରାମଙ୍କ ସ୍ୱରକୁ ଅନୁସରଣ କରି ହାହି ଲକ୍ଷ୍ମଣ ଧ୍ୱନି ଦେଲା । ତାହା ସୀତା ଶୁଣନ୍ତେ ଲକ୍ଷ୍ମଣଙ୍କୁ ରାମଙ୍କ ପାଖକୁ ପଠାଇଲେ । ଏ ମଧ୍ୟରେ ରାବଣ ଆସି ସୀତାଙ୍କୁ ହରଣ କରି ଲଙ୍କାକୁ ନେଇଗଲା ।

ଶ୍ରୀରାମ ଲକ୍ଷ୍ମଣ ଫେରି ଆସି କୁଡ଼ିଆ ଭିତରେ ସୀତାଙ୍କୁ ନଦେଖି ଗୋଦାବରୀ ନଦୀକୁ ଖୋଜିବା ପାଇଁ ଗଲେ । କାଳେ ସୀତା ଗୋଦାବରୀକୁ ପଦ୍ମ ତୋଳିବାକୁ ଆସିଥାଇ ପାରେ ଏହି ଧାରଣା ରାମଙ୍କର ଥିଲା । ତେଣୁ ପଞ୍ଚବଟୀ ବନ ଗୋଦାବରୀ କୂଳରେ ଠିକ୍ ଦଣ୍ଡକ ଅରଣ୍ୟକୁ ଲାଗିଥିଲା । ବର୍ତ୍ତମାନ ତାହା ବୋଧେ ଆନ୍ଧ୍ର ବା ମଧ୍ୟପ୍ରଦେଶରେ ହେବ । ପୂର୍ବେ ତାହା କଳିଙ୍ଗରେ ଥିଲା । ଶ୍ରୀରାମ ସୀତାଙ୍କୁ ନପାଇ ବ୍ୟସ୍ତ ହୋଇ ପଡ଼ିବାରୁ ଲକ୍ଷ୍ମଣ ତାଙ୍କୁ ବୋଧ ଦେଇ ସମଗ୍ର ବନ ସ୍ଥାନ ଖୋଜିବା ପାଇଁ ଚେଷ୍ଟା କଲେ । ସେମାନେ ଯାଉ ଯାଉ ବାଟରେ ଜଟାୟୁକୁ ଦେଖିଲେ । ଜଟାୟୁଠାରୁ ରାବଣ ସୀତାଙ୍କୁ ନେଇ ଯାଉଥିବା ସମ୍ବାଦ ପାଇଲେ । ସେଠାରୁ ସେ ଘୋର ବନ ମଧ୍ୟକୁ ଯାଇ ପଶ୍ଚିମ ଦିଗକୁ ଗଲେ । ତା'ପରେ ଦକ୍ଷିଣ ଆଡ଼କୁ ତିନିକୋଶ ଯାଇ କ୍ରୌଞ୍ଚାରଣ୍ୟ ନାମକ ନିବିଡ଼ ଅରଣ୍ୟରେ ପ୍ରବେଶ କଲେ । ପୁଣି ସେ ପୂର୍ବ ଆଡକୁ ତିନିକୋଶ ଯାଇ କ୍ରୌଞ୍ଚାରଣ୍ୟ ଅତିକ୍ରମ ପୂର୍ବକ ମତଙ୍ଗାଶ୍ରମରେ ପହଞ୍ଚିଲେ । ସେଠାରେ ସେମାନେ ଦେଖିଲେ ପର୍ବତ ଦେହରେ ପାତାଳ ସଦୃଶ ଗଭୀର ଏକ ଗିରି ଗହ୍ୱର । ତାହାରି ନିକଟରେ ଏକ ଭୀଷଣ ବଦନା ଅୟୋମୁଖୀର ନାସା, କର୍ଣ୍ଣ ଓ ସ୍ତନ କାଟି ପକାଇଲେ । ସେ ଭୀଷଣ ଚିତ୍କାର କରି ପଳାଇଗଲା । ତା'ପରେ ସେମାନେ କବନ୍ଧ ରାକ୍ଷସକୁ ଭେଟି ତାର ବାହୁ କର୍ତ୍ତନ କଲା ପରେ ସେ ନିଜର ଅଭିଶାପ ବିଷୟ ବର୍ଣ୍ଣନା କରି ରାମଙ୍କ ଦ୍ୱାରା ମୁକ୍ତି ପାଇବାକୁ ପ୍ରାର୍ଥନା କଲା । ଶ୍ରୀରାମ ତାକୁ ଏକ ଖାତରେ ପକାଇ ଅଗ୍ନି ସଂଯୋଗ କରନ୍ତେ ସେ ଶାପ ମୁକ୍ତ ହୋଇ କହିଲା ପମ୍ପା ସରୋବର ତୀରରେ ଋଷ୍ୟମୂକ ପର୍ବତ ଅଛି । ସେହି ପର୍ବତର ଗୁହାରେ ବାନରରାଜ ସୁଗ୍ରୀବ ଅଛନ୍ତି । ତୁମେ ତାଙ୍କ ସହିତ ମିତ୍ରତା ସ୍ଥାପନ କରି ସୀତାଙ୍କୁ ଲାଭକର ।

କବନ୍ଧ ପମ୍ପାସର ଓ ଋଷ୍ୟମୂକକୁ ଯିବା ପାଇଁ ରାମଙ୍କୁ କହିଲେ, ପଶ୍ଚିମ ଦିଗକୁ ଏହି ଯେଉଁ ପଥ ପଡ଼ିଛି ସେହି ଦିଗକୁ ଯାଇ କିଛି ପଥ ପରେ ସେହି ବନକୁ ଅତିକ୍ରମ କରି ନନ୍ଦନ ବନ ଭଳି ଉତ୍ତର କୁରୁ ବନକୁ ଯିବ । ସେଠାରେ ସମସ୍ତ ଋତୁ ଏକ ସମୟରେ ବିଦ୍ୟମାନ ଥାନ୍ତି । ତୁମେ ତୁହେଁ ବନରୁ ବନ, ପର୍ବତରୁ ପର୍ବତ ବୁଲି ଶେଷରେ ପମ୍ପାସରକୁ ଯିବ ।

ସେହି ସରୋବରରେ ଗୋଡ଼ି କଙ୍କର ନାହିଁ କିମ୍ବା ଏହାର ତୀର ଭୂମି ପିଚ୍ଛିଳ ନୁହେଁ । ଘାଟଗୁଡ଼ିକ ସମତଳ ଓ ଶୈବାଳଶୂନ୍ୟ । ତାହା ପଦ୍ମ, ଉତ୍ପଳ ତଥା ବାଲୁକା ଭୂମି ସମନ୍ୱିତ । ସେଠାରେ ହଂସ, ଭେକ, କ୍ରୌଞ୍ଚ ଓ କୁରରମାନେ ବିଚରଣ କରି ମନୋହର ସ୍ୱରରେ ରାବ କରନ୍ତି । ତୁମେ ଦୁହେଁ ସେହି ସ୍ଥୂଳକାୟ ଘୃତପିଣ୍ଡ ସଦୃଶ ପକ୍ଷୀମାନଙ୍କୁ ଭକ୍ଷଣ କରିବ । ସେହି ପମ୍ପା ସରୋବରରେ ଉତ୍କୃଷ୍ଟ ରୋହୀ, ଭେକା ଓ ଚିଙ୍ଗୁଡ଼ି ମାଛମାନ ଶର ଦ୍ୱାରା ମାରି ତାହାର କାତି ଓ ପକ୍ଷ ଛଡ଼ାଇ ରାନ୍ଧି ଖାଇବ । ସେଠାରେ ତିଳକ ଓ ନକ୍ତମାଳ ବୃକ୍ଷମାନ ଫୁଲରେ ପରିପୂର୍ଣ୍ଣ । ସେଠାରେ କେହି ମଣିଷ ନଥିବାରୁ ତାହା କେହି ଚୟନ କରନ୍ତି ନାହିଁ । ସେଠାରେ ମତଙ୍ଗ ମୁନି ତପସ୍ୟାରତ । ସେହି ମୁନିଙ୍କ ସେବାକାରିଣୀ ଏକ ଶ୍ରମଣୀ ଶବରୀ ରହିଛି । ସେ ତୁମଙ୍କୁ ଦେଖି ସ୍ୱର୍ଗ ଗମନ କରିବ । ସେହି ପମ୍ପାସର ପଶ୍ଚିମରେ ମତଙ୍ଗଙ୍କର ଗୋପନୀୟ ଓ ଅନୁପମ ଆଶ୍ରମ । ପମ୍ପାର ସମ୍ମୁଖରେ ଋଷ୍ୟମୂକ ପର୍ବତ । ତାହାକୁ ଆରୋହଣ କରିବା କଷ୍ଟ । ଛୋଟ ଛୋଟ ହାତୀମାନେ ସେହି ପର୍ବତକୁ ଜଗି ରହିଥାନ୍ତି । ସେହି ପର୍ବତରେ ଏକ ପ୍ରକାଣ୍ଡ ଗୁହା । ତାହା ପ୍ରସ୍ତର ଖଣ୍ଡ ଦ୍ୱାରା ଆଚ୍ଛନ୍ନ । ତାହାରି ମଧ୍ୟରେ ସୁଗ୍ରୀବ ରହିଥାନ୍ତି ।

ଏହି ବର୍ଣ୍ଣନାରୁ ମନେହୁଏ ପମ୍ପାସର ଓ ଋଷ୍ୟମୂକ ଫୁଲବାଣୀରେ ଅବସ୍ଥିତ । ଫୁଲବାଣୀରୁ ବୌଦ ରାସ୍ତାରେ କିଛି ବାଟ ଗଲେ ସଂରକ୍ଷିତ ଜଙ୍ଗଲ ମଧ୍ୟରେ ପମ୍ପାସର ରହିଛି । ତାହାର ସନ୍ଧାନ ବନ ବିଭାଗ କର୍ମଚାରୀ ଦେଇ ପାରନ୍ତି । ତାହା ଏବେ ବି ପର୍ଯ୍ୟଟନର ଏକ ଅଫୁରନ୍ତ ଉତ୍ସ ହୋଇ ରହିଛି । ଗଞ୍ଜାମରୁ ଏକ ତାମ୍ର ଫଳକ ମିଳିଛି । ଐତିହାସିକ ଡଃ ସତ୍ୟନାରାୟଣ ରାଜଗୁରୁ ତାହା ପାଠକରି କହନ୍ତି, "ଅଙ୍ଗିରସ୍ୟ ପ୍ରବର ଭୁବନାଶ୍ୱ ଅମ୍ବରୀଶ ଅଙ୍ଗିରା ଅନୁପ୍ରବରସ୍ୟ ସାମବେଦୀ କୁଥୁମିଶାଖାଧ୍ୟାୟୀ ପମ୍ପାସର ବିନିର୍ଗତଃ" ବ୍ରାହ୍ମଣ ଗଞ୍ଜାମର ନିକଟବର୍ତ୍ତୀ ଅଞ୍ଚଳରେ ବାସ କରୁଥିଲେ । ତାହା ନହେଲେ ନବମ ଶତାବ୍ଦୀର ଜନ୍ମେଜୟ ମହାଭବଗୁପ୍ତ ତାଙ୍କୁ ଭୂମି ଦାନ କାହିଁକି କରନ୍ତେ । ତେଣୁ ପମ୍ପାସର ଯେ ଓଡ଼ିଶାରେ ଏହା ନିଃସନ୍ଦେହ ଭାବରେ କୁହାଯିବ ।

ପମ୍ପା ସରୋବର ତୀରରେ ଶ୍ରୀରାମ ପହଞ୍ଚିଲା ବେଳକୁ ଚୈତ୍ରମାସ ହୋଇଯାଇଥିଲା । ପମ୍ପା ତୀରରେ ଶ୍ରୀରାମ ଲକ୍ଷ୍ମଣଙ୍କୁ କହିଛନ୍ତି — "ବସନ୍ତ ବର୍ତ୍ତମାନ ସମ୍ମୁଖରେ ଉପସ୍ଥିତ । ଏହା ପରିଶ୍ରମଜନିତ କ୍ଲାନ୍ତିକୁ ଶୁଖାଇ ଦିଏ । ଏହି ସମୟରେ ଏହି ବସନ୍ତ ଏବଂ ସେହି ମୃଗ ଶିଶୁ ଲୋଚନା ସୀତା ମୋତେ ଚିନ୍ତିତ ଓ ଶୋକାକୁଳ କରି ଦେଇଛନ୍ତି । ଲକ୍ଷ୍ମଣ ! ଏ ନିର୍ମମ ଚୈତ୍ରମାସର ବନ ପବନ ମୋତେ ଆହୁରି ସନ୍ତପ୍ତ କରୁଛି ।" ସୀତାଙ୍କୁ ରାବଣ ହେମନ୍ତ ଋତୁର ମାର୍ଗଶିର ମାସରେ ଚୋରୀ କରି ନେଇଥିଲା । ସୀତାଙ୍କୁ ଖୋଜି ଖୋଜି ରାମ ପମ୍ପା ତୀରରେ ବସନ୍ତ କାଳ ଚୈତ୍ରରେ ପହଞ୍ଚିଥିଲେ । ଏ ମଧ୍ୟରେ ଚାରିମାସ ଗତ ହୋଇଗଲା । ସେହି ଚୈତ୍ରମାସରେ ଶ୍ରୀରାମ ବାନରରାଜ ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରନ୍ତି । ମାତ୍ର ବାଳି ବଧ ହେଲା ବେଳକୁ ଆଷାଢ଼ ମାସ । ଶ୍ରୀରାମ ଦଣ୍ଡକାରଣ୍ୟଠାରୁ ବୁଲି ବୁଲି ପମ୍ପାସର ତୀରରେ ପହଞ୍ଚିଲା ବେଳକୁ ଯେଉଁ ଭଳି ଚାରିମାସ ଗତ ହୋଇ ଯାଇଛି, ସେହିଭଳି ତିନିମାସ ଲାଗିଛି ବାଳି ବଧ ବେଳକୁ । ବାଳି ବଧ ପରେ ତାର ଅନ୍ତ୍ୟେଷ୍ଟିକ୍ରିୟା ସରିଲା । ଏହି ସମୟରେ ଶ୍ରୀରାମ ସୁଗ୍ରୀବଙ୍କୁ କହିଛନ୍ତି — ହେ ସୌମ୍ୟ ! ଚତୁର୍ମାସ୍ୟା ଉପସ୍ଥିତ ହେଲାଣି । ଏହି ଚତୁର୍ମାସ୍ୟାର ପ୍ରଥମ ମାସ ଶ୍ରାବଣ । ବର୍ତ୍ତମାନ ବର୍ଷାର ଆଗମନ ସମୟ । ଏହି ସମୟରେ କୌଣସି ପ୍ରକାର ଉଦ୍ୟୋଗ କରିବାର ବେଳ ନୁହେଁ । ତେଣୁ ତୁମେ ତୁମ ନଗରୀକୁ ଯାଅ । ମୁଁ ଏହି ପର୍ବତରେ ଲକ୍ଷ୍ମଣ ସହିତ ବାସ କରିବି । ଏହି ପର୍ବତ ଗୁହା ରମଣୀୟ ଏବଂ ପ୍ରଶସ୍ତ । ଏଥିରେ ପବନ ଗମନା ଗମନ କରୁଛି । ଏଠାରେ ପ୍ରଚୁର ଜଳ ଅଛି ଓ ପ୍ରଚୁର ପଦ୍ମ ଏବଂ ନୀଳ କଇଁ ଫୁଟିଛି । କାର୍ତ୍ତିକ ମାସ ହେଲେ ତୁମକୁ ରାବଣ ବଧ ନିମନ୍ତେ ଯତ୍ନ କରିବାକୁ ହେବ । ବର୍ତ୍ତମାନ ତୁମେ ନିଜ ଘରକୁ ଯାଅ । ୪/୨୬/୧୫–୧୭

ଶ୍ରୀରାମ ମାଲ୍ୟବନ୍ତରେ ବର୍ଷାକାଳ କଟାଇ ଥିଲେ । କୋରାପୁଟର ମାଲ୍‌କାନ୍‌ଗିରିକୁ ମାଲ୍ୟବନ୍ତ ବୋଲି କୁହାଯାଉଛି । ବାଲ୍ମୀକି ରାମାୟଣ କିଷ୍କିନ୍ଧା କାଣ୍ଡର ୨୮ ସର୍ଗରେ ଯେଉଁ ବର୍ଷାର ବର୍ଣ୍ଣନା କରାଯାଇଛି ସେହିଭଳି ଏବେ ବି ମାଲ୍‌କାନ୍‌ଗିରିରେ ପ୍ରତିଭାତ ହୁଏ । ଶ୍ରୀରାମ ବାଳିକୁ ଯେଉଁଠାରେ ବଧ କରିଥିଲେ ତାହାକୁ ବାଳି ମଲା ବା ବାଲିମେଲା ବୋଲି କୁହାଯାଏ । ମାଲ୍‌କାନ୍‌ଗିରି ଓ ବାଲିମେଲା ମଧ୍ୟରେ ସଂରକ୍ଷିତ ଜଙ୍ଗଲ ମଧ୍ୟରେ କିଷ୍କିନ୍ଧା ରହିଛି ।

ଶ୍ରୀରାମ ବର୍ଷାକାଳ ଅତୀତ କରି ଶରତ୍‌ଋତୁରେ ଲକ୍ଷ୍ମଣଙ୍କୁ ସୁଗ୍ରୀବଙ୍କ ପାଖକୁ ପଠାଇଥିଲେ । ସେତେବେଳେ ସୌର କାର୍ତ୍ତିକ ଓ ଚାନ୍ଦ୍ର ଗଣନାରେ ଆଶ୍ୱିନ ଶୁକ୍ଳପକ୍ଷ । ଲକ୍ଷ୍ମଣଙ୍କୁ ଦେଖି ସୁଗ୍ରୀବ ଦଶଦିନ ମଧ୍ୟରେ ସମସ୍ତ ବାନର ସେନା ଉପସ୍ଥିତ ହେବାକୁ ଆଦେଶ ଦେଲେ । ସବୁ ବାନର ଆସିବା ପରେ ସେମାନଙ୍କୁ ବାଣ୍ଟିକରି ବିଭିନ୍ନ ଦିଗକୁ ପଠାଇଲେ । ସେମାନଙ୍କୁ କୁହାଗଲା ତୁମେ ମାସକ ମଧ୍ୟରେ କିଷ୍କିନ୍ଧାରେ ଆସି ପହଞ୍ଚିବ । ମାତ୍ର ଦକ୍ଷିଣ ଦିଗକୁ ଯାଇଥିବା ହନୁମାନ, ଅଙ୍ଗଦ ଆଦି ଠିକ୍ ସମୟରେ ପହଞ୍ଚିପାରି ନଥିଲେ । କିଷ୍କିନ୍ଧା କାଣ୍ଡର ୫୩/୯ରେ ଅଙ୍ଗଦ କହିଛି – "ଆମ୍ଭେମାନେ ଆଶ୍ୱିନ ମାସରେ ଯାତ୍ରା କରିଥିଲୁ । ସେ ଅବଧି ବିତି ଗଲାଣି । ବର୍ତ୍ତମାନ ଆମେ କ'ଣ କରିବା ?" ତେଣୁ ଓଡ଼ିଶାର ମହେନ୍ଦ୍ରଗିରି ଉପରେ କାର୍ତ୍ତିକ ଶୁକ୍ଳ ପକ୍ଷରେ ବାନରମାନେ ପହଞ୍ଚିଥିଲେ । ସମ୍ପାତି ତାର ଭାଇ ଜଟାୟୁର ମୃତ୍ୟୁ ସମ୍ବାଦ ପାଇ ବ୍ୟଥିତ ହୋଇଥିଲା ଓ ବାନରମାନଙ୍କୁ ରାବଣର ଲଙ୍କା ବିଷୟ ତଥା ସୀତାଙ୍କ ବିଷୟ କହିଥିଲା । ହନୁମାନ ସେହି ମହେନ୍ଦ୍ରରୁ ଲଙ୍କାକୁ ଡେଇଁ ଯାଇଥିଲେ । ସେ ଦିନ କାର୍ତ୍ତିକ ଶୁକ୍ଳ ଏକାଦଶୀ ବା ଦ୍ୱାଦଶୀ ହେବ । ସେହିଦିନ ହନୁମାନ ସୂର୍ଯ୍ୟାସ୍ତ ପୂର୍ବରୁ ଲଙ୍କାରେ ପହଞ୍ଚିଥିଲେ । ସୁନ୍ଦରା କାଣ୍ଡର ପଞ୍ଚମ ସର୍ଗରେ ଲଙ୍କାରେ ଚନ୍ଦ୍ରୋଦୟର ଯେଉଁ ବର୍ଣ୍ଣନା କରିଛନ୍ତି ସେଥିରୁ ମନେହୁଏ କାର୍ତ୍ତିକ ଶୁକ୍ଳପକ୍ଷର ଶେଷ ଭାଗ ଚାଲିଥିଲା । ରାବଣ ସୀତାଙ୍କୁ ଅଶୋକ ବନରେ ରଖାଇ ଗୋଟିଏ ବର୍ଷ ସମୟ ଦେଇଥିଲା । ସେହି ସମୟ ମଧ୍ୟରେ ସେ ରାବଣକୁ ଗ୍ରହଣ ନକଲେ ତାଙ୍କର ମୃତ୍ୟୁ ହେବ । ହନୁ ଲଙ୍କାକୁ ଆସିବାର ଦ୍ୱିତୀୟ ଦିନ ସୀତାଙ୍କ ନିକଟରେ ରାବଣକୁ ଦେଖିଛି ଓ ସେ କହିଥିବା ସମୟ ଆଉ ଦୁଇମାସ ଅଛି ବୋଲି ରାବଣ ସୀତାଙ୍କୁ ଚେତେଇ ଦେଇଛି । ଏହାର ପର ଦିନ ଶୁକ୍ଳ ତ୍ରୟୋଦଶୀ ବା ଚତୁର୍ଦ୍ଦଶୀରେ ହନୁମାନ ସୀତାଙ୍କୁ ଭେଟି ଶ୍ରୀରାମଙ୍କ ସନ୍ଦେଶ ଦେଇଛନ୍ତି । ସେହି ତ୍ରୟୋଦଶୀ ବା ଚତୁର୍ଦ୍ଦଶୀରେ ହନୁମାନ ଅଶୋକ ବନ ଭାଙ୍ଗି ଦେଇଛି ଓ ତାର ପରଦିନ ଲଙ୍କା ପୋଡ଼ି ଦେଇଛି । ଏହାପରେ କାର୍ତ୍ତିକ ପ୍ରାୟ ଶେଷ ହୋଇଯାଏ ।

ରାମଚନ୍ଦ୍ର ହନୁମାନଠାରୁ ସୀତାଙ୍କ ସମ୍ବାଦ ପାଇ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ଯୁଦ୍ଧ ଯାତ୍ରା କରିଥିବା ବାଲ୍ମୀକି ୬/୪/୫ରେ ଲେଖିଛନ୍ତି । ମାର୍ଗଶିର ପୂର୍ଣ୍ଣିମାରେ ମୃଗଶିରା ନକ୍ଷତ୍ର ଯୋଗ ହୁଏ । ମୃଗଶିରା ହେଉଛି ପଞ୍ଚମ ନକ୍ଷତ୍ର; ଆଉ ଉତ୍ତରା ଫାଲ୍‌ଗୁନୀ ଦ୍ୱାଦଶ ନକ୍ଷତ୍ର । ତେଣୁ ସେତେବେଳକୁ ପୂର୍ଣ୍ଣିମା ପରେ ପୌଷ କୃଷ୍ଣ ସପ୍ତମୀ ବା ଅଷ୍ଟମୀ । କିଷ୍କିନ୍ଧାଠାରୁ ସମୁଦ୍ର କୂଳକୁ ଆସି, ସେତୁବନ୍ଧ ବାନ୍ଧିବାରେ କିଛିକାଳ ଚାଲିଗଲା । ନଳର ଅଧ୍ୟକ୍ଷତାରେ ମାତ୍ର ପାଞ୍ଚଦିନ ଲାଗିଲା ସେତୁବନ୍ଧ ବାନ୍ଧିବାକୁ । ପୌଷ ଶୁକ୍ଳପକ୍ଷ ଚାଲିଥିଲା । ରାମଙ୍କର ଲଙ୍କା ପ୍ରବେଶ, ସୈନ୍ୟ ସ୍ଥାପନ ଆଦିରେ କିଛିକାଳ ଅତୀତ ହୋଇଛି । ସମ୍ଭବତଃ ପୌଷ ଶୁକ୍ଳପକ୍ଷର ଶେଷ ଭାଗରେ ଲଙ୍କାରେ ମହାଯୁଦ୍ଧ । ରାମାୟଣରୁ ଜଣାଯାଏ ସତର ଅଠର ଦିନ ବ୍ୟାପୀ ଯୁଦ୍ଧ ଚାଲିଥିଲା ଓ ମାଘ ଅମାବାସ୍ୟାରେ ରାବଣ ବଧ ହୋଇଥିଲା । ଏହାପରେ ପ୍ରାୟ ଅଢ଼େଇ ମାସ ବାକୀ ଥିଲା ଶ୍ରୀରାମଙ୍କ ବନବାସ ସରିବାକୁ । ବିଭୀଷଣର ରାଜ୍ୟାଭିଷେକ, ସୀତାଙ୍କ ଅଗ୍ନି ପରୀକ୍ଷାରେ କିଛି ଦିନ ଗତ ହେଲା ପରେ ଶ୍ରୀରାମ ପୁଷ୍ପକ ବିମାନରେ ଅଯୋଧ୍ୟା ବାହୁଡ଼ି ଯାଇଥିଲେ ।

କ୍ୱାଟର୍ ନଂ–୭୭, ଟାଇପ୍–୪,
ଡେଲ୍‌ଟା କଲୋନି,
ଭୁବନେଶ୍ୱର–୧୨ ।



# ସଂହତିର ବାଧକ ଓ ସୁରକ୍ଷା

ଶ୍ରୀ ଶ୍ୟାମନାରାୟଣ ତିବାରୀ,

ପ୍ରାଗୈତିହାସିକ କାଳରୁ ଭାରତ ବିବିଧତା ମଧ୍ୟରେ ଏକତାର ଏକ ପ୍ରତୀକ ରୂପେ ସ୍ୱୀକୃତି ଲାଭ କରିଛି । ପୂର୍ବ କାଳର ମହାନ ଚିନ୍ତାଧାରା "ବସୁଧୈବ କୁଟୁମ୍ବକମ୍" ଏକ ଚିରନ୍ତନ ସତ୍ୟ । ଯାହାର ଅର୍ଥ ହେଲା ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏ ରାଷ୍ଟ୍ର ସମସ୍ତଙ୍କର । ଏ ପୃଥିବୀ ଆମ ସମସ୍ତଙ୍କର ଏକ ଅବିଭକ୍ତ ପରିବାର । ମନ୍ତ୍ର ରଚନା କଲାବେଳେ କେବଳ ଉତ୍ତରର ନଦୀକୁ ସମ୍ମିଳିତ ନକରି ଦକ୍ଷିଣର କାବେରୀ ଓ ଗୋଦାବରୀ ଏବଂ ଉତ୍ତର ପଶ୍ଚିମର ସିନ୍ଧୁକୁ ମଧ୍ୟ ସମନ୍ୱିତ କରାଯାଉଥିଲା । ଏହା ଆମ ବିଶାଳ ଭାରତର ଐକ୍ୟର ପ୍ରମାଣ । କବି ରାଧାନାଥ ରାୟ "ଉତ୍କଳ ଦୀପିକା"ରେ ଭାରତକୁ ପଙ୍କଜ ବା ପଦ୍ମ ସହିତ ତୁଳନା କରି ଉତ୍କଳକୁ ତାହାର ଗୋଟିଏ ଦଳ ଏବଂ କେଶରକୁ ନୀଳାଚଳ ବୋଲି କଳ୍ପନା କରିଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ସମସ୍ତ ମାନବ ସମାଜକୁ ଏକ ବିଶାଳ ସମୁଦ୍ର ସହିତ ତୁଳନା କରିଛନ୍ତି । କବି ଓ ଔପନ୍ୟାସିକ ବଙ୍କିମ ଚନ୍ଦ୍ର "ଆନନ୍ଦ ମଠ" ଉପନ୍ୟାସର "ବନ୍ଦେ ମାତରମ୍"ରେ ମାତୃଭୂମିର ପ୍ରାଣସ୍ପର୍ଶୀ ବନ୍ଦନା କରିଛନ୍ତି । ପଣ୍ଡିତ ଗୋପବନ୍ଧୁ ଦାସ ଦେଶ ଦଶର କଲ୍ୟାଣକୁ ସତ୍ୟ ସାଧନାର ଶୀର୍ଷ ସୋପାନ ରୂପେ ଗ୍ରହଣ କରିଥିଲେ । ଅନୁରୂପ ତ୍ୟାଗର ଭାବନା ସମସ୍ତ ଭାରତବାସୀଙ୍କୁ ଯୁଗ ଯୁଗ ଧରି ଉଦ୍‌ବୁଦ୍ଧ କରିଛି ।

ଦେଶର ଜନସଂଖ୍ୟା ବୃଦ୍ଧି ସଂହତିର ପ୍ରତିବନ୍ଧକ ବୋଲି କେହି କେହି କହନ୍ତି । ଏକବିଂଶ ଶତାବ୍ଦୀର ପ୍ରଥମ ପାଦରେ ଜନସଂଖ୍ୟା ପ୍ରାୟ ଶହେ କୋଟି ହୋଇଯିବ । ଜନସଂଖ୍ୟା ବୃଦ୍ଧି ହେଲେ ଚାଷ ଜମି ଖଣ୍ଡ ବିଖଣ୍ଡିତ ହୁଏ ଏବଂ ବ୍ୟକ୍ତିଗତ ବିବାଦ ଗୋଷ୍ଠୀ ବିବାଦ ସହିତ ରୂପ ଗ୍ରହଣ କରେ । ସହରାଞ୍ଚଳରେ ମଧ୍ୟ ଜମି ଉପରେ ଚାପ ଏତେ ବେଶୀ ପଡ଼େ ଯେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ଦଖଲ କରିବା ପାଇଁ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ସଂଘର୍ଷ ହୁଏ । ଜମିର ଉତ୍ପାଦନ ଶକ୍ତି ହ୍ରାସ ପାଏ ଏବଂ ଗ୍ରାମ୍ୟ ଯୁବକମାନେ ସହରାଞ୍ଚଳରେ କର୍ମାନ୍ୱେଷଣ ପାଇଁ ତତ୍ପର ହୁଅନ୍ତି । କର୍ମ ସଂସ୍ଥାନରେ ଅସୁବିଧା ହେଲେ ଆଞ୍ଚଳିକ ଭିତ୍ତିରେ ଭିଟା ମାଟିରେ କର୍ମ ନିଯୁକ୍ତି ଦାବୀ କରାଯାଏ । ଏଥିରୁ ବିବାଦ ମଧ୍ୟ ସୃଷ୍ଟି ହୁଏ । ତେଣୁ ଜନସଂଖ୍ୟା ନିୟନ୍ତ୍ରିତ କରିବା ପାଇଁ ବହୁବିଧ ପଦକ୍ଷେପ ଗ୍ରହଣ କରିବାକୁ ହୁଏ ।

ସଂହତିରେ ଅନ୍ୟ ଏକ ବାଧକ ହେଲା ଆଧୁନିକ ସମାଜରେ ରକ୍ଷଣଶୀଳ ଗୋଷ୍ଠୀ ଏବଂ ପରିବର୍ତ୍ତନ ଚାହୁଁଥିବା ଗୋଷ୍ଠୀ ମଧ୍ୟରେ ମତଦ୍ୱୈଧ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଅବହେଳିତ ଲୋକମାନଙ୍କର ପ୍ରଗତି ପାଇଁ ଅନେକ ଆଇନ ପ୍ରଣୟନ କରାଯାଇଛି । କେବଳ ସ୍ୱାର୍ଥାନ୍ଧ ରକ୍ଷଣଶୀଳ ବ୍ୟକ୍ତିମାନେ ଏହାର ବିରୋଧ କରିଥାନ୍ତି । ତେଣୁ ବାରମ୍ବାର ସାମାଜିକ ସଂହତି ବିପର୍ଯ୍ୟସ୍ତ ହୁଏ । ପରିବର୍ତ୍ତନକୁ ଯେ ଅବଶ୍ୟ ଗ୍ରହଣ କରିବାକୁ ହେବ ଏବଂ ଏହା ନକଲେ ଭାରତର ଏକବିଂଶ ଶତାବ୍ଦୀକୁ ଯାତ୍ରା ବାଧାଗ୍ରସ୍ତ ହେବ, ସମସ୍ତେ ଏହା ଅବହିତ ହେବା ଉଚିତ । ସାମାଜିକ ଉତ୍ଥାନ ପାଇଁ ଉଦ୍ଦିଷ୍ଟ ଆଇନର ତାତ୍ପର୍ଯ୍ୟ ହୃଦୟଙ୍ଗମ କରି ସମାଜକୁ ଆଗେଇବାକୁ ପଡ଼ିବ ।

ସଂହତିର ଅନ୍ୟ ଏକ ଶତ୍ରୁ ହେଲା ଇତିହାସର ଲେଖନ ପ୍ରଣାଳୀ । ଅଳ୍ପ ବୟସ୍କ ଛାତ୍ର ଛାତ୍ରୀମାନେ ଇତିହାସରେ ଯଦି କୌଣସି ସମ୍ରାଟର କୌଣସି ଜାତି ପ୍ରତି ଅତ୍ୟାଚାରର କାହାଣୀମାନ ପଢ଼ନ୍ତି ତାଙ୍କ ମନରେ ବିତୃଷ୍ଣା ଭାବ ଜାଗ୍ରତ ହୁଏ । କ୍ଷୋଭ ଆସେ । ଇତିହାସର ଲେଖନ ପ୍ରଣାଳୀ ଏପରି ହେବା ଆବଶ୍ୟକ ଯଦ୍ୱାରା ଐକ୍ୟ, ସର୍ବ ଧର୍ମ ପ୍ରତି ସମ୍ମାନ ଓ ସହନଶୀଳତା ବୃଦ୍ଧି ପାଇବ । ଇତିହାସର ସଂଶୋଧିତ ପୁନର୍ଲେଖନ ହେଲେ ମଧ୍ୟ କୌଣସି ଅସୁବିଧା ନାହିଁ ।

ସଂହତି ରକ୍ଷା ଦିଗରେ ସମ୍ବାଦପତ୍ରମାନଙ୍କର ପ୍ରମୁଖ ଭୂମିକା ରହିଛି । କେବଳ ହିଂସା ଆଧାରିତ ସମ୍ବାଦ ଲୋକଙ୍କୁ କ୍ରୋଧ ଜର୍ଜରିତ କରିଥାଏ । ପ୍ରେସ୍ କାଉନ୍‌ସିଲ୍ ଏ ସମ୍ବନ୍ଧୀୟ ଆଚରଣ ବିଧିକୁ ଯଦି ଦୃଢ଼ ଭାବେ ପ୍ରବର୍ତ୍ତନ କରନ୍ତି ତେବେ ହିଂସା ପ୍ରସାର ଲାଭ କରିପାରିବ ନାହିଁ । କିନ୍ତୁ ଏହା ପ୍ରେସ୍ ସ୍ୱାଧୀନତାର ପରିଧି ମଧ୍ୟରେ ରହିବା ଆବଶ୍ୟକ । ଚଳଚ୍ଚିତ୍ର, ଭି. ଡି. ଓ. ଆଦିରେ ହିଂସା ବିସ୍ଫୋରକ ଦୃଶ୍ୟମାନ ହ୍ରାସ ପାଇଲେ ଅଳ୍ପ ବୟସ୍କ ଛାତ୍ର ଛାତ୍ରୀମାନେ ହିଂସା ପ୍ରତି ବିମୁଖ ହେବେ ।

ଧର୍ମଗତ ଏବଂ ଗୋଷ୍ଠୀଗତ ହିଂସା ଦୂର କରିବା ପାଇଁ ଯଦି ଆଇନର ପୃଥକ ବ୍ୟବସ୍ଥା ରହେ ଏହା ଆଇନ ଶୃଙ୍ଖଳା ରକ୍ଷା ଅଧିକାରୀମାନଙ୍କୁ ସହାୟକ ହେବ । ରାଷ୍ଟ୍ରୀୟ ସୁରକ୍ଷା ଆଇନ ବଳବତ୍ତର କରିବା ସମୟ

ସାପେକ୍ଷ ଏବଂ ପ୍ରଚଳିତ ଆଇନରେ କେବଳ ଏପରି ଅପରାଧ ପାଇଁ ବିଶେଷ ବ୍ୟବସ୍ଥା ନାହିଁ ।

ସଂହତି ରକ୍ଷା ପାଇଁ ଧର୍ମର ବାସ୍ତବ ଅର୍ଥ ଜାଣିବାକୁ ହେବ । ଧର୍ମର ବାହ୍ୟାଚାର ଅନେକ ସମୟରେ ବିବାଦର କାରଣ ହୁଏ । ପରସ୍ପର ପ୍ରତି ପ୍ରେମ ଓ ସଦ୍ଭାବ ପୋଷଣ ହିଁ ମାନବ ଧର୍ମର ମୂଳଭିତ୍ତି । ମହାତ୍ମାଗାନ୍ଧୀ ଓ ଶ୍ରୀରାମକୃଷ୍ଣ ପରମହଂସ ପ୍ରସ୍ତୁତ କରି ଯାଇଛନ୍ତି ଯେ ଆଚରଣ ହିଁ ପ୍ରକୃତ ଧର୍ମ । "ଆଚାରାତ୍ ପ୍ରଭବୋ ଧର୍ମ ।"

ଆମର ବିଦ୍ୟାଳୟ ପାଠ୍ୟକ୍ରମ ଯଦି କୁମାରୀକାଠାରୁ କାଶ୍ମୀର ପର୍ଯ୍ୟନ୍ତ ଗୋଟିଏ ପ୍ରକାର ହୁଏ, ପ୍ରାଥମିକରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସମାନ ରହେ, ତାହାହେଲେ ଐକ୍ୟ ଭାବ ବୃଦ୍ଧି ପାଇବ । ପ୍ରତ୍ୟେକ ରାଜ୍ୟ ନିଜ ଭାଷାରେ ପଢି ଲେଖିଲେ କାହାରି କିଛି ଆପତ୍ତି ନାହିଁ କିନ୍ତୁ ବିଷୟଗୁଡ଼ିକ ସମାନ ହେବା ଆବଶ୍ୟକ ।

ଆଜିର ପରିପ୍ରେକ୍ଷୀରେ ଆମେ ସମସ୍ତେ ସଂହତି ରକ୍ଷା ପା ଅଙ୍ଗୀକାରବଦ୍ଧ ହେବା ବାଞ୍ଛନୀୟ । ଯଦି ଜାତୀୟ ଏକତା କାଉନ୍ସି ପରି ସଂସ୍ଥା ପ୍ରତ୍ୟେକ ସହରର ବିଭିନ୍ନ ଅଞ୍ଚଳ, ଗ୍ରାମ ପଞ୍ଚାୟତ, ବ୍ଲ ଜିଲ୍ଲା ଏବଂ ପ୍ରଦେଶ ସ୍ତରରେ ରହେ ଯେ କୌଣସି ଗୋଷ୍ଠୀ ବିବାଦ ଆର ହେଲେ ସେମାନେ ସହଜରେ ସମାଧାନ କରି ପାରିବେ ଏତଦ୍‌ବ୍ୟତୀତ ସେମାନେ ଲୋକମାନଙ୍କୁ ସଂହତି ରକ୍ଷାର ଆବଶ୍ୟକ ସମ୍ପର୍କରେ ସଚେତନ କରାଇ ପାରିବେ । ଏହା ସମସ୍ତଙ୍କର ସହଯୋ ଦ୍ୱାରା ହିଁ ସମ୍ଭବ ହେବ ।

କେନ୍ଦ୍ରାଞ୍ଚଳ ପୋଲିସ୍ ଉପ ମହାନିରୀକ୍ଷକ,
ନୂଆଦିଲ୍ଲୀ ।



# କ୍ରାନ୍ତିର ମହାନାୟକ: ସୁରେନ୍ଦ୍ର ସାଏ

ଶ୍ରୀ ବିରଞ୍ଚି ନାରାୟଣ ବେହେରା

ସମ୍ବଲପୁର (୧୮୧୭–୧୮୧୮) ଇଂରେଜ ଶାସନ ଅଧୀନକୁ ଆସିଲା ପରେ ସେଠାରେ ଜଣେ ବ୍ରିଟିଶ୍ ଏଜେଣ୍ଟ୍ ରହିଲେ । ୧୮୨୭ରେ ମହାରାଜ ସାଏ ପ୍ରାଣ ତ୍ୟାଗ କଲେ । ସେ ଅପୁତ୍ରିକ ଥିଲେ । ଏଜେଣ୍ଟ୍ ତାଙ୍କ ମୃତ୍ୟୁ ସମ୍ବାଦ ଗୋପନ ରଖିଥିଲେ । ସେ ପୀଡ଼ିତ ଥିବା ଘୋଷଣା କରି ୧୮୩୩ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ ଚଳାଇ ଥିଲେ । ରାଜାଙ୍କ ପକ୍ଷରୁ ରାଣୀ ମୋହନ କୁମାରୀ ରାଜ୍ୟର ଦାୟିତ୍ୱ ବୁଝୁଥିଲେ । ସେ ଥିଲେ ବାମଣ୍ଡା ରାଜ ବଂଶର କନ୍ୟା ।

ପରେ ରାଜବଂଶୀୟମାନେ ମହାରାଜାଙ୍କ ମୃତ୍ୟୁ ସମ୍ବାଦ ଜାଣିପାରି ନିଜ ସମ୍ମାନ ଓ ଅଧିକାର କ୍ଷୁଣ୍ଣ ହୋଇଥିବା ମନେକରି ସିଂହାସନ ଲାଗି ବିପ୍ଲବ ଆରମ୍ଭ କଲେ । ବିପ୍ଲବୀମାନଙ୍କ ମଧ୍ୟରେ ସୁରେନ୍ଦ୍ର ସାଏ, ଉଦନ୍ତ ସାଏ ଓ ଗୋବିନ୍ଦ ସିଂହ ପ୍ରଧାନ । ଲର୍ଡ଼ ଡେଲହାଉସିଙ୍କ ରାଜସତ୍ୱ ଲୋପ ନୀତି ବିପ୍ଳବର ପ୍ରଧାନ କାରଣ । ୧୮୪୯ରେ ରାଜସ୍ୱ ଆଦାୟ, ଦେବୋତ୍ତର, ବ୍ରହ୍ମୋତ୍ତର, ଜାଏଗିରି ଇତ୍ୟାଦି ବିସ୍ତରରେ ରାଜସ୍ୱ ପରିମାଣ ରାଜାଙ୍କ ଅମଳ ଅପେକ୍ଷା ଚ଼ରିଗୁଣ ଅଧିକ ଧାର୍ଯ୍ୟ ହେଲା । ତମ୍ବାପଟା ଓ ସନନ୍ଦ ପ୍ରଭୃତି ଗ୍ରହଣ କରାଯାଉ ନଥିଲା । ଦେବୋତ୍ତର, ବ୍ରହ୍ମୋତ୍ତର ବୃତ୍ତି ମଧ୍ୟ ପ୍ରତ୍ୟାହାର କରାଯାଉଥିଲା । ବିନା ସୁବିଚାରରେ ଜାଏଗିରି ଛଡ଼ି ଦିଆଗଲା । କେତେଙ୍କ ହକ୍‌ଦାରଙ୍କ ଦାବୀ ମଧ୍ୟ ପ୍ରତ୍ୟାଖ୍ୟାତ ହେଲା । ଏହି ବନ୍ଦୋବସ୍ତ ଫଳରେ ରାଜ୍ୟରେ ଅସନ୍ତୋଷ ବୃଦ୍ଧି ପାଉଥିଲା । ଏଠାରେ ପ୍ରତିପତ୍ତିଶାଳୀ ସମସ୍ତ ମାଫିଦାରମାନେ ଅଦାଲତରେ ଅପିଲ କଲେ । ୧୮୫୪ରେ ଦ୍ୱିତୀୟ ଥର ବନ୍ଦୋବସ୍ତ କରିବା ଆବଶ୍ୟକ ପଡ଼ିଲା । କିନ୍ତୁ ଏହା ମଧ୍ୟ ଲୋକଙ୍କୁ ସନ୍ତୁଷ୍ଟ କରି ପାରିଲା ନାହିଁ । ପ୍ରଥମ ବନ୍ଦୋବସ୍ତଠାରୁ ଏକ ଚତୁର୍ଥାଂଶ ଅଧିକ ଖଜଣା ଧାର୍ଯ୍ୟ କରାଗଲା । ଏ ସମସ୍ତ ବାହାରେ ଗୌନ୍ତିଆମାନଙ୍କଠାରୁ ନେଜ଼ରାନା ଆଦାୟ କରାଯାଉଥିଲା । ଜମିଦାରମାନେ ନିର୍ଦ୍ଦିଷ୍ଟ କର, ବେଠି ପ୍ରଭୃତି ବାହାରେ ଯୁଦ୍ଧ ବେଳେ ଅର୍ଥ, ଯୋଦ୍ଧା ଓ ଯୁଦ୍ଧୋପକରଣ ମଧ୍ୟ ସାହାଯ୍ୟ କରୁଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏ ସମସ୍ତ ଦେଶୀ ପ୍ରଜାମାନଙ୍କ ପ୍ରତି କଷ୍ଟକର ହେଉଥିଲା ।

ଇଂରେଜମାନଙ୍କ ରାଜ୍ୟ ଅଧିକାର ବା ରାଜସ୍ୱ ବନ୍ଦୋବସ୍ତକୁ ପ୍ରଜା ସାଧାରଣ ପ୍ରଫୁଲ୍ଲ ଚିତ୍ତରେ ସ୍ୱାଗତ କରି ନଥିଲେ । ଏହି ସବୁ ପରେ ଇଂରେଜ ଶାସନ ବିରୋଧରେ ଏବଂ ସ୍ୱାଧୀନ ଶାସନ ସପକ୍ଷରେ ତୀବ୍ର ଅସନ୍ତୋଷ ପ୍ରକାଶ ପାଇଥିଲା । ଏହି ଆନ୍ଦୋଳନ ଏକ ଗଣ ଆନ୍ଦୋଳନରେ ପରିଣତ ହେଲା । ସମ୍ବଲପୁର କୋଶଳ ଖଣ୍ଡରେ ଥିବା ରାଜା ରାଜନ୍ୟ, ଜମିଦାର ଗୌନ୍ତିଆ ଏବଂ ପ୍ରତିପତ୍ତିଶାଳୀ ସ୍ୱାଧୀନଚେତା ବ୍ୟକ୍ତିମାନେ ଏଥିରେ ଭାଗ ନେଇଥିଲେ । ନାୟକତ୍ୱ ଗ୍ରହଣ କରିଓ ଜନ ଜାଗରଣ ମାଧ୍ୟମରେ ଇଂରେଜ ଶାସନର ଉଚ୍ଛେଦ ସାଧନ ଓ ଦେଶୀୟ ଶାସନର ପୁନଃ ପ୍ରତିଷ୍ଠା ପାଇଁ ଐତିହାସିକ ଆନ୍ଦୋଳନ କରିଥିଲେ ସମ୍ବଲପୁର ଜାତୀୟ ନେତା ବୀର ସୁରେନ୍ଦ୍ର ସାଏ । ଏହି ଆନ୍ଦୋଳନର ଅଗ୍ରଣୀ ତଥା ପକ୍ଷ ସମର୍ଥକ ଥିଲେ ବଳରାମ ସିଂହ, ଲକ୍ଷ୍ମଣପୁର ଘୈଁସ, କୋଲାବୀରା, କୋଡ଼ାବଗା, ଭେଡ଼ନ, ଖରସାଲ, ମନ୍ତ୍ରୋମହୁଲ, ପାହାଡ଼ ଶ୍ରୀଗିଡ଼ା, ପାଟକୁଲୁଣ୍ଡାର ଜମିଦାରମାନେ ରମ୍ପେଲା ଗୌନ୍ତିଆ ଲୋକନାଥ ପଣ୍ଡା, ବାମଣ୍ଡା ମହାରାଜାଙ୍କ କୃଷ୍ଣଚନ୍ଦ୍ର ବେହେରା ନାମକ ଜଣେ ସେନାପତି ପ୍ରଜା ବା ଜନସାଧାରଣରେ ବ୍ରିଟିଶ ଶାସନର ନିନ୍ଦା କରୁଥିଲେ । ୧୮୫୭ ଜୁଲାଇ ୩୦ ତାରିଖରେ ସିପାହୀ ବିଦ୍ରୋହ ଯୋଗୁ ଯେତେବେଳେ ଆକୁମାରୀ ହିମାଳୟ ପ୍ରକମ୍ପିତ ହେଲା, ଭାରତବ୍ୟାପୀ ସେହି ଆନ୍ଦୋଳନ ଦମିତ ହୋଇଥିଲା । କ୍ଷୁଦ୍ର ସମ୍ବଲପୁର ରାଜ୍ୟ ବା ସୁରେନ୍ଦ୍ରଙ୍କ ମୁଷ୍ଟିମେୟ ଅର୍ଦ୍ଧ ଶିକ୍ଷିତ ଆଦିବାସୀ ବାହିନୀ ପ୍ରବଳ ପରାକ୍ରମୀ ବ୍ରିଟିଶ ବାହିନୀ ପାଇଁ ସମର୍ଥ ହେବା କଳ୍ପନାତୀତ । ତଥାପି ସୁରେନ୍ଦ୍ରଙ୍କ ନେତୃତ୍ୱ, ବୀରତ୍ୱ, ଜାତି ଗଠନ ଶକ୍ତି ଏବଂ ପ୍ରବଳ ସାହାସ ଦୃଢ଼ ପ୍ରତିଜ୍ଞା, ଅଟଳ ନିଷ୍ଠା ପ୍ରଭୃତି ପ୍ରଶଂସନୀୟ । ୧୮୨୭ରୁ ଅର୍ଥାତ୍ ସିପାହୀ ଯୁଦ୍ଧର ୩୦ ବର୍ଷ ପୂର୍ବରୁ ଏବଂ ୧୮୬୪ ଅର୍ଥାତ୍ ସେହି ଯୁଦ୍ଧର ୭ ବର୍ଷ ଯାଏଁ ୩୭ ବର୍ଷ ଧରି ବ୍ରିଟିଶ ସରକାରଙ୍କୁ ସେ ଅସ୍ତବ୍ୟସ୍ତ କରିଥିଲେ । ଏହା ହିଁ ତାଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ଓ ଜାତି ଅଭ୍ୟୁତ୍ଥାନ ତଥା ଗୌରବର ଜ୍ୱଳନ୍ତ ପ୍ରମାଣ ।

ବିପ୍ଳବୀମାନଙ୍କ ମଧ୍ୟରେ ସୁରେନ୍ଦ୍ର ଥିଲେ ପ୍ରତ୍ୟୁତ୍ପନ୍ନମତି । ସମସ୍ତଙ୍କର ଆସ୍ଥାଭାଜନ ହେବାରୁ ସେ ଐକ୍ୟବଦ୍ଧ ଭାବରେ ସଂଗ୍ରାମ ଚଳାଉଥିଲେ ।

ପିଲାଦିନରୁ ଅଶ୍ୱାରୋହଣ ଓ ମଲ୍ଲ ବିଦ୍ୟା ମଧ୍ୟ ଭଲରୂପେ ଆୟତ୍ତ କରିଥିଲେ । ସର୍ବୋପରି ଶତ୍ରୁ ପକ୍ଷକୁ କିପରି କବଳିତ କରିବାକୁ ହୁଏ ସେ ବିଷୟରେ ସେ ବିଚକ୍ଷଣ ଥିଲେ ।

ସୁରେନ୍ଦ୍ର, ଉଦନ୍ତ, ଛବିଳ ଓ ବଳରାମ ଦଳବଦ୍ଧ ଭାବରେ ସୈନ୍ୟ ସାମନ୍ତ ସାହାଯ୍ୟ ମାଗିବା ନିମନ୍ତେ ପାଟଣା ଅଭିମୁଖେ ବାହାରିଲେ ! ସେମାନେ ନିଶ୍ଚୟରେ ଯାତ୍ରା କରୁଥିବା ସମୟରେ ମେଜର୍ ଓ ମନ୍ତ୍ର ସହକାରୀ କମିଶନର୍ ଥିଲେ । ସୈନ୍ୟ ବାହିନୀ ଏମାନଙ୍କୁ ଆକ୍ରମଣ କଲେ । ଗୋଳାବାରୁଦ ବିନିମୟ ହେଲା । ଛଅଜଣ ଦେଖି ଅନେକ ପଳାୟନ କଲେ । ବନ୍ଦୀ ହୋଇ ସୁରେନ୍ଦ୍ର, ଉଦନ୍ତ, ଉଜ୍ଜ୍ୱଳ, ଛବିଳ, ବଳରାମ ଜେଲ୍‌ରେ ରହିଲେ । ୧୮୫୭, ୩୦ ତାରିଖରେ ଯେତେବେଳେ ହଜାରିବାଗ୍ ଜେଲଖାନା ଭାଙ୍ଗିଲେ ସେତେବେଳେ ବଳରାମ ସିଂହ ଜେଲ୍ ଭିତରେ ମୃତ । କିନ୍ତୁ ସୁରେନ୍ଦ୍ର, ଉଦନ୍ତ, ଉଜ୍ଜ୍ୱଳ, ଛବିଳ ଜେଲ୍‌ରୁ ମୁକ୍ତି ପାଇ ଅଗଷ୍ଟ ମାସ ଶେଷ ଭାଗରେ ସମ୍ବଲପୁରରେ ପହଞ୍ଚିଲେ ।

ଘାଟିମାନ ଘେରାଉ କଲେ । ବହୁତ ଗାଆଁଗଣ୍ଡା ପୋଡ଼ି ଦେଲେ ଏବଂ ବହୁ ଲୋକଙ୍କୁ ହତ୍ୟା କଲେ । କଲିକତା ବଯେ ତାଙ୍କ ରାଜ୍ୟ ବିପ୍ଳବୀମାନଙ୍କ ଅକ୍ତିଆରରୁ ଉଦ୍ଧାର କଲେ । ବିପ୍ଳବୀ ନେତାମାନେ ପ୍ରାଣଦଣ୍ଡ ପାଇଲେ । ସେ ବାମଣ୍ଡା ରାଜାଙ୍କୁ ପ୍ରତ୍ୟକ୍ଷ ବିପ୍ଳବରେ ଲିପ୍ତ ଥିବାର ପ୍ରମାଣ ପାଇଥିଲେ । ରାଜାଙ୍କୁ ଏ ବିଷୟରେ କୈଫିୟତ ତଲବ ହୋଇଥିଲା ।

ଗଞ୍ଜାମ ଘୁମୁସର ବୌଦ ପ୍ରଭୃତି ଅଞ୍ଚଳରୁ ଇଂରେଜ ସରକାର ପାଇକ ଆଣି ସମ୍ବଲପୁର ବିପ୍ଳବ ଦମନରେ ଲଗାଇ ଥିଲେ । ଏମାନେ କିପରି ଦରମା ପାଉଥିଲେ ଆଲୋଚନା କଲେ ସେ କାଳର ଇଂରେଜ ସେନାର ଅବସ୍ଥା ଅନୁମାନ କରିହେବ ।

| | | |
|---|---|---|
| ସୁବେଦାର | ୩୦ ଜଣ | ୩୦ ଟଙ୍କା |
| ଜମାଦାର | ୧୫ ଜଣ | ୧୫ ଟଙ୍କା |
| ହାବିଲଦାର | ୫୦ ଜଣ | ୧୦ ଟଙ୍କା |
| ନାୟକ | ୪ ଜଣ | ୮ ଟଙ୍କା |
| ବିଗୁଲ୍‌ବାଲା | ୬ ଜଣ | ୬ ଟଙ୍କା |
| ପାଇକ | ୪୦୦ ଜଣ | ୫ ଟଙ୍କା ୮ ଅଣା |
| ମୋଟ | ୫୮୧ ଜଣ | ୪୦୧ ଟଙ୍କା ୮ ଅଣା |

(ଓଡ଼ିଶାରେ ସିପାହୀ ବିଦ୍ରୋହର ଝଲକ—ପୃ ୫୮/୫୯ ଓ ୬୩ "ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ.")

ଏହି ସମୟରେ ଲୋକମାନେ ରେଢ଼ାଖୋଲ, ବାମଣ୍ଡା, ଅନୁଗୁଳ, ପାଟଣା, ଖଡ଼ିଆଳ ପ୍ରଭୃତି ଅଞ୍ଚଳମାନଙ୍କରେ ସୁରେନ୍ଦ୍ରଙ୍କୁ ସମର୍ଥନ ଓ ସାହାଯ୍ୟ କରୁଥିଲେ ।

ବାମଣ୍ଡାର ଶ୍ରୀ କୃଷ୍ଣ ବେହେରା ନେତୃତ୍ୱ ନେଇ ସେଠାରେ ପ୍ରଚଣ୍ଡ ବିପ୍ଳବ ଚଳାଇଥିଲେ । ବାମଣ୍ଡା ରାଜା ତାଙ୍କୁ ପରୋକ୍ଷରେ ପ୍ରରୋଚନା ଦେଉଥିଲେ ଓ ସୈନ୍ୟ ସାମନ୍ତ ତଥା ଖାଦ୍ୟ ସାମଗ୍ରୀ ଯୋଗାଇ ସୁରେନ୍ଦ୍ରଙ୍କୁ ଉତ୍ସାହିତ କରାଉଥିଲେ ।

କଟକ କମିଶନର ତାଙ୍କୁ ଏକ କଠୋର ଆଦେଶ ଦେଲେ ଏବଂ କହିଲେ, ଅନୁଗୁଳ ପରି ବାମଣ୍ଡା ମଧ୍ୟ ଖାସମହାଲରେ ପରିଣତ ହେବ । ରାଜା ବିଦ୍ରୋହକୁ ଗୋପନରେ ଉତ୍ସାହିତ କରୁଥିଲେ ଏବଂ ସ୍ଥିର କରିଥିଲେ ଯେ ସୁରେନ୍ଦ୍ର କୃତକାର୍ଯ୍ୟ ହେବା ଭଳି ପ୍ରତୀତ ହେଲେ ମଧ୍ୟ ସେ ବିପ୍ଳବରେ ପ୍ରତ୍ୟକ୍ଷ ଅଂଶ ନେବେ । ସରକାରଙ୍କଠାରୁ ଧମକ ପାଇ ସେ ବାମଣ୍ଡାକୁ ଗଲେ ନାହିଁ । ଜେନେରାଲ୍ ଉଇଙ୍ଗହାମ୍ ବାମଣ୍ଡା ବିପ୍ଳବ

୧୮୬୨ ଜାନୁଆରୀ ୧୮ ତାରିଖ ଦିନ ଇମ୍ପେକ୍ ପ୍ରସ୍ତାବ ଅନୁସାରେ ଉଦନ୍ତ ଓ ଧ୍ରୁବ ସାଏ ଆତ୍ମସମର୍ପଣ କଲେ । ୧୮୬୨ ମଇ ମାସରେ ସୁରେନ୍ଦ୍ର ଇଂରେଜ ସରକାରଙ୍କଠାରେ ଆତ୍ମସମର୍ପଣ କଲେ । ୧୮୬୨ ଏପ୍ରିଲ୍ ୩୦ ତାରିଖରେ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ।

ସୁରେନ୍ଦ୍ର ବଞ୍ଚିଛନ୍ତି କି ମରିଛନ୍ତି ଏ ପ୍ରଶ୍ନ ହେଲେ ପ୍ରାଣ ଭିତରୁ ସ୍ୱତଃ ଉତ୍ତର ଆସେ ସୁରେନ୍ଦ୍ର ମରି ନାହାନ୍ତି । ସେ ଏବେ ସମ୍ବଲପୁର ସହରର ସୀମା ଭିତରେ ଦୁର୍ଭେଦ୍ୟ "ସୁରେନ୍ଦ୍ର ନଗର" ଦୁର୍ଗ ତୋଳାଇଛନ୍ତି । ୧୯୪୫ରେ ସେହି ଦୁର୍ଗର ସିଂହାସନରେ ବସିଛନ୍ତି । ସମ୍ବଲପୁର ଜନତାର ତଥା ଓଡ଼ିଶାର ମନୋରାଜ୍ୟରେ ରାଜତ୍ୱ ଚଳାଉଛନ୍ତି ।

ଦେବଗଡ଼ କଲେଜ,
ଦେବଗଡ଼, ସମ୍ବଲପୁର ।



# ଓଡ଼ିଶା ଓ ରବୀନ୍ଦ୍ରନାଥ

ଡକ୍ଟର୍ ଗୋପାଳ ଚନ୍ଦ୍ର ମିଶ୍ର

କବିଗୁରୁ ରବୀନ୍ଦ୍ରନାଥ ଚଳିତ ଶତାବ୍ଦୀର ଭାରତୀୟ ସାରସ୍ୱତ ଜଗତରେ ତଥା ଆନ୍ତର୍ଜାତିକ କାବ୍ୟ କବିତା ରାଜ୍ୟରେ ବହୁ ଚର୍ଚ୍ଚିତ ଯୁଗାନ୍ତକାରୀ ପୁରୁଷ । ଯୁଗ ଯୁଗର ସାହିତ୍ୟ ଏବଂ କାବ୍ୟ କବିତାର ପରମ୍ପରାରେ ସେ ଏକ ଅମ୍ଳାନ ଭାବମୂର୍ତ୍ତି । ସାହିତ୍ୟରେ ନୋବେଲ୍ ପୁରସ୍କାର ଲାଭ କରିବା ପୂର୍ବରୁ ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡରେ କବିଙ୍କ କାବ୍ୟ କବିତା ସ୍ୱୀକୃତି ଲାଭ କରିଥିଲା । ତାଙ୍କ ଗୀତିମୟ କବିତାର ନିଃସରଙ୍ଗ ଛନ୍ଦତା ସତେ ଅବା ସମଗ୍ର ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଭୂଖଣ୍ଡକୁ ଏକ ସମ୍ପୂର୍ଣ୍ଣ ନୂତନ ଆଲୋକରେ ଆବିଷ୍କାର କରି ପାରିଥିଲା । ସତେ ଅବା ବ୍ୟକ୍ତି ଜୀବନର ଭାବ ପ୍ରବଣତା କ୍ଷେତ୍ରରେ ଏକ ରେନେସାଁର ପଦଧ୍ୱନି ଶୁଣାଯାଇଥିଲା । ଏକ ଅଙ୍ଗୀକୃତ କାବ୍ୟ କବିତାର ପବିତ୍ର ଶପଥ ବାଣୀ ଶୁଣାଇ କବି ଜୀବନ ଏବଂ ଜଗତକୁ ଯେଉଁ ଅଭୟ କବଚ ଅର୍ପଣ କରି ପାରିଥିଲେ ତାହାର ପ୍ରେରଣାରେ ନୂତନ ପୃଥିବୀର ପ୍ରତିଶ୍ରୁତି କଳାତ୍ମକ ସାଧନାରେ ପ୍ରତିଫଳିତ ହୋଇଥିଲା । ବିଶାଳ ପ୍ରକୃତିର ରୂପ–ରସ–ଛନ୍ଦଭରା ଅପୂର୍ବ ସୌନ୍ଦର୍ଯ୍ୟ ନଦନଦୀ ସମୁଦ୍ର ଅରଣ୍ୟ ଏବଂ ପର୍ବତର ଅସାଧାରଣ ରୂପ ପସରା କବିଙ୍କ ଭାବ ଜଗତକୁ ପ୍ରସାରିତ କରିବା ସଙ୍ଗେ ସଙ୍ଗେ ଏକ ଅଚିନ୍ତନୀୟ ଆଧ୍ୟାତ୍ମିକ ଉଦ୍‌ବେଳନକୁ ଅନୁରଣିତ କରିଥିଲା । ଦେହ ଏବଂ ମନର ସୌନ୍ଦର୍ଯ୍ୟରେ ଭାବାବିଷ୍ଟ କବି ଆସା କେତେ ମାନସୀ କେତେ ରସପାତ୍ରୀଙ୍କୁ ତାଙ୍କ କବିତାରେ ରୂପାୟିତ କରି ସମଗ୍ର ବିଶ୍ୱ ଚେତନାରେ ଏକ ଝଲକ ସୃଷ୍ଟି କରିଥିଲା । ଭୂମିର ଆକର୍ଷଣରୁ ଭୂମା ସହିତ ନିବିଡ଼ ଭାବରେ କବି ନିଜକୁ ସଂଯୋଜିତ କରି ପାରିଥିଲେ ଏବଂ ଏହି ବୌଦ୍ଧିକ ପ୍ରକ୍ରିୟାରେ ସାହିତ୍ୟ ହିଁ ଥିଲା ତାଙ୍କର ଏକ ଶକ୍ତିଶାଳୀ ମାଧ୍ୟମ । ତାଙ୍କ କାବ୍ୟ କବିତାରେ ଉପନିଷଦୀୟ ପରିକଳ୍ପନା ଆତ୍ମା ଏବଂ ପରମାତ୍ମାର ବୈଚିତ୍ର୍ୟ ଉଦ୍‌ଘାଟନ କରି ପାରିଥିଲେ । ପ୍ରାଚ୍ୟ ଏବଂ ପ୍ରତୀଚ୍ୟର ରଙ୍ଗଭୂମିରେ ରବୀନ୍ଦ୍ରନାଥ ଜଣେ ମର୍ଯ୍ୟାଦାବନ୍ତ ଶିଳ୍ପୀ । ପ୍ରେମ ଏବଂ ସୌନ୍ଦର୍ଯ୍ୟର ମହିମା ତାଙ୍କ ସାରସ୍ୱତ କୃତି ସମୂହରେ ଛନ୍ଦର ତାଳେ ତାଳେ ପ୍ରତିଫଳିତ । ତେଣୁ ରବୀନ୍ଦ୍ରନାଥ ଥିଲେ ରୂପ ଓ ସୌନ୍ଦର୍ଯ୍ୟର କବି । ସେ ଥିଲେ ପ୍ରେମ ଏବଂ ଜିଜ୍ଞାସାର ପରମ ଉପାସକ । ତାଙ୍କ ରାଶି ରାଶି କବିତାରେ ଯୌବନର ଉଦ୍ଦାମ ପ୍ରେମ ଯେପରି ସାବଲୀଳ ଭାଷାରେ ପ୍ରକଟିତ ସେହିପରି ଯୌବନ ଏବଂ ପ୍ରେମର ଅନ୍ୱେଷଣରେ ଦେବତାର ସକଳ ମହିମା ଉଦ୍‌ଜୀବିତ ।

ଏ ପରିପ୍ରେକ୍ଷୀରେ ବିଶ୍ୱ କବିଙ୍କର କାବ୍ୟ କବିତାର ବିଶାଳତା ଓ ତାର ଅପୂର୍ବ ପ୍ରଭାବ ଏବଂ ସାର୍ବଜନୀନ ଆବେଦନ ସମ୍ପର୍କରେ ମନରେ ସ୍ୱତଃ ଏକ ପ୍ରଶ୍ନ ଉଠିଥାଏ । ତା ହେଉଛି କବିଙ୍କର କାବ୍ୟ ସାଧନାର ଭିତିଭୂମି ଏବଂ ତାର ସ୍ୱରୂପ କଅଣ ? ଗଙ୍ଗାନଦୀ କୂଳ ଜରାସାଙ୍କୋ ଗ୍ରାମରେ ରବୀନ୍ଦ୍ରନାଥଙ୍କର ଜନ୍ମ । କଲିକତା ମହାନଗରୀ ସଭ୍ୟତାରେ ଲାଳିତ ପାଳିତ ଦୀର୍ଘ ଶାଳ ବୀଥିର ଛାୟାଘନ ଶାନ୍ତିନିକେତନର ଇଲାକାରେ ତାଙ୍କର ସାଧନା ଏବଂ ସ୍ୱପ୍ନ । ଭାରତୀୟ ସାହିତ୍ୟ ଏବଂ ସଂସ୍କୃତିର ମହାନ ବାଣୀ ଦ୍ୱାରା ତାଙ୍କର କାବ୍ୟ ମାନସ ଝଙ୍କୃତ । ବଙ୍ଗଳାର ଅନବଦ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ, ନଦୀ, ନାଳ, ଅରଣ୍ୟ ପ୍ରାନ୍ତର ଏବଂ ବଙ୍ଗ ପଲ୍ଲୀର ଜନଜୀବନ ତାଙ୍କ କବି ଜୀବନର ପ୍ରେରଣା, ଏହା ସ୍ୱୀକାର୍ଯ୍ୟ ହେଲେ ମଧ୍ୟ ଭାରତବର୍ଷରେ ହିମାଚ୍ଛନ୍ନ ନଗାଧିରାଜ ହିମାଦ୍ରି, ପୂର୍ବ ସୀମାନ୍ତରେ ବିସ୍ତୃତ ନୀଳ ପାରାବାର, ବନ୍ୟା ପ୍ଲାବିତା ଗଙ୍ଗା ଗୋଦାବରୀ ଏବଂ ମଧ୍ୟପ୍ରଦେଶର ଉଜ୍ଜୟିନୀ ଉପକଣ୍ଠ ଆମ୍ର, ବେତସ କୁଞ୍ଜ, ସର୍ବୋପରି ପୂର୍ବ ଭାରତର ତାଳ ତମାଳ ବନରାଜି ନୀଳା ଦୃଶ୍ୟ କବିଙ୍କର ଦିବ୍ୟ କଳ୍ପନାରୁ ବାଦ୍ ପଡ଼ି ନଥିଲା ।ବିଶେଷତଃ ଅପୂର୍ବ ସୌନ୍ଦର୍ଯ୍ୟଶାଳିନୀ ମନ୍ଦିରମାଳିନୀ ଓଡ଼ିଶାର ଆକର୍ଷଣ ତାଙ୍କର କବି ଜୀବନରେ ସର୍ବାପେକ୍ଷା ବଳବତ୍ତର ଥିଲା ବୋଲି ଜଣାଯାଏ । ରବୀନ୍ଦ୍ରନାଥଙ୍କର ଓଡ଼ିଶା ସହିତ ସମ୍ପର୍କ ଅତି ନିବିଡ଼ ଓ ଗଭୀର ଥିଲା ବୋଲି ଜଣାଯାଏ । ଏହି ସମ୍ପର୍କ ମୂଳରେ ବୈଷୟିକ ଉପାଦାନ ଅପେକ୍ଷା ଉତ୍କଳୀୟ ପ୍ରକୃତିର ମନୋରମ ଆଲେଖ୍ୟ ଉତ୍କଳୀୟ କଳା ଓ ସଂସ୍କୃତିର ଅପରିହାର୍ଯ୍ୟ ମହିମା ବିଶେଷ ଭାବରେ ଦେଖିବାକୁ ମିଳିଥାଏ । କବି ତାଙ୍କର ଯୌବନରେ ବାରମ୍ବାର ପୁଣ୍ୟଭୂମି ଉତ୍କଳ ପ୍ରତି ଆକୃଷ୍ଟ ହୋଇ ତାର ପଲ୍ଲୀ ମାଟିରେ ଏବଂ ତାର ପୂର୍ବ ଦିଗରେ ଦିଗ୍‌ବଳୟବ୍ୟାପି-ସମୁଦ୍ର ବେଳାରେ ପଦସ୍ପର୍ଶ କରିଛନ୍ତି । ଓଡ଼ିଶାର କଟକ ଜିଲ୍ଲାର ପଲ୍ଲୀ ଅଞ୍ଚଳରେ କବିଙ୍କର ପୈତୃକ ଜମିଦାରୀ ଥିଲା । ତାହା ହେଉଛି ପଣ୍ଡୁଆ ଜମିଦାରୀ । ଜମିଦାରୀର ତତ୍ତ୍ୱାବଧାନ ବୁଝିବା ପାଇଁ କବି ଏକାଧିକବାର କଲିକତାରୁ କଟକରେ ଆସି ପହଞ୍ଚିଥିଲେ ଏବଂ କଟକରୁ କେନାଲ ଜଳପଥରେ ଡଙ୍ଗା ଦ୍ୱାରା ପଣ୍ଡୁଆ ଯାତ୍ରା କରିଥିଲେ । କବିଙ୍କର ସେହି ସବୁ ସ୍ମୃତି ତାଙ୍କର ରଚନାବଳୀରେ ପ୍ରତିଭାତ । ରବୀନ୍ଦ୍ରନାଥ ପଣ୍ଡୁଆ ସଦୃଶ ଅଖ୍ୟାତ ପଲ୍ଲୀ ଗ୍ରାମରେ ତାଙ୍କର କେତେକ ଅମରକୃତିର ପରିକଳ୍ପନା କରିଥିଲେ । ତାଙ୍କର 'ଚିତ୍ରାଙ୍ଗଦା' ପଣ୍ଡୁଆ ରହଣି କାଳର ଆଲେଖ୍ୟ ।

ଠାକୁର ପରିବାର ପ୍ରାୟ ଦୁଇ ଶତାବ୍ଦୀ ଧରି ଓଡ଼ିଶା ସହିତ ସମ୍ପୃକ୍ତ ଥିଲେ। ବିଶ୍ୱକବିଙ୍କର ପିତାମହ ଦ୍ୱାରକାନାଥ ଠାକୁର ୧୮୪୦ ମସିହାରେ ପଣ୍ଡୁଆ ଜମିଦାରୀ କ୍ରୟ କରିଥିଲେ। ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଠାକୁର ପରିବାରର ନୀଳମଣି ଠାକୁର ବ୍ରିଟିଶ୍ ରେସିଡେଣ୍ଟର ସିରସ୍ତାଦାର ଭାବରେ ଓଡ଼ିଶାକୁ ଆସିଥିଲେ। କଟକର ତୁଳସୀପୁରର ଖଣ୍ଡିଏ ଜମିରେ ତତ୍କାଳୀନ ଇଞ୍ଜିନିୟର୍ ଠାକୁରଙ୍କ ପାଇଁ ଗୋଟିଏ କୋଠି ନିର୍ମାଣ କରିଥିଲେ। ସମ୍ଭବତଃ ଦ୍ୱାରକାନାଥ ଠାକୁର ଓଡ଼ିଶାକୁ ଆସି ନଥିଲେ। ମାତ୍ର ମହର୍ଷି ଦେବେନ୍ଦ୍ରନାଥ ଠାକୁର ୧୮୬୯ ମସିହାରେ କଟକ, ପଣ୍ଡୁଆ ଏବଂ ପୁରୀ ପରିଦର୍ଶନରେ ଆସିଥିଲେ। ୧୮୭୬ ମସିହାରେ ବଙ୍ଗଳା ସରକାର କଟକରେ ଏକ ଡିଗ୍ରୀ କଲେଜ ସ୍ଥାପନ ପାଇଁ ମଞ୍ଜୁରୀ ଦେଇଥିଲେ। କଲେଜର ବାର୍ଷିକ ବ୍ୟୟ ବାର ହଜାର ଟଙ୍କା ଅଟକଳ କରାଯାଇଥିଲା। ଜନସାଧାରଣଙ୍କଠାରୁ ଏହି ଟଙ୍କା ସ୍ଥାୟୀ ସୂତ୍ରରେ ଚନ୍ଦା କରାଯିବା ପାଇଁ ପ୍ରସ୍ତାବ ହୋଇଥିଲା। ସେତେବେଳେ ପଣ୍ଡୁଆ ଜମିଦାରୀର ଅଧିକାରୀ ଭାବରେ ଦେବେନ୍ଦ୍ରନାଥ ଠାକୁର ଦୁଇ ହଜାର ପାଞ୍ଚଶହ ଟଙ୍କାର ଦାନ ଘୋଷଣା କରିଥିଲେ।

ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ଓଡ଼ିଶାର ବିଦ୍ୱାନ୍‌ମଣ୍ଡଳୀରେ ସର୍ବ ପ୍ରଥମ ସୂଚନା ହେଉଛି 'ଉତ୍କଳ ଦୀପିକା'ରେ ପ୍ରକାଶିତ ଏକ ସମ୍ବାଦ। ଏହି ସମ୍ବାଦରେ ପ୍ରକାଶ ପାଇଥିଲା ଯେ ଠାକୁର ବଂଶର ଜନୈକ କିଶୋର 'ବିଦ୍ୱଜ୍ଜନ' ସମାଗମରେ ଏକ କବିତା ପାଠ କରିଥିଲେ। କବିତାର ଶୀର୍ଷକ ହେଉଛି ପ୍ରକୃତିର ଖେଦ। ଦ୍ୱିଜେନ୍ଦ୍ରନାଥ ଠାକୁରଙ୍କର ବାସ ଭବନରେ ଏହି ସମାଗମ ଆୟୋଜିତ ହୋଇଥିଲା। କବିତାଟି ସେଦିନ ଶ୍ରୋତାମାନଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଥିଲା। ତେବେ ଏହି କିଶୋର ଥିଲେ ଭବିଷ୍ୟତର କବି ରବୀନ୍ଦ୍ରନାଥ। ଏହି ସମ୍ବାଦ 'ଉତ୍କଳ ଦୀପିକା' ୧୮୭୫ ମସିହା ମଇ ମାସ ୨୯ ତାରିଖ ସଂଖ୍ୟାରେ ପ୍ରକାଶିତ ହୋଇଥିଲା। ରବୀନ୍ଦ୍ରନାଥଙ୍କ ଏହି କବିତାଟି ବଙ୍ଗଳାର 'ତତ୍ତ୍ୱବୋଧିନୀ' ପତ୍ରିକାରେ ପ୍ରକାଶ ପାଇଥିଲା।

୧୮୯୧ ମସିହାର ଶେଷ ଭାଗରେ ପ୍ରଥମ ଥର ପାଇଁ ସେ ପଣ୍ଡୁଆ ଜମିଦାରୀ ପରିଦର୍ଶନ କରିଥିଲେ। କଲିକତାରୁ କଟକ, କଟକରୁ ପଣ୍ଡୁଆ ସେତେବେଳେ ପ୍ରଥମେ ଷ୍ଟିମର୍, ପରେ ଡଙ୍ଗା ସାହାଯ୍ୟରେ ଏହି ଦୀର୍ଘ ପଥ ଯାତ୍ରା କରିବାକୁ ପଡୁଥିଲା। ଚାନ୍ଦବାଲିଠାରୁ କଟକ ପର୍ଯ୍ୟନ୍ତ ଷ୍ଟିମରରେ ଯାତ୍ରା କରିବାର ଯେଉଁ ଅସୁଖ ଓ ବିରକ୍ତିକର ଅଭିଜ୍ଞତା ରବୀନ୍ଦ୍ରନାଥ ତାଙ୍କର ସେହି ଅନୁଭୂତିକୁ ବର୍ଣ୍ଣନା କରି ତାଙ୍କ ଝିଆରୀ ଇନ୍ଦିରା ଦେବୀଙ୍କୁ ଚିଠି ଲେଖିଥିଲେ। ଷ୍ଟିମରରେ ରାତି ଯାପନର ବେଦନା ଏବଂ ତିକ୍ତ ଅଭିଜ୍ଞତା ମଶା ମାଛି ପ୍ରଭୃତିଙ୍କର ଉପଦ୍ରବ ମଧ୍ୟରେ ଷ୍ଟିମରରେ ସହଯାତ୍ରୀମାନଙ୍କର ସଙ୍ଗୀତ ଆଳାପ ଖୁବ କବିଙ୍କ ମନରେ ଗଭୀର ପ୍ରଭାବ ପକାଇଥିଲା। ରବୀନ୍ଦ୍ରନାଥ ସ୍ୱୀକାର କରିଥିଲେ ଯେ ଏହା ପୂର୍ବରୁ ତାଙ୍କର ଷ୍ଟିମରରେ ଏହି ଜଳଯାତ୍ରାର ଅନୁଭୂତି ନଥିଲା। କବି କଟକରେ ସେତେବେଳର ସରକାରୀ ଓକିଲ ହରିବଲ୍ଲଭ ଘୋଷଙ୍କର ଅତିଥି ହୋଇଥିଲେ।

ତାଳଦଣ୍ଡା କେନାଲ ଦେଇ ନୌକା ଯୋଗେ ରବୀନ୍ଦ୍ରନାଥ ପଣ୍ଡୁଆ ଯାତ୍ରା କରିଥିଲେ। ସେ ଏହି ଯାତ୍ରାର ଅନୁଭୂତି ବର୍ଣ୍ଣନା କରିଥିଲେ ତାଙ୍କର ଏକ ଚିଠିରେ। ତାଳଦଣ୍ଡା କେନାଲର ଉଭୟ ପାର୍ଶ୍ୱରେ ତାଳ, ନାରିକେଳ ବୃକ୍ଷରାଜିର ଅପୂର୍ବ ଦୃଶ୍ୟ, ଦିଗନ୍ତ ବିସ୍ତୃତ ଶସ୍ୟ କ୍ଷେତ୍ର କବିଙ୍କୁ ପ୍ରକୃତିର ଅନ୍ତରାତ୍ମା ସହିତ ଅପୂର୍ବ ବନ୍ଧନରେ ମିଳିତ କରି ଦେଇଥିଲା। କାଳିଆଠାରେ କେନାଲ ଏବଂ ଶସ୍ୟ କ୍ଷେତ୍ରର ଦୃଶ୍ୟପଟ ଅତି ଚମତ୍କାର ବୋଲି କବି ଉଲ୍ଲେଖ କରିଥିଲେ। ଧାନ କ୍ଷେତର ଗଭୀର ସବୁଜିମାରେ ତରୁଣ ପ୍ରାଣଙ୍କ ଆଶା ଯେପରି ମୁକ୍ତ ଚିତ୍ତରେ ସେଦିନ ଅବଗାହନ କରିଥିଲା। କେନାଲର ଅପର ସୀମାରେ ତାଳ, ନାରିକେଳ ଛାୟା ବୀଥିରେ ସୁମନ୍ତ ପଲ୍ଲୀର ସୌନ୍ଦର୍ଯ୍ୟ କବିଙ୍କୁ ଉଦ୍‌ବୁଦ୍ଧ କରି ଦେଇଥିଲା।

କବି କଳ୍ପନାର ସ୍ୱପ୍ନଲୋକରେ କେନାଲ ଜଳର କୁଳୁକୁଳୁ ଧ୍ୱନିକୁ ଲକ୍ଷ୍ୟକରି ଚିନ୍ତା କରିଥିଲେ — ନଦୀ ତୁଳନାରେ କେନାଲର ପରିସର ସୀମିତ। ଅନନ୍ତ କାଳର ପ୍ରବହମାନ ଧାରା ସହିତ କେନାଲର ଜଳରାଶି କ'ଣ ମିଳିତ ହୋଇପାରେ କି? ଏହି ପ୍ରଶ୍ନ ହିଁ ଭାବପ୍ରବଣ କବିଙ୍କୁ ସେଦିନ ଆଲୋଡ଼ିତ କରିଥିଲା। ସେ ସେହି ମୁହୂର୍ତ୍ତରେ ନିଜକୁ ପ୍ରଶ୍ନ କରିଥିଲେ ଯେବେ ଭବିଷ୍ୟତରେ ସେ କେବେ ଜନ୍ମ ଗ୍ରହଣ କରନ୍ତି ସେତେବେଳେ ଏହି ଗ୍ରାମ୍ୟ ପ୍ରକୃତିର କି ଅପୂର୍ବ ପରିବର୍ତ୍ତନ ଘଟିଥିବ। କବି ତାରପୁରଠାରୁ ପାଲିଙ୍କିରେ ପଣ୍ଡୁଆ ଯାତ୍ରା କରିଥିଲେ। ଦୂରତା ପ୍ରାୟ ବାର ମାଇଲ। ପାଲିଙ୍କିରେ ତାଙ୍କୁ ଆଠ ଘଣ୍ଟା ଲାଗିଥିଲା। ବର୍ଷାଋତୁ ଆକାଶରେ ମୃଦଙ୍ଗର ଧ୍ୱନି ଗୁଞ୍ଜି କରୁଥିଲା। ପକ୍ଷୀମାନେ ବର୍ଷାହିନ୍ଦୋ ମୁହୂର୍ତ୍ତରେ ନୀଡ଼ରେ ଆଶ୍ରୟ ନେଇଥିଲେ। କବି ସେହିଦିନ ରାତିରେ ନଦୀ ଅତିକ୍ରମ କରି ପଣ୍ଡୁଆରେ ପହଞ୍ଚିଥିଲେ। ସେହିଦିନ ଘାଟରେ ଘାଟିଆ ଉପସ୍ଥିତ ନଥିଲା। ରବୀନ୍ଦ୍ରନାଥ ସେହି ଅବସରରେ ମନେ ମନେ ଭାବିଥିଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଣିଷ ବେଶରେ ମର୍ତ୍ତ୍ୟକୁ ଆସିପାରନ୍ତି। ମାତ୍ର ନଦୀ ଘାଟରେ ଘାଟିଆକୁ ଦରକାର ବେଳେ ଖୋଜି ପାଇବା ସେତେ ସହଜ ନୁହେଁ।

ପଣ୍ଡୁଆରେ ରବୀନ୍ଦ୍ରନାଥଙ୍କର ପ୍ରଥମ ଦିନର ଅନୁଭୂତି ସେତେ ସୁଖକର ହୋଇ ନଥିଲା। ଆକାଶରେ ମେଘାଡ଼ମ୍ବର ସମ୍ମୁଖରେ। ମୁକ୍ତ ଅଙ୍ଗନରେ ପ୍ରକୃତିର ଅପରୂପ ଆସ ପ୍ରକାଶ ମଧ୍ୟରେ ଭାବପ୍ରବଣ କବି ହୃଦୟ ପଣ୍ଡୁଆର ଗ୍ରାମ୍ୟ ସୌନ୍ଦର୍ଯ୍ୟ ସହିତ ସାମିଲ ହୋଇ ଯାଇଥିଲା। ପଣ୍ଡୁଆ କଚେରୀ ହତା ମଧ୍ୟରେ ଆକାଶଛୁଆଁ ନାରିକେଳ ବୃକ୍ଷର ସମାରୋହ କବିଙ୍କ ପକ୍ଷରେ ବାରମ୍ବାର ପ୍ରୀତିଦ ହୋଇଥିଲା। ରବୀନ୍ଦ୍ରନାଥ ପଣ୍ଡୁଆର ଗ୍ରାମ୍ୟ ପରିବେଶରେ ଛୋଟ ଛୋଟ ପଶୁପକ୍ଷୀ ଏବଂ ପଞ୍ଝିମୋଳ ବନ୍ଧା ବଳଦ ପ୍ରଭୃତିଙ୍କର ଚିତ୍ରିନିଖୁ ବର୍ଣ୍ଣନା କରିଥିଲେ। ଶାରୀରିକ କ୍ଳାନ୍ତି ସତ୍ତ୍ୱେ କବି ଓଡ଼ିଶା ମାଟିର ପଣ୍ଡୁଆରେ ହିଁ ତାଙ୍କର ଗୀତିନାଟ୍ୟ 'ଚିତ୍ରାଙ୍ଗଦା' ରଚନା କରିଥିଲେ। କବି ପଣ୍ଡୁଆରୁ କଟକ ଫେରିଆସି କିଛିଦିନ ପରେ କଲିକତା ଯାତ୍ରା କରିଥିଲେ। ୧୮୯୩ ମସିହା ଫେବୃଆରୀ ମାସରେ ରବୀନ୍ଦ୍ରନାଥ ପୁନର୍ବାର କଟକ ଆସିଥିଲେ ଏବଂ ସେହି ସମୟରେ କଟକ ଜିଲ୍ଲା ଜଜ୍ ପି: ଏଲ୍: ଗୁପ୍ତାଙ୍କର ଅତିଥି ହୋଇଥିଲେ। ଜଜ୍‌ଙ୍କ ଘରେ ରହିବା ସମୟରେ ଏକ ରାତ୍ରି ଭୋଜନର ବ୍ୟବସ୍ଥା ହୋଇଥିଲା। ସେହି ରାତ୍ରି ଭୋଜନରେ ନିମନ୍ତ୍ରିତ ବନ୍ଧୁମାନଙ୍କ ମଧ୍ୟରେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ମିଃ ହଲ୍‌ଓ୍ୱାର୍ଡ (N. L. Hallward) ଥିଲେ ଅନ୍ୟତମ। ସେହି ସମୟରେ ଭାରତ ସରକାର ଜୁରୀ ପ୍ରଥା ଉଠାଇ ଦେବା ପାଇଁ ଚିନ୍ତା କରୁଥିଲେ। ହଲ୍‌ଓ୍ୱାର୍ଡ ଭୋଜନ ସମୟରେ ଭାରତୀୟ ଜୁରୀମାନଙ୍କ ଉପରେ ଆକ୍ଷେପ କରି କେତେକ କଥା ମିଷ୍ଟର୍ ଗୁପ୍ତଙ୍କୁ କହିଥିଲେ। ତାଙ୍କର ଧାରଣା ଥିଲା ଭାରତୀୟମାନେ ଜୁରୀ ହେବା ପାଇଁ ଅଯୋଗ୍ୟ, କାରଣ ସେମାନଙ୍କର ନୈତିକ ମାନଦଣ୍ଡ ସେତେ ଉଜ୍ଜ୍ୱଳ ନୁହେଁ। ଜଣେ ୟୁରୋପୀୟ ଅଧ୍ୟକ୍ଷଙ୍କର ଏହି କଟୁ ମନ୍ତବ୍ୟ ରବୀନ୍ଦ୍ରଙ୍କ ମନରେ ସେଦିନ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା। ସେ ଉପଲବ୍ଧି କରିଥିଲେ ଭାରତୀୟମାନଙ୍କ ପ୍ରତି ଇଂରେଜମାନଙ୍କର ଘୃଣା ଓ ବିଦ୍ୱେଷ। ଫେବୃଆରୀ ମାସ ୨୭ ତାରିଖ (୧୮୯୩ ମସିହା) ଦିନ ରବୀନ୍ଦ୍ରନାଥ ହରିବଲ୍ଲଭ ଗୁପ୍ତା ଓ ତାଙ୍କର ସହଧର୍ମିଣୀଙ୍କ ସହ ପୁରୀ ଯାତ୍ରା କରିଥିଲେ। ଏହି ଯାତ୍ରା ପାଇଁ ଏକମାତ୍ର ବ୍ୟବସ୍ଥା ଥିଲା ପାଲିଙ୍କି। ସେମାନେ ତିନି ତାରିଖ ଦିନ ସନ୍ଧ୍ୟାରେ ପୁରୀରେ ପହଞ୍ଚିଥିଲେ। କଟକ ସୀମାରେ କାଠଯୋଡ଼ି ନଦୀ। ତାପରେ ଦୀର୍ଘ ପୁରୀ ରାସ୍ତା। ରାସ୍ତାରେ ପୁରୀ ଯାତ୍ରୀ, ବଳଦ, ଶଗଡ଼। ରାସ୍ତାର ଦୁଇ ପାର୍ଶ୍ୱରେ ଅସ୍ଥାୟୀ ଦୋକାନୀମାନଙ୍କର ବେପାର, ବିକେନ୍ଦ୍ରିତ ଦିଗ୍‌ବଳୟବ୍ୟାପୀ ପଲ୍ଲୀ ମେଖଳାରେ ତାଳ ନାରିକେଳ ବୃକ୍ଷର ଅପୂର୍ବ ଦୃଶ୍ୟ ବର୍ଣ୍ଣନା କରି କବି ତାଙ୍କ ସ୍ତ୍ରୀଙ୍କ ନିକଟକୁ ପୁରୀଠାରୁ ପତ୍ର ଲେଖିଥିଲେ (ତା ୧୪/୨/୯୩)।

ପୁରୀ ରହଣି ସମୟରେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ମିଷ୍ଟର୍ ୱାଲ୍‌ସ (Mr. H. C. Walsh)ଙ୍କ ବ୍ୟବହାର କବିଙ୍କୁ କ୍ଷୁବ୍ଧ କରିଥିବାର ଜଣାଯାଏ । କ୍ରମେ କ୍ରମେ ଇଂରେଜମାନଙ୍କ ବିରୋଧରେ ତାଙ୍କର ପ୍ରତିକ୍ରିୟା ତୀବ୍ର ହୋଇ ଉଠିଥିଲା । ପୁରୀଠାରୁ କବି ଭୁବନେଶ୍ୱରକୁ ଆସିଥିଲେ । ଏଣୁ ଏଥରେ ହିଁ କବି ଓଡ଼ିଶାର ମନ୍ଦିର ସମୂହର ସୂକ୍ଷ୍ମ କାରୁକାର୍ଯ୍ୟ ଏବଂ ତାହାର କଳାତ୍ମକ ରୂପ ସହ ଏକାତ୍ମ ହୋଇ ଯାଇଥିଲେ । ଲିଙ୍ଗରାଜ ମନ୍ଦିରର କଳାକୃତି ଏବଂ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ବଙ୍ଗଳାରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ଏହି ପ୍ରବନ୍ଧର ଶୀର୍ଷକ ଥିଲା 'ମନ୍ଦିର' । (ଏହି ଲେଖାଟି ୧୯୦୪ ମସିହାରେ ପ୍ରକାଶିତ ହୋଇଥିଲା । ଏହି ରଚନାର ପ୍ରତି ପଦରେ କବିଙ୍କର ଉତ୍କଳୀୟ ସଂସ୍କୃତି ଏବଂ କଳା ପ୍ରତି ଗଭୀର ଆନୁଗତ୍ୟ ପ୍ରତିଫଳିତ । ସେହି ଲେଖାର କେତେକ ଅଂଶ ଏଠାରେ ଉଲ୍ଲେଖ କରାଯାଇ ପାରେ ।) କବିଙ୍କ ଭାଷାରେ "ମୁଁ ଯେତେବେଳେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଦର୍ଶନ କଲି ମୋ ମନରେ ଧାରଣା ହେଲା । ମୁଁ ଖଣ୍ଡିଏ ମୂକ ପୁସ୍ତକ ଅଧ୍ୟୟନ କରୁଛି । ମୋର ସ୍ପଷ୍ଟ ଉପଲବ୍ଧି ହେଲା ଯେ ସେହି ମନ୍ଦିରର ପାଷାଣ ଦେହରେ ଗୋଟାଏ ସନ୍ଦେଶ ପୂରି ରହିଛି । ସେହି ସନ୍ଦେଶ ଆମମାନଙ୍କ ହୃଦୟରେ ପ୍ରଭାବଶାଳୀ ଗତିରେ ଭେଦ କରିପାରୁଛି । କାରଣ ଯୁଗ ଯୁଗ ଧରି ଏହା ମୂକ ସାକ୍ଷୀ ସଦୃଶ ଦଣ୍ଡାୟମାନ ।" କବି ତାପରେ ବିଶ୍ଳେଷଣ କରିଥିଲେ ସମଗ୍ର ବିଶ୍ୱ ସେହି ଶକ୍ତିର ଏକ ବିରାଟ ମନ୍ଦିର ସଦୃଶ । ଇତିହାସର ଯାହା କିଛି ସାମାନ୍ୟ ଏବଂ ଅସାମାନ୍ୟ ସେହି ସବୁକୁ ହୃଦୟ ମଧ୍ୟରେ ସମ୍ମିଳିତ କରି ସେହି ମଣିଷ ଦେବୀଙ୍କୁ ଆବେଦନ କରି ରୁଳିଛି ।

ଏହି ପରିଦର୍ଶନ ସମୟରେ କବି ଫେବୃଆରୀ ମାସ ଶେଷ ଯାଏ କଟକରେ ଅବସ୍ଥାନ କରିଥିଲେ । ସେ କଟକରେ ହିଁ ତାଙ୍କର ସାଧନା ପୁସ୍ତକ ଲେଖିଥିଲେ । କବିଙ୍କର ଦୃଢ଼ ବିଶ୍ୱାସ ଥିଲା ସାଧନା କଦାପି ବ୍ୟର୍ଥ ହେବ ନାହିଁ । ସେ ଏହି ପୁସ୍ତକରେ ଭାରତର ସାଂସ୍କୃତିକ ଅବକ୍ଷୟ ପାଇଁ ଦୁଃଖ ପ୍ରକାଶ କରିଥିଲେ । ଫେବୃଆରୀ ମାସ ଶେଷ ପର୍ଯ୍ୟାୟରେ କବି ପୁନର୍ବାର ପଣ୍ଡୁଆ ପରିଦର୍ଶନରେ ଯାଇଥିଲେ । କଟକଠାରୁ ସେ ଏକାଧିକ ପତ୍ର ତାଙ୍କର ବନ୍ଧୁମାନଙ୍କୁ ଲେଖିଥିବାର ଜଣାଯାଏ । (୧୭/୨/୧୮୯୩, ୨୪/୨/୧୮୯୩, ୨୭/୨/୧୮୯୩) । ବାଲିଆଠାରୁ ସେ ଏକ ଚିଠି ଲେଖି ସେଥିରେ ନିଜର କାବ୍ୟ ପୁରୁଷର ଉଦାତ୍ତ ଅଭିଳାଷ ପୋଷଣ କରିଥିଲେ (୨୮/୨/୧୮୯୩) । ତାଙ୍କ ପତ୍ରରୁ ଜଣାଯାଏ କବି ନିବିଡ଼ ଭାବରେ ନିଃସଙ୍ଗତାରୁ ମୁକ୍ତି ପାଇଁ ବ୍ୟାକୁଳ ଥିଲେ । ମଶା ମାଛିଙ୍କ ଉପଦ୍ରବରେ କବି କେତେ ବିନିଦ୍ର ରଜନୀ ଅତିବାହିତ କରିଥିଲେ । ପଣ୍ଡୁଆରେ ଏହି ସମୟରେ ବର୍ଷା ଲାଗି ରହିଥିଲା । ପଣ୍ଡୁଆର ବର୍ଷା ପ୍ଳାବିତ ରାତିରେ କବି କାଳିଦାସଙ୍କ ମେଘଦୂତ କାବ୍ୟର ଉଚ୍ଚାଙ୍ଗ କଳ୍ପନା ଏବଂ ଭାବ ପ୍ରବଣତାରେ ମଜ୍ଜି ରହିଥିଲେ । ସେହି ସମୟରେ କବି ଅନାଦୃତ, ନଦୀ ପଥେ ଏବଂ ଦେଉଳ ଶୀର୍ଷକ ତିନିଗୋଟି କବିତା ରଚନା କରିଥିଲେ । ଏହି କବିତାର ପୃଷ୍ଠଭୂମିରେ ତାଳଦଣ୍ଡା କେନାଲ ଓଡ଼ିଶାର ପଲ୍ଲୀ ଅଞ୍ଚଳର ସ୍ନିଗ୍ଧ ସୌନ୍ଦର୍ଯ୍ୟର ପ୍ରଭାବ ନିହିତ ଥିଲା । ମାନବିକତା ଏକ ବିଶାଳ ପରମ୍ପରା ଏବଂ ପରମ୍ପରାର ଐଶ୍ୱର୍ଯ୍ୟରେ ଏହା ଉଦ୍ଦୀପ୍ତ । 'ନଦୀପଥେ' କବିତାରେ ବର୍ଣ୍ଣିତ ଜଳଯାତ୍ରାର ଛନ୍ଦ ହେଉଛି ଓଡ଼ିଶାର ସ୍ମୃତି ଏବଂ ଦେଉଳ କବିତାର ଛନ୍ଦେ ଛନ୍ଦେ ଭୁବନେଶ୍ୱର ମନ୍ଦିରର ସୁଷମା ଏବଂ ସୌନ୍ଦର୍ଯ୍ୟ ପ୍ରତି ଧ୍ୱନିତ । କବି ମାର୍ଚ୍ଚମାସ ୬ ତାରିଖରେ କଟକରୁ କଲିକତା ପ୍ରତ୍ୟାବର୍ତ୍ତନ କରିଥିଲେ । ବୈତରଣୀ ନଦୀରେ ଏହି ଯାତ୍ରୀ ସମୟରେ ସେ 'ବିଶ୍ୱନୃତ୍ୟ' ଶୀର୍ଷକ କବିତା ରଚନା କରିଥିଲେ । ପରବର୍ତ୍ତୀ ସମୟରେ 'ପ୍ରକୃତି ସହିତ ଆମର ମିଳନ' ସମ୍ପର୍କରେ ବିସ୍ତୃତ ଆଲୋଚନା କରିଥିଲେ । ଏହି ଅପୂର୍ବ ଅନବଦ୍ୟ ପ୍ରକୃତି ହେଉଛି ଓଡ଼ିଶାର ନଦନଦୀ, ଅରଣ୍ୟ ପର୍ବତ ଓ ପ୍ରାନ୍ତରମାଳା । ପୁରୀ ମହୋଦଧି ପ୍ରତି କବିଙ୍କର ମମତା ଓ ଆକର୍ଷଣ ଅସାଧାରଣ ଥିଲା । ସେ ଯେତେଥର ପୁରୀଠାରେ ସମୁଦ୍ର ଦର୍ଶନ କରିଥିଲେ ସେତିକି ସେତିକି ଆବେଗ ଏବଂ ଭାବପ୍ରବଣ ତାଙ୍କର କାବ୍ୟ ମାନସକୁ ତରଙ୍ଗିତ କରି ଦେଉଥିଲା । ବଙ୍ଗୋପସାଗରର ପ୍ରତ୍ୟେକ ତରଙ୍ଗରେ କବି ଯେପରି ସମଗ୍ର ବିଶ୍ୱ ସୌନ୍ଦର୍ଯ୍ୟ ଉପଲବ୍ଧି କରିଥିଲେ । ତାଙ୍କର କବିତା ସମୁଦ୍ର ପ୍ରତି ଓଡ଼ିଶାର ଦିଗନ୍ତ ବିସ୍ତୃତ ସାଗର ସୌନ୍ଦର୍ଯ୍ୟରେ ଉଦ୍ଭାସିତ । କବି ବହୁବାର ସମୁଦ୍ରକୁ ସମ୍ବୋଧନ କରି କାବ୍ୟ ଜଗତରେ ଏକ ବର୍ଣ୍ଣନାତୀତ ସଂପ୍ରୀତି ସ୍ଥାପନ କରିଥିଲେ । ୧୮୯୩ ମସିହା ଫେବୃଆରୀ ମାସ ୨୪ ତାରିଖରେ କବି ପୁରୀଠାରୁ ଯେଉଁ ପତ୍ର ଲେଖିଥିଲେ ସେଥିରେ ତାଙ୍କ ସମୁଦ୍ର ପ୍ରୀତି ପ୍ରତିଫଳିତ । "ପୁରୀକୁ ଆସିବା ପରେ ମୁଁ ନିୟମିତ ଭାବରେ ସମୁଦ୍ର ଦର୍ଶନ କରୁଅଛି । ସମୁଦ୍ର ମୋର ମନ ପ୍ରାଣକୁ ଆଚ୍ଛନ୍ନ କରି ଦେଇଛି ।" ସମୁଦ୍ର କବିଙ୍କ କଳ୍ପନାରେ ସମସ୍ତ ଶକ୍ତିର ମୂଳ ଉତ୍ସ । ସେ ଅମୃତ ସିନ୍ଧୁ । ସେ ବାଞ୍ଛିତା ପ୍ରେୟସୀ ଏବଂ କୃପାମୟୀ ଜନନୀ ।

୧୮୯୬ ମସିହାର ମଧ୍ୟ ଭାଗରେ ରବୀନ୍ଦ୍ରନାଥ ପୁନର୍ବାର ପଣ୍ଡୁଆ ପରିଦର୍ଶନରେ ଆସିଥିଲେ । ଏହି ସମୟରେ ସେ ମାଳିନୀ ନୃତ୍ୟନାଟିକା ପ୍ରଣୟନ କରିଥିଲେ । ପୂର୍ବ ପରିଦର୍ଶନ ସମୟରେ ପୁରୀଠାରେ କବି ଖଣ୍ଡିଏ ସରକାରୀ ଜମି ଯୋଗାଡ଼ କରିଥିଲେ । ସେହି ଜମି ଖଣ୍ଡିକ ରାଜସ୍ୱ ବିଭାଗର ଇଂରେଜ ଅଫିସରମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଇଲାକାରେ ଅନ୍ତର୍ଭୁକ୍ତ ଥିଲା । ପରବର୍ତ୍ତୀ ପୁରୀର କଲେକ୍ଟର୍ ସେହି ଜମି ବଦଳାଇ ଦେଇଥିଲେ ।

୧୯୩୯ ମସିହାରେ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଶାସନ କରୁଥିଲା ବେଳେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶ କବିଗୁରୁଙ୍କୁ ଓଡ଼ିଶା ସରକାରଙ୍କ ଅତିଥି ରୂପେ ନିମନ୍ତ୍ରଣ କରିଥିଲେ । ଏହି ରାଜକୀୟ ଗୌରବ ଅନ୍ୟ କୌଣସି ଭାରତୀୟ କବିଙ୍କୁ ମିଳିନଥିଲା । କବି ସେହି ବର୍ଷ ଏପ୍ରିଲ୍ ମାସରେ ଓଡ଼ିଶା ଆସି ପୁରୀ ସର୍କିଟ୍ ହାଉସ୍‌ରେ ରାଜ୍ୟ ସରକାରଙ୍କ ଅତିଥି ଭାବରେ ଅବସ୍ଥାନ କରିଥିଲେ । ଏହି ରହଣି କାଳରେ ଓଡ଼ିଶାର ନାରୀ ସମାଜ କବିଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ମଇ ମାସ ୯ ତାରିଖ ଦିନ କବିଙ୍କର ଜନ୍ମଦିନ ପାଳିତ ହୋଇଥିଲା । ପୁରୀ ମ୍ୟୁନିସିପାଲିଟି ତରଫରୁ କବିଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜ ମାନପତ୍ର ପାଠ କରିଥିଲେ । ପଣ୍ଡିତ ରଘୁନାଥ ମିଶ୍ର ଓ ସରଳା ଦେବୀ ଯଥାକ୍ରମେ ସଂସ୍କୃତ ଓ ଓଡ଼ିଆରେ ଭାଷଣ ଦେଇଥିଲେ । ସେହି ସମୟରେ ଓଡ଼ିଶାର କବି କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ଚନ୍ଦ୍ରଶେଖର ଦାସ କବିଙ୍କୁ ଭେଟିଥିଲେ । ପୁରୀ ଗଜପତି କବିଙ୍କୁ ପରମଗୁରୁ ଉପାଧିରେ ଭୂଷିତ କରିଥିଲେ । କବିଙ୍କର ପୁରୀ ଅବସ୍ଥାନକାଳୀନ ଅନୁଭୂତି ଏବଂ ସ୍ମୃତି ଭାବପ୍ରବଣତାରେ ପୂର୍ଣ୍ଣ । ସେ ଆତିଥେୟତା ପାଇଁ ଓଡ଼ିଶାବାସୀଙ୍କୁ ପ୍ରଶଂସା କରିଥିଲେ ।

ଓଡ଼ିଶାବାସୀଙ୍କ ସୁଖ ଦୁଃଖ ସମାଚାର ପ୍ରତି କବି ସଚେତନ ଥିଲେ । ସେ ଥରେ ବିଶ୍ୱନାଥ ଦାଶଙ୍କୁ କଥା ପ୍ରସଙ୍ଗରେ କହିଥିଲେ : **I belong also to Orissa. I entertain good will, love and affection for the people of Orissa, so I am closely watching the political development.** ଏହି ଐତିହାସିକ ଅଙ୍ଗୀକାର ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଓଡ଼ିଶାର ସୌନ୍ଦର୍ଯ୍ୟମୟ ପ୍ରକୃତି ପ୍ରତି ଯଥାର୍ଥରେ ଏକ ଶ୍ରଦ୍ଧାଞ୍ଜଳି ।

ମଧୁପାଟଣା, କଲ୍ୟାଣୀନଗର,
କଟକ–୧୩ ।

# ଶବ୍ଦତତ୍ତ୍ୱବୋଧ ଅଭିଧାନ ଓ ପଣ୍ଡିତ ଗୋପୀନାଥ ନନ୍ଦ

ଡଃ ରାଧାଗୋବିନ୍ଦ ଦାସ

ଇଂରେଜମାନେ ୧୮୦୩ରେ ଓଡ଼ିଶା ଦଖଲ କରିବା ଆଗରୁ ଆମ ରାଜ୍ୟରେ ଅଭିଧାନର ଆବଶ୍ୟକତା ଅନୁଭୂତ ହୋଇ ନଥିଲା । ସେତେବେଳେ ଶିକ୍ଷିତ ଲୋକଙ୍କ ସଂଖ୍ୟା ଥିଲା ଅତି ଅଳ୍ପ । ତାଳପତ୍ରରେ ଅଭିଧାନ ପ୍ରଣୟନ ମଧ୍ୟ ଥିଲା ଅତ୍ୟନ୍ତ କଷ୍ଟସାଧ୍ୟ । ଇଂରେଜମାନେ ଓଡ଼ିଶାକୁ ଆସି ଓଡ଼ିଆ ଭାଷା ଶିକ୍ଷା ପାଇଁ ସର୍ବ ପ୍ରଥମେ ଅଭିଧାନ ଆବଶ୍ୟକ କଲେ । ମାତ୍ର ଅଭିଧାନ ନଥିବାରୁ ଫୋର୍ଟ ଉଇଲିୟମ୍ କଲେଜର ସହକାରୀ ଗ୍ରନ୍ଥପାଳ ମୋହନ ପ୍ରସାଦ ଠାକୁରଙ୍କୁ ଅଭିଧାନ ସଙ୍କଳନ ଦାୟିତ୍ୱ ଦିଆଗଲା । ଠାକୁରଙ୍କ "ଭୋକାବୁଲାରୀ ଫର୍ ଇଉଜ୍ ଅଫ୍ ଷ୍ଟୁଡେଣ୍ଟସ୍" ହେଉଛି ପ୍ରଥମ ଓଡ଼ିଆ ଇଂରାଜୀ ଅଭିଧାନ । ଏହା ୧୮୧୧ରେ ଶ୍ରୀରାମପୁର ମିଶନ୍ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ଇଂରେଜ କର୍ମଚାରୀମାନଙ୍କର ଓଡ଼ିଆ ଶିକ୍ଷା ପାଇଁ ଏଥିରେ ଓଡ଼ିଆ ଶବ୍ଦମାନଙ୍କର ଇଂରାଜୀ ପ୍ରତିଶବ୍ଦମାନ ପ୍ରଦତ୍ତ ହୋଇଥିଲା । କେହି କେହି ଉପେନ୍ଦ୍ରଭଞ୍ଜଙ୍କ "ଗୀତାଭିଧାନ"କୁ ପ୍ରଥମ ଓଡ଼ିଆ ଅଭିଧାନର ମର୍ଯ୍ୟାଦା ଦେଇଥାନ୍ତି । ମାତ୍ର ଗୀତାଭିଧାନ ଏକ ଅଭିଧାନ ନୁହେଁ । ଠାକୁରଙ୍କ ପରେ ଆମସ୍ ସଟନ୍ ଉଇଲିୟମ୍ ମିଲର୍ ଓ ବ୍ରୁକ୍ସ ପ୍ରଭୃତି ପାଦ୍ରୀମାନେ ମଧ୍ୟ ଓଡ଼ିଆ ଅଭିଧାନମାନ ସଙ୍କଳନ କରିଥିଲେ । ସେମାନେ ସଙ୍କଳନ କରିଥିବା ଅଭିଧାନମାନଙ୍କର ଲକ୍ଷ୍ୟ ଥିଲା ତରୁଣ ଇଂରେଜ କର୍ମଚାରୀମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦେବା । ତେଣୁ ଅଧିକ କାଳ ଏହି ଅଭିଧାନଗୁଡ଼ିକ ଲୋକପ୍ରିୟ ହୋଇପାରିଲା ନାହିଁ । ପରେ ପରେ ଭକ୍ତକବି ମଧୁସୂଦନ ରାଓ ଓ ଜଗନ୍ନାଥ ରାଓଙ୍କ "ପ୍ରଶବୋଧ ଅଭିଧାନ" ଓ "ଉତ୍କଳ ଅଭିଧାନ" ଯଥାକ୍ରମେ ଆମ ଅଭିଧାନ ଭଣ୍ଡାରକୁ ପୁଷ୍ଟିମନ୍ତ କଲେ । କିନ୍ତୁ ଉପରୋକ୍ତ ସମସ୍ତ ଅଭିଧାନ ଅଧିକ କାଳ ସାହିତ୍ୟପ୍ରେମୀମାନଙ୍କ ଆବଶ୍ୟକତା ମେଣ୍ଟାଇ ପାରିଲେ ନାହିଁ । ଶାସ୍ତ୍ରୀୟ ବିଶୁଦ୍ଧ ଓଡ଼ିଆ ଅଭିଧାନର ଆବଶ୍ୟକତା ସମସ୍ତେ ଅନୁଭବ କଲେ । ଉତ୍କଳ ସାହିତ୍ୟ ସମାଜ ଏକ ବିଶୁଦ୍ଧ ଓଡ଼ିଆ ଅଭିଧାନ ସଙ୍କଳନର ଦାୟିତ୍ୱ ପାରଳାଖେମୁଣ୍ଡି କଲେଜର ତତ୍କାଳୀନ ଓଡ଼ିଆ ସଂସ୍କୃତ ଅଧ୍ୟାପକ ଗୋପୀନାଥ ନନ୍ଦଙ୍କ ଉପରେ ନ୍ୟସ୍ତ କଲେ । ପଣ୍ଡିତ ନନ୍ଦଙ୍କର ମଧ୍ୟ ତିନୋଟି ଅଭିଳାଷ ଥିଲା । ଶାସ୍ତ୍ରୀୟ ବିଶୁଦ୍ଧ ଓଡ଼ିଆ ଅଭିଧାନ, ଶାସ୍ତ୍ରୀୟ ବିଶୁଦ୍ଧ ଓଡ଼ିଆ ବ୍ୟାକରଣ ଓ ଓଡ଼ିଆ ଭାଷାର ଇତିହାସ ପ୍ରଣୟନ । ତେଣୁ ସେ ଅତି ଆନନ୍ଦରେ "ଉତ୍କଳ ସାହିତ୍ୟ ସମାଜ"ର ଏହି ଅନୁରୋଧ ରକ୍ଷା କରିବାକୁ ସମ୍ମତ ହୋଇଥିଲେ । ତେବେ "ପ୍ରଶବୋଧ ଅଭିଧା[ନ" ପ୍ରକାଶ ପାଇବା ଆଗରୁ "ଶବ୍ଦତତ୍ତ୍ୱବୋଧ ଅଭିଧାନ" ସଙ୍କଳନ କା[ର୍ଯ୍ୟ] ଶେଷ ହୋଇଯାଇଥିଲା । ତେଣୁ "ଶବ୍ଦତତ୍ତ୍ୱବୋଧ ଅଭିଧାନ" ସଙ୍କ[ଳନ] କ୍ଷେତ୍ରରେ "ପ୍ରଶବୋଧ ଅଭିଧାନ"ର ସହାୟତା ପଣ୍ଡିତ ଗୋପୀନାଥ ... ଲାଭକରି ନଥିବେ ।

ଏହି ଅଭିଧାନ ସଙ୍କଳନ କାର୍ଯ୍ୟ ୧୯୦୮ରେ ଶେଷ ହୋଇଥିଲେ ମ... ଅର୍ଥାଭାବରୁ ୧୯୧୬ ପର୍ଯ୍ୟନ୍ତ ମୁଦ୍ରିତ ହୋଇପାରି ନଥିଲା । ତତ୍କାଳ... ଧରାକୋଟ ରାଜା ମଦନ ମୋହନ ସିଂହଙ୍କ ଉଦ୍ୟମରୁ ବିହାର ଓଡ଼ି... ସରକାର ଓ ମାନ୍ଦ୍ରାଜ ସରକାର ଯଥାକ୍ରମେ ଦୁଇ ସହସ୍ର ଓ ଏକ ସହ... ମୁଦ୍ରା ଏହାର ପ୍ରକାଶ ପାଇଁ ମଞ୍ଜୁର କରିଥିଲେ । ଏଥିପାଇଁ ନ... ମହାଶୟ ସେମାନଙ୍କୁ ଯଥାକ୍ରମେ ଏକଶତ ଓ ପଚାଶ ଖଣ୍ଡ ଅଭିଧା... ପ୍ରଦାନ କରିଥିଲେ । ଗୁଣଗ୍ରାହୀ ପାରଳାଖେମୁଣ୍ଡି ମହାରା... ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ ମଧ୍ୟ ଏଥିପାଇଁ ପଣ୍ଡିତଜୀଙ୍କୁ ତିନି ସହସ୍ର ମୁ... ସାହାଯ୍ୟ କରିଥିଲେ । ତେଣୁ ୧୯୧୬ରେ "ଉତ୍କଳ ସାହିତ୍ୟ ପ୍ରେସ୍"... ଦ୍ୱାରା ଏହି ଅଭିଧାନ ମୁଦ୍ରିତ ହୋଇପାରିଲା । ଓଡ଼ିଆ ଭାଷାତତ୍ତ୍ୱ ମ... ଅର୍ଥାଭାବରୁ ପଣ୍ଡିତଜୀଙ୍କ ମୃତ୍ୟୁ ପୂର୍ବରୁ ପ୍ରକାଶିତ ହୋଇପାରି ନଥିଲା... ମୃତ୍ୟୁ ପରେ ପଣ୍ଡିତଜୀଙ୍କ ସହୋଦର ବଳଭଦ୍ର ନନ୍ଦ ୧୯୨୭ରେ ଏ... ପ୍ରକାଶ କରିବାକୁ ସକ୍ଷମ ହୋଇଥିଲେ । ସୁଖର କଥା ଶବ୍ଦତତ୍ତ୍ୱବୋ... ଅଭିଧାନର ଗୁହିରା ଏ ପର୍ଯ୍ୟନ୍ତ ରହିଅଛି । ଏହାର ଦ୍ୱିତୀୟ ଓ ତୃତୀ... ସଂସ୍କରଣ ମଧ୍ୟ ଲୋକପ୍ରିୟ ହୋଇପାରିଛି । ଓଡ଼ିଆ ଭାଷାତତ୍ତ୍ୱର ଉପାଦେୟତା ଚିରକାଳ ରହିଥିବ । ଆନନ୍ଦର କଥା ଯେ ତାଙ୍କର ରଚି... କାବ୍ୟ ଓ ନାଟକାଦି ମଧ୍ୟ ଗ୍ରନ୍ଥାବଳୀ ଆକାରରେ ପ୍ରକାଶି... ହୋଇଅଛି ।

ଓଡ଼ିଆ ସାହିତ୍ୟର ଆଦ୍ୟ ସମୀକ୍ଷକ ପଣ୍ଡିତ ଗୋପୀନାଥ ନ... ପାରଳାଖେମୁଣ୍ଡିରେ ତା୨୦/୮/୧୮୬୯ରେ ଜନ୍ମ ଗ୍ରହଣ କରିଥିଲେ । ସେ "ଓଡ଼ିଆ ଭାଷାତତ୍ତ୍ୱ", "ଶବ୍ଦତତ୍ତ୍ୱବୋଧ ଅଭିଧାନ" ଓ "ଭାର... ଦର୍ପଣ" ଏହି ତିନୋଟି ଗ୍ରନ୍ଥ ପାଇଁ ଓଡ଼ିଶାର ସୁଧୀ ମହଲରେ ସୁପରିଚିତ । ଇଂରାଜୀ ଜାଣି ଏବଂ ବିଶ୍ୱବିଦ୍ୟାଳୟ ଶିକ୍ଷା ଲାଭ... ସୁଯୋଗରୁ ବଞ୍ଚିତ ହୋଇ ସୁଦ୍ଧା ସେ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ପାରଳା ମହାରାଜାଙ୍କ କଲେଜରେ ସଂସ୍କୃତ ଓ ଓଡ଼ିଆ

ଅଧ୍ୟାପନା ଆରମ୍ଭ କରି ଛାତ୍ର ଓ ଶିକ୍ଷକ ମହଲରେ ଭକ୍ତି ଓ ଶ୍ରଦ୍ଧାଭାଜନ ହୋଇଥିଲେ । ତାଙ୍କର ଅନେକ କାବ୍ୟ ଏବଂ ନାଟକ ମଧ୍ୟ ସାହିତ୍ୟାନୁରାଗୀମାନଙ୍କୁ ଆକୃଷ୍ଟ କରିଥିଲା । ସେ ନିରବଚ୍ଛିନ୍ନ ବିଦ୍ୟା ଚର୍ଚ୍ଚା କରି ଚାଲିଥିଲେ । ଶୈଶବ ତଥା କିଶୋର ବୟସରେ ମଧ୍ୟ ଖେଳ କୌତୁକ ତାଙ୍କୁ ଆକୃଷ୍ଟ କରି ନଥିଲା । ଓଡ଼ିଆରେ ଉପଯୁକ୍ତ ଅଭିଧାନ ଅଭାବ ଥିବାରୁ "ଉତ୍କଳ ସାହିତ୍ୟ ସମାଜ" ତାଙ୍କୁ ଏକ ବିଶୁଦ୍ଧ ଓଡ଼ିଆ ଅଭିଧାନ ସଙ୍କଳନର ଦାୟିତ୍ୱ ଦେଇଥିଲେ । ଏହି ଅଭିଧାନ ସଙ୍କଳନ ପାଇଁ ତାଙ୍କୁ ପୁରା ସାତବର୍ଷ ସମୟ ଲାଗିଥିଲା । ପାରଳା ମହାରାଜା ତାଙ୍କୁ ସେଥିପାଇଁ ଅନେକ ସମୟରେ ସବେତନ ଅବସର ପ୍ରଦାନ କରିଥିଲେ । ଅଭିଧାନଟିକୁ ତ୍ରୁଟିଶୂନ୍ୟ କରିବା ପାଇଁ ସେ ଅତ୍ୟନ୍ତ ପରିଶ୍ରମ କରିଥିଲେ । ତତ୍କାଳୀନ ସର୍ବଶ୍ରେଷ୍ଠ ପଣ୍ଡିତ ହୋଇ ମଧ୍ୟ ତାଙ୍କର ଗର୍ବ ବା ଅଭିମାନ ନଥିଲା । ଶବ୍ଦ ସଂଗ୍ରହ ପାଇଁ ସେ ଉପଯୁକ୍ତ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ ରଖି ସେମାନଙ୍କ ନିତ୍ୟ ବ୍ୟବହୃତ ଶବ୍ଦମାନ ଅଭିଧାନରେ ସ୍ଥାନ ଦେଇଛନ୍ତି ।

ଦୁଃଖର କଥା ଅଭିଧାନର ପାଣ୍ଡୁଲିପି ପ୍ରସ୍ତୁତ ହେବାର ଦଶବର୍ଷ ପର୍ଯ୍ୟନ୍ତ "ଉତ୍କଳ ସାହିତ୍ୟ ସମାଜ"ର ପ୍ରଗାଢ଼ ଉଦ୍ୟମ ସତ୍ତ୍ୱେ ଅର୍ଥାଭାବରୁ ତାହା ଅପ୍ରକାଶିତ ରହିଗଲା । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପରି ନନ୍ଦ ମହାଶୟ ମଧ୍ୟ ଅର୍ଥ ସଂଗ୍ରହ ପାଇଁ ଧନୀକମାନଙ୍କ ଦ୍ୱାରସ୍ଥ ହୋଇଥିଲେ । "ଉତ୍କଳ ସାହିତ୍ୟ ସମାଜ" ପକ୍ଷରୁ ଓଡ଼ିଶାର ରାଜା ମହାରାଜାମାନଙ୍କଠାରୁ ଅର୍ଥ ପ୍ରାପ୍ତି ପାଇଁ ନିବେଦନ ପତ୍ରମାନ ଦିଆଯାଇଥିଲା । ମାନ୍ଦ୍ରାଜ ଓ ବିହାର ଓଡ଼ିଶାର ତତ୍କାଳୀନ ପ୍ରାଦେଶିକ ସରକାର ତଥା ପାରଳା, ଧରାକୋଟ, ଚିକିଟି, ଖଲିକୋଟ, ବାମଣ୍ଡାର ରାଜାମାନେ ଅର୍ଥ ସାହାଯ୍ୟ କରି ନଥିଲେ ବୋଧହୁଏ ଏହି ଅଭିଧାନଟି ଅପ୍ରକାଶିତ ରହିଯାଇଥାନ୍ତା । ଏହାର ଦ୍ୱିତୀୟ ଓ ତୃତୀୟ ସଂସ୍କରଣ ଯଥାକ୍ରମେ ୧୯୬୬ ଓ ୧୯୭୭ ମସିହାରେ ପ୍ରକାଶିତ ହୋଇଅଛି । ମାତ୍ର ଛଡ଼ ବର୍ଷ ବୟସରେ ତା୧୪/୧/୧୯୨୪ରେ ତାଙ୍କର ଦେହାନ୍ତ ହୋଇଥିଲା । ସେ ଓଡ଼ିଶାର ସୁଶାସକ ତଥା ଐତିହାସିକ ଜନ୍ ବିମସ୍‌ଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସେ ଓଡ଼ିଆ, ସଂସ୍କୃତ, ତେଲୁଗୁ ଓ ଇଂରାଜୀ ଭାଷାରେ ନୈପୁଣ୍ୟ ଲାଭ କରିଥିଲେ ।

---

ଗ୍ରନ୍ଥପାଳ,
ରାଜେନ୍ଦ୍ର ମହାବିଦ୍ୟାଳୟ,
ବଲାଙ୍ଗିର-୭୬୭ ୦୦୨ ।



# ଓଡ଼ିଶାର ଧର୍ମଶାସ୍ତ୍ର

*ଡକ୍ଟର୍ ଭଗବାନ ପଣ୍ଡା*

ପ୍ରାଚୀନ କାଳରେ ଧର୍ମଶାସ୍ତ୍ର ପ୍ରତି ସମସ୍ତଙ୍କ ହୃଦୟରେ ସ୍ୱାଭାବିକ ମର୍ଯ୍ୟାଦାବୋଧ ଥିଲା । ଲୋକେ ଶାସ୍ତ୍ର ଓ ଶାସ୍ତ୍ରକାରମାନଙ୍କୁ ସମ୍ମାନ ଦେଉଥିଲେ ଓ ଆଦର କରୁଥିଲେ । କିନ୍ତୁ ଆଜିକାଲି ସେ ଅବସ୍ଥା ନାହିଁ କହିଲେ ଚଳେ । ସାଧାରଣ ଅଶିକ୍ଷିତ ବା ଅର୍ଦ୍ଧ ଶିକ୍ଷିତଙ୍କ କଥା ଛାଡ଼ନ୍ତୁ, ସମାଜର ଉଚ୍ଚ ଶିକ୍ଷିତମାନେ ମଧ୍ୟ ଧର୍ମଶାସ୍ତ୍ର ନାମ ଶୁଣିବା ମାତ୍ରେ ନାକ ଟେକୁଥିବାର ଦେଖାଯାଏ । ଧର୍ମଶାସ୍ତ୍ର ନାମ ନକହି ଯଦି କେହି ଅମୁକ ସମ୍ବିଧାନ, ଅମୁକ ଆଇନ, ଅମୁକ ଅଧିନିୟମ, ପ୍ରବିଧି ବା ଅମୁକ ରାୟ ବୋଲି କହିବେ ତେବେ ସେମାନେ ବେଶ୍ ଆଗ୍ରହାନ୍ୱିତ ହେବାର ଲକ୍ଷ୍ୟ କରିପାରିବେ । ସମାଜ ଓ ସାମାଜିକ ଜୀବନ ଧାରା ସହିତ ସମ୍ପୃକ୍ତ ଏହି ଦୃଷ୍ଟାନ୍ତଗୁଡ଼ିକର ମୂଳ ଉତ୍ସ ଓ ମୌଳିକ ରୂପ ଯେ ଧର୍ମଶାସ୍ତ୍ର, ତାହା ପ୍ରାୟ ଅନେକ ଧାରଣା କରିପାରନ୍ତି ନାହିଁ । ମାନବର ସର୍ବାଙ୍ଗୀନ କଲ୍ୟାଣ ସାଧନ ଉଦ୍ଦେଶ୍ୟରେ ପ୍ରଣୀତ ବିଧି ଓ ସିଦ୍ଧାନ୍ତ ସମ୍ବନ୍ଧୀୟ ସମସ୍ତ ଶାସ୍ତ୍ର ଧର୍ମଶାସ୍ତ୍ରର ପରିସରଭୁକ୍ତ ବୋଲି ବୁଝାଯାଏ । ତେଣୁ ଆଧୁନିକ ସମାଜରେ ପ୍ରଚଳିତ ଓ ଅଦ୍ଭୁତ ନୀତି ଓ ବିଧାନ ସମ୍ବନ୍ଧୀୟ ବହୁ ବିଷୟ ଧର୍ମଶାସ୍ତ୍ର ଆଧାରରେ ବିକାଶ ଲାଭ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଧର୍ମଶାସ୍ତ୍ର ଅଧ୍ୟୟନ ବିନା ଏକ ସୁନ୍ଦର, ରୁଚିପୂର୍ଣ୍ଣ ସମାଜର କଳ୍ପନା ଆଦୌ ସମ୍ଭବ ନୁହେଁ । ଧର୍ମଶାସ୍ତ୍ରକୁ ପଚ୍ଛିଆ, ସଂସ୍କୃତିଆ କହି ଅବହେଳା କରିବା ନିର୍ବୋଧତାର ପରିଚାୟକ ।

## ପୂର୍ବାଭାସ :

ପ୍ରାଚୀନ ଓ ମଧ୍ୟକାଳୀନ ଭାରତରେ ଧର୍ମଶାସ୍ତ୍ରର ମହତ୍ତ୍ୱ ଓ ତାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସମାଜରେ ସ୍ୱୀକାର କରାଯାଉଥିଲା, ଶାସ୍ତ୍ରକାର ମୁନି ଋଷିମାନଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା ଏବଂ ଶାସ୍ତ୍ରୀୟ ବିଧାନ ଅନୁସାରେ ଜନଜୀବନ ନିୟନ୍ତ୍ରିତ ଧାରାରେ ପ୍ରବାହିତ ହେଉଥିଲା । କିନ୍ତୁ ମଧ୍ୟୋତ୍ତର ଯୁଗରେ ଭାରତୀୟ ଜୀବନ ଧାରାରେ ଅଧିକରୁ ଅଧିକ ବ୍ୟାଘାତ, ବ୍ୟତିକ୍ରମ ଓ ବୈଦେଶିକ ପ୍ରଭାବ ପରିଲକ୍ଷିତ ହେଲା । କାଳକ୍ରମେ ବିଭିନ୍ନ କାରଣରୁ ସମାଜ ଜୀବନ ଓ ସାମାଜିକ ଚିନ୍ତାଧାରାରେ ଦ୍ରୁତ ପରିବର୍ତ୍ତନ ଘଟିବାରୁ ଧର୍ମଶାସ୍ତ୍ରର ବହୁ ବିଧି ନିଷେଧ ଅକାମୀ ହୋଇପଡ଼ିଲା । ସମୟୋପଯୋଗୀ ଚିନ୍ତାଧାରା ଅନୁସାରେ ଶାସ୍ତ୍ରୀୟ ନିୟମାବଳୀର ବ୍ୟାପକ ସଂଶୋଧନ ଓ ପରିବର୍ତ୍ତନ ନହେବାରୁ ଲୋକ ମନରେ କ୍ରମଶଃ ଅନାସ୍ଥା ଭାବ ସୃଷ୍ଟି ହେଲା, ଯାହାର ପରିବର୍ତ୍ତନ ପାଇଁ ବିଶେଷ କିଛି ଉଦ୍ୟମ କରାଗଲା ନାହିଁ । ବିଗତ ହଜାରେ ବର୍ଷ ମଧ୍ୟରେ ହଜାର ହଜାର ସ୍ମୃତିଗ୍ରନ୍ଥ ରଚିତ ହୋଇଥିଲେ ମଧ୍ୟ ଏବଂ ସେଥିରେ ଧର୍ମଶାସ୍ତ୍ରର ମୌଳିକ ସିଦ୍ଧାନ୍ତ ସହିତ ପରିବର୍ତ୍ତିତ ଚିନ୍ତାଧାରାକୁ ସ୍ୱୀକୃତି ଦିଆଯାଉଥିଲେ ମଧ୍ୟ ତାହା ସମୟୋପଯୋଗୀ ହେବାରେ ସଫଳତା ଅର୍ଜନ କରିପାରିଲା ନାହିଁ । ତଥାପି ଧର୍ମଶାସ୍ତ୍ରର ମର୍ଯ୍ୟାଦା ଯେ ହ୍ରାସ ପାଇଲା ତାହା ନୁହେଁ, କେବଳ ତାର ବ୍ୟାପକତା ସଙ୍କୁଚିତ ହୋଇଗଲା । ବିଭିନ୍ନ ପ୍ରକାର ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ ଭାରତର ଧାର୍ମିକ, ସାମାଜିକ ଓ ସାଂସ୍କୃତିକ ଜୀବନଧାରା ଅଦ୍ୟାବଧି ଧର୍ମଶାସ୍ତ୍ରର ମୌଳିକ ସିଦ୍ଧାନ୍ତ ଆଧାରରେ ନିୟମିତ ହୋଇ ଆସୁଛି । ଆଧୁନିକ ଭାରତୀୟ ସମ୍ବିଧାନ ଓ ସାମ୍ବିଧାନିକ ବିଧି ବ୍ୟବସ୍ଥା ତାହାରି ଭିତ୍ତି ଉପରେ ପ୍ରତିଷ୍ଠା ଲାଭ କରିଛି ।

## ଧର୍ମଶାସ୍ତ୍ରର ସ୍ୱରୂପ, ବିକାଶ ଓ ଲକ୍ଷ୍ୟ :

ବେଦ, ସ୍ମୃତି ଓ ସ୍ମୃତିଶୀଳଙ୍କ ବ୍ୟବହାର, ଧାର୍ମିକ ଲୋକଙ୍କ ଆଚରଣ ଓ ଆତ୍ମ ତୁଷ୍ଟିକୁ ଧର୍ମର ମୂଳ ଉତ୍ସ ରୂପେ ଗ୍ରହଣ କରାଯାଉଛି । ମହର୍ଷି ମନୁ କହିଛନ୍ତି :

> ବେଦୋଽଖିଳୋ ଧର୍ମମୂଳଂ ସ୍ମୃତିଶୀଳେ ଚ ତଦ୍‌ବିଦାମ୍ ।
> ଆଚାରଶ୍ଚୈବ ସାଧୂନାମାତ୍ମନସ୍ତୁଷ୍ଟିରେବ ଚ ॥ ମନୁ ୨–୬ ॥

ବେଦକୁ ଶ୍ରୁତି ଓ ଧର୍ମଶାସ୍ତ୍ରକୁ ସ୍ମୃତି ବୁଝାଯାଏ । ବେଦ ହେଉଛି ଭକ୍ତି ଓ ବିଶ୍ୱାସର ଆଧାର । ଶାସ୍ତ୍ରୀୟ ବିଧି ନିଷେଧର ବିରୋଧ କ୍ଷେତ୍ରରେ ଧର୍ମ ପରିଷଦର ସିଦ୍ଧାନ୍ତ ନିଆଯାଏ । ଧର୍ମଶାସ୍ତ୍ରରେ ନୈତିକ ଶିକ୍ଷା–ଆଚାର ଓ ପ୍ରାୟଶ୍ଚିତ୍ତ, ବୈଧାନିକ ନିୟନ୍ତ୍ରଣ–ପ୍ରଶାସନ ଓ ବ୍ୟବହାର ବିଷୟରେ ଗଭୀର ଆଲୋଚନା କରାଯାଇଛି । ଷଟ୍ ବେଦାଙ୍ଗ ଅନ୍ତର୍ଗତ କଳ୍ପସୂତ୍ର ହିଁ ଧର୍ମଶାସ୍ତ୍ରର ମୂଳ ଉତ୍ସ । କଳ୍ପସୂତ୍ର ଆଧାରରେ ଯଜ୍ଞାଦି ବିଧି ବିଧାନକୁ ନେଇ ଶ୍ରୌତସୂତ୍ର, ଗୃହଜୀବ ଆଚାର, ବ୍ୟବହାର, କର୍ତ୍ତବ୍ୟାଦି ନିର୍ଦ୍ଧାରଣ ନିମିତ୍ତ ଗୃହ୍ୟସୂତ୍ର ଏବଂ ସାଧାରଣ ଜୀବନର ନୀତି ନିୟମକୁ ନେଇ ଧର୍ମସୂତ୍ର ବିକାଶ ଲାଭ କରିଛି । ପରବର୍ତ୍ତୀ କାଳରେ ଶ୍ରୌତ–ଗୃହ୍ୟ–ଧର୍ମସୂତ୍ର, ପୁରାଣେତିହାସ ଓ ଲୌକିକ ଆଚାର ବ୍ୟବହାରକୁ ନେଇ ସ୍ମୃତିଶାସ୍ତ୍ରର ଉଦ୍ଭବ ଓ ବିକାଶ ସାଧିତ ହୋଇଛି । ସ୍ମୃତି ଓ ଧର୍ମଶାସ୍ତ୍ର

ଏକାର୍ଥବୋଧକ ଶବ୍ଦ ରୂପେ ଗ୍ରହଣୀୟ । ସମ୍ଭବତଃ ଧର୍ମଶାସ୍ତ୍ରର ଅନୁଶୀଳନାତ୍ମକ ଜ୍ଞାନର ପ୍ରସାର ନିମିତ୍ତ ରାମାୟଣ, ମହାଭାରତ, ପୁରାଣ, କାବ୍ୟ, ନାଟକାଦି ରୂପକ ବିଶାଳ ଶବ୍ଦ ସାଗର ସୃଷ୍ଟି ହୋଇଛି । ମାନବ ଜୀବନର ଏପରି କୌଣସି ଦିଗ ନାହିଁ ଯାହାର ନିର୍ଦ୍ଦେଶ ଧର୍ମଶାସ୍ତ୍ରରେ ନାହିଁ । ଧର୍ମର ସ୍ୱରୂପ, ସ୍ଥାନ, ପ୍ରକାର, ବିଭାଗ ବିଷୟ ଏଥିରେ ପର୍ଯ୍ୟାଲୋଚିତ ହୋଇଛି । ଗର୍ଭାଧାନଠାରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ମାନବ ଜୀବନର କାର୍ଯ୍ୟ, ଅକାର୍ଯ୍ୟ, ବ୍ୟବହାର ଓ ବିଚାର ନିର୍ଦ୍ଧାରଣ ହିଁ ଧର୍ମଶାସ୍ତ୍ର ଏବଂ ଶାସ୍ତ୍ରତତ୍ତ୍ୱର ବ୍ୟାଖ୍ୟାନାତ୍ମକ କାବ୍ୟ-ନାଟକ-ପୁରାଣ-ଇତିହାସାଦି ରଚନାର ମୂଳ ଲକ୍ଷ୍ୟ ।

ଦେଶ, ଜାତି, ସମାଜ ଓ ବ୍ୟକ୍ତିବିଶେଷର ଆଚାର, ବିଚାର ଓ ସଂସ୍କାର ଯାହାଦ୍ୱାରା ନିୟନ୍ତ୍ରିତ ହୁଏ ତାହାକୁ ଧର୍ମଶାସ୍ତ୍ର ବା ସମାଜ ବିଜ୍ଞାନ କହନ୍ତି । ଲୋକେ ଯାହାକୁ ଧାରଣ କରନ୍ତି ବା ଯେ ଲୋକଙ୍କୁ ଧାରଣ କରେ ତାହା ହିଁ ଧର୍ମ । ପୁଣ୍ୟ, ସୁକୃତ, ସ୍ୱଭାବ, ଆଚାର, ନ୍ୟାୟ, ଶ୍ରେୟ, ଯଜ୍ଞ, ଅହିଂସା, ଆନନ୍ଦ ପ୍ରଭୃତି ଅର୍ଥରେ ଧର୍ମ ଶବ୍ଦର ବ୍ୟବହାର କରାଯାଇଥାଏ । ଖାଦ୍ୟପେୟ, ବେଶଭୂଷା, ସାମାଜିକ ରୀତିନୀତି ଓ ଆଧ୍ୟାତ୍ମିକ ଜ୍ଞାନ ଅର୍ଜନରେ ଧର୍ମୀୟ ସିଦ୍ଧାନ୍ତ ଆମକୁ ସାହାଯ୍ୟ ଓ ମାର୍ଗ ନିର୍ଦ୍ଦେଶ କରେ । ମାନବୀୟ ଗୌରବ ପ୍ରତିପାଦନ ଓ ଭଗବତ୍ ସତ୍ୟାନୁଭୂତି ବା ଜ୍ଞାନ ହେଉଛି ଧର୍ମଶାସ୍ତ୍ରର ମୂଳ ସିଦ୍ଧାନ୍ତ । ଅନ୍ୟ ପକ୍ଷରେ ଜୀବନଧାରା, ମାନସିକ ଉନ୍ନତି ଓ ଆତ୍ମାନୁଭୂତି ହେଉଛି ଧର୍ମଶାସ୍ତ୍ରର ମୁଖ୍ୟ ପ୍ରତିପାଦ୍ୟ ବିଷୟ ।

ସନାତନ ଧର୍ମ ହିଁ ଭାରତର ମୂଳ ଧର୍ମ । ଏଥିରେ ସମଗ୍ର ମାନବ ଜାତିର କଲ୍ୟାଣ ନିମିତ୍ତ ମାର୍ଗ ନିର୍ଦ୍ଦେଶ କରାଯାଇଛି । ଏହାକୁ ଧର୍ମ ନକହି ମାନବଧର୍ମ ବା ବିଶ୍ୱଧର୍ମ କହିଲେ ଅତ୍ୟୁକ୍ତି ହେବ ନାହିଁ । ସନାତନ ଧର୍ମ ମହାଦ୍ରୁମର ଶାଖା ରୂପେ ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ, ସୌର, ଗାଣପତ୍ୟାଦି ଧର୍ମୀୟ ଉପାସନାଗୁଡ଼ିକ ବିକାଶ ଲାଭ କରିଛି । ତେଣୁ ସନାତନ ଧର୍ମର ବହୁ ପ୍ରକାର ବୈଚିତ୍ର୍ୟର ଯେପରି ଐକିକ ସ୍ଥିତି ଓ ଅନୁଭୂତି ସମ୍ଭବ ହୁଏ, ତାହାର ଉଦାହରଣ ନାହିଁ । ଏଥିରେ ବହୁ ଦେବବାଦର ଧାରଣା ଥିଲେ ବି ଈଶ୍ୱର ଏକ ବୋଲି ଗୃହୀତ । ପୁରୁଷାର୍ଥ ଲାଭ ଏହାର ପ୍ରଧାନ ଲକ୍ଷ୍ୟ । ଧର୍ମ=ସଦାଚାର, ଅର୍ଥ=ରାଜନୀତି, କାମ=ଆନନ୍ଦ ଓ ସୌନ୍ଦର୍ଯ୍ୟାନୁଭୂତି ଏବଂ ମୋକ୍ଷ=କାମନାମୁକ୍ତି ଓ ଆତ୍ମାନୁଭବ ହେଉଛି ସେହି ପୁରୁଷାର୍ଥର ଚାରୋଟି ପକ୍ଷ । ଏଗୁଡ଼ିକ ପରସ୍ପର ସମ୍ପୃକ୍ତ । ସେଥିପାଇଁ ମହାଭାରତରେ କୁହାଯାଇଛି :

> ଧର୍ମେ ଚାର୍ଥେ ଚ କାମେ ଚ ମୋକ୍ଷେ ଚ ଭରତର୍ଷଭ ।
> ଯଦିହାସ୍ତି ତଦନ୍ୟତ୍ର ଯନ୍ନେହାସ୍ତି ନ ତତ୍ କ୍ୱଚିତ୍ ॥
>
> ମହାଭାରତ, ୧-୬୨-୫୩

'ଧର୍ମାର୍ଥକାମାଃ ସମମେବ ସେବ୍ୟାଃ' ଅର୍ଥାତ୍ ଧର୍ମ, ଅର୍ଥ ଓ କାମ ରୂପକ ପୁରୁଷାର୍ଥତ୍ରୟ ସମ ଭାବରେ ଗ୍ରହଣୀୟ । ଯୁଗ ଯୁଗ ଧରି ପ୍ରଚଳିତ ଏହି ମହାନ୍ ଧର୍ମ ପରମ୍ପରାରେ ଉଦ୍‌ବୁଦ୍ଧ ହୋଇ ଭାରତର କବି ଓ ପଣ୍ଡିତଗଣ ନିଜ ନିଜର କୃତିରେ ତାହାର ପୁନଃ ପୁନଃ ପ୍ରଚାର ଓ ପ୍ରସାର କରି ଯାଇଛନ୍ତି । ଧର୍ମଶାସ୍ତ୍ର ହିଁ ଭାରତୀୟ ଜୀବନଧାରାର ମୂଳ ଉତ୍ସ । ତେଣୁ ଧର୍ମଶାସ୍ତ୍ରକୁ କେବଳ ଓଡ଼ିଶା ବା ଭାରତ ନୁହେଁ ସମଗ୍ର ମାନବ ସମାଜର ସମ୍ବିଧାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଓଡ଼ିଶାରେ ଧର୍ମଶାସ୍ତ୍ର :

ଭାରତ, ଆକୁମାରୀ ହିମାଚଳ ପରିବ୍ୟାପ୍ତ, ଏକ ବିଶାଳ ଦେଶ । ଭାଷା, ବେଶ, ଆଚାର-ପ୍ରଭୃତି ଆଧାରରେ ଏହା ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣାଞ୍ଚଳ ରୂପେ ବିଭକ୍ତ । ଏହା ହିଁ ସ୍ଥୂଳ ବିଭାଗ । କିନ୍ତୁ ଧର୍ମଶାସ୍ତ୍ର, ନାଟ୍ୟଶାସ୍ତ୍ର, ପୁରାଣାଦିରେ ଭାରତକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଛି । ସେ ସବୁ ଅଞ୍ଚଳରେ ବିଭିନ୍ନ ରାଜବଂଶର ରାଜାମାନେ ରାଜତ୍ୱ କରୁଥିଲେ । ପାରସ୍ପରିକ ଯୁଦ୍ଧ-ବିଗ୍ରହ ଫଳରେ ବାରମ୍ବାର ରାଜ୍ୟର ସୀମାରେଖାର ପରିବର୍ତ୍ତନ ଘଟୁଥିଲା । କିନ୍ତୁ ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ ପରେ ବିଭିନ୍ନ ଅଞ୍ଚଳର ଭୌଗୋଳିକ, ରାଜନୈତିକ ଓ ଭାଷାଗତିକ ସୀମାରେଖା ଏକ ନିର୍ଦ୍ଦିଷ୍ଟ ରୂପରେଖ ଗ୍ରହଣ କଲା । କାଳକ୍ରମେ ଭାରତୀୟ ଲୋକଭାଷା ରୂପେ ପରିଚିତ ପ୍ରାକୃତ ଭାଷା ଅପଭ୍ରଂଶ ସ୍ତର ଅତିକ୍ରମ କରି ଆଞ୍ଚଳିକ ବା ଆଧୁନିକ ଭାଷା ରୂପେ ବିକଶିତ ହେବାରୁ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିବାସୀମାନେ ସେମାନଙ୍କ ଭାଷା, ବେଶଭୂଷା, ଆଚାର ବ୍ୟବହାର ଅନୁସାରେ ପରିଚିତ ହେଲେ । ଉଦାହରଣ ସ୍ୱରୂପ ମିଥିଳାବାସୀ ମୈଥିଳ ଓ ସେ ଅଞ୍ଚଳର ଭାଷା ମୈଥିଳୀ ନାମରେ ଅଭିହିତ ହେଲା । ସେହିପରି ମହାରାଷ୍ଟ୍ରୀୟ, ଗୌଡ଼ୀ, ଗୌଡ଼ୀୟ, ବଙ୍ଗୀୟ ଆଦି ନାମ ହେଲା । ଓଡ଼ିଶାବାସୀ ଓ ସେମାନଙ୍କ ଭାଷା ଓଡ୍ର-ଓଡ୍ରୀ, ଉଡ୍ର-ଉଡ୍ରୀ, ଔତ୍କଳ-ଔତ୍କଳୀ ବା ଉତ୍କଳୀୟ ନାମରେ ପରିଚିତ ହେଲେ । ତେଣୁ ଓଡ଼ିଶାରେ ରଚିତ ଧର୍ମଶାସ୍ତ୍ରକୁ ଉତ୍କଳୀୟ ଧର୍ମଶାସ୍ତ୍ର ଓ ଶାସ୍ତ୍ରକାରମାନଙ୍କୁ ଉତ୍କଳୀୟ ଧର୍ମଶାସ୍ତ୍ରକାର କୁହାଗଲା । ଓଡ଼ିଶାର ଧର୍ମଶାସ୍ତ୍ର କହିବାର ଏହାହିଁ ତାତ୍ପର୍ଯ୍ୟ ।

ଭାଷା ଭିତ୍ତିକ ସୀମାରେଖା ନିର୍ଦ୍ଧାରଣ ଓ ଆଞ୍ଚଳିକ ଭାଷାର ଉତ୍ତରୋତ୍ତର ବିକାଶ ଘଟିବା ଫଳରେ ଶାସ୍ତ୍ରକାରମାନେ ପରସ୍ପରଠାରୁ ଯେତିକି ଦୂରେଇ ଗଲେ ଶାସ୍ତ୍ରଗୁଡ଼ିକରେ ଆଞ୍ଚଳିକତା ସେତିକି ପ୍ରାଧାନ୍ୟ ଲାଭ କଲା । ତେଣୁ ଧର୍ମଶାସ୍ତ୍ରକାରମାନେ ଶାସ୍ତ୍ରର ମୌଳିକ ପଦ୍ଧତିରେ କୌଣସି ପରିବର୍ତ୍ତନ ନକରି ମଧ୍ୟ ନିଜ ନିଜ ଅଞ୍ଚଳର ରୀତି ଓ ପଦ୍ଧତିକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେବାକୁ ଲାଗିଲେ । କିନ୍ତୁ ଅଞ୍ଚଳ ବିଶେଷରେ କେତେକ ନୀତି ନିୟମ ପାଳନରେ ଭିନ୍ନତା ପରିଲକ୍ଷିତ ହେଉଥିଲେ ମଧ୍ୟ ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ସଂସ୍କାର, ଯଜ୍ଞ, ସଦାଚାର, ରାଜନୀତି, ଅର୍ଥନୀତି, ସମାଜନୀତି ପ୍ରଭୃତି ବିଷୟରେ ଧର୍ମଶାସ୍ତ୍ରର ମୌଳିକ ସିଦ୍ଧାନ୍ତକୁ ସମସ୍ତେ ସମ୍ମାନ ଦେଉଥିବାର ଦେଖାଯାଏ । ଭାରତୀୟ ଏକତାକୁ ଦୃଢ଼ୀଭୂତ କରିବା ଏହି ସିଦ୍ଧାନ୍ତର ମୂଳ ଲକ୍ଷ୍ୟ । ତେଣୁ ଶାସ୍ତ୍ରକାରମାନେ ଯେଉଁ ଅଞ୍ଚଳର ଅଧିବାସୀ ହେଲେ ମଧ୍ୟ ଭାରତର ଭୌଗୋଳିକ ଓ ଆଧ୍ୟାତ୍ମିକ ଏକତା ପ୍ରତି ସଚେତନ ଥିଲେ । ଆଧୁନିକ ଭାରତରେ ଦେଖା ଦେଉଥିବା ବିଚ୍ଛିନ୍ନତାବାଦ ସମସ୍ୟା ଧର୍ମଶାସ୍ତ୍ରର ମୌଳିକ ସିଦ୍ଧାନ୍ତ ଦ୍ୱାରା ଯେ ସହଜରେ ସମାଧାନ କରାଯାଇ ପାରିବ ସେଥିରେ ସନ୍ଦେହ ନାହିଁ ।

ଭାରତତତ୍ତ୍ୱବିତ୍ ପଣ୍ଡିତଗଣ ବିଭିନ୍ନ ଦୃଷ୍ଟିରୁ ବିଚାର କରି ଧର୍ମଶାସ୍ତ୍ରର ବିକାଶ କାଳକୁ ପାଞ୍ଚୋଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି । ତଦନୁଯାୟୀ ଖ୍ରୀଷ୍ଟପୂର୍ବ ୬୦୦-୧୦୦ ମଧ୍ୟରେ ଧର୍ମଶାସ୍ତ୍ରର ଆରମ୍ଭକାଳ । ବିଭିନ୍ନ ସୂତ୍ରଗ୍ରନ୍ଥ ସେହି ସମୟରେ ରଚିତ ହୋଇଥିଲା । ଧର୍ମଶାସ୍ତ୍ରର ସ୍ୱରୂପ, ସଙ୍କଳନ ଓ ବିଭାଗୀକରଣ ୧୦୦ ରୁ ୭୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କରାଯାଇଥିଲା । ଏହି ସମୟ ମଧ୍ୟରେ ବିଭିନ୍ନ ସ୍ମୃତିଗ୍ରନ୍ଥ ରଚିତ ହୋଇଥିଲା । ୭୦୦-୧୨୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଧର୍ମଶାସ୍ତ୍ରର ବିକାଶ କାଳ ନିର୍ଦ୍ଧାରିତ ହୋଇଛି । ଆଲୋଚ୍ୟ କାଳରେ ସ୍ମୃତି ନିବନ୍ଧ ଗ୍ରନ୍ଥମାନ ରଚନା କରାଯାଇଛି । ଶେଷ ପର୍ଯ୍ୟାୟରେ ଅର୍ଥାତ୍ ୧୨୦୦-୧୮୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଧର୍ମଶାସ୍ତ୍ର ରଚନା କ୍ଷେତ୍ରରେ ଏକ ପ୍ରକାର ସ୍ଥିରତା ରକ୍ଷା କରାଯାଇଥିଲା । ଏହି ସମୟ ମଧ୍ୟରେ ରଚିତ ଗ୍ରନ୍ଥଗୁଡ଼ିକରେ ସମୟୋପଯୋଗୀ ପରିବର୍ତ୍ତନ, ସଂଶୋଧନ ବା ନୂତନ ବିଧି ପ୍ରଣୟନ ବିଷୟରେ ବିଶେଷ ଚିନ୍ତା କରା ନଯାଇ କେବଳ ଗତାନୁଗତିକତାକୁ ପ୍ରଶ୍ରୟ ଦିଆଯାଇଥିଲା । ଓଡ଼ିଶାର ଉପଲବ୍ଧ ଶାସ୍ତ୍ରଗୁଡ଼ିକ ଉଲ୍ଲିଖିତ କାଳ ବିଭାଜନ ଅନୁଯାୟୀ ଶେଷ ଦୁଇ ପର୍ଯ୍ୟାୟ ଅନ୍ତର୍ଭୁକ୍ତ ଥିବାର ଦେଖାଯାଏ ।

## ଗ୍ରନ୍ଥ ଓ ଗ୍ରନ୍ଥକାର :

ପ୍ରାଚୀନ ଓଡ଼ିଶାରେ ବହୁ ପଣ୍ଡିତ ଥିଲେ ଓ ବହୁ ଗ୍ରନ୍ଥ ରଚିତ ହୋଇଥିଲା । ଓଡ଼ିଶାର ପଣ୍ଡିତଗଣ ବେଦ, ବେଦାଙ୍ଗ, ଇତିହାସ,

ପୁରାଣ, ନ୍ୟାୟ, ମୀମାଂସା, ଧର୍ମଶାସ୍ତ୍ର, କାବ୍ୟ, ନାଟକାଦି ପ୍ରଣୟନ କ୍ଷେତ୍ରରେ ପାରଦର୍ଶୀ ଥିବାର ଭୂରି ଭୂରି ପ୍ରମାଣ ପ୍ରାଚୀନ ଅଭିଲେଖଗୁଡ଼ିକରୁ ମିଳୁଥିଲେ ମଧ୍ୟ ଶତାନନ୍ଦ ଆଚାର୍ଯ୍ୟଙ୍କ (୧୦୫୦ ଖ୍ରୀ:ଅ:) ପୂର୍ବରୁ କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଲୋକ ଲୋଚନକୁ ଆସି ନାହିଁ। ଧର୍ମଶାସ୍ତ୍ରକାର ଶତାନନ୍ଦ ଆଚାର୍ଯ୍ୟଙ୍କଠାରୁ ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ (୧୮୫୭ ଖ୍ରୀ: ଅ:) ପର୍ଯ୍ୟନ୍ତ ବିଗତ ଆଠଶହ ବର୍ଷ ମଧ୍ୟରେ ୬୫ ଜଣ ଗ୍ରନ୍ଥକାର ଓ ସେମାନଙ୍କ ପ୍ରଣୀତ ୭୫ ଖଣ୍ଡ ସ୍ମୃତିଗ୍ରନ୍ଥ ଏଯାବତ୍ ହସ୍ତଗତ ହୋଇଛି। ଓଡ଼ିଶାର ଏହି ସ୍ମୃତିଗ୍ରନ୍ଥଗୁଡ଼ିକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ। କାଳକ୍ରମ ଅନୁଯାୟୀ ପ୍ରଥମ ପର୍ଯ୍ୟାୟରେ ଗଙ୍ଗ ସମ୍ରାଟ୍ ଚୋଡ଼ଗଙ୍ଗ ଦେବଙ୍କଠାରୁ ଭାନୁଦେବଙ୍କ ରାଜତ୍ୱ କାଳ (୧୦୭୭–୧୪୩୫ ଖ୍ରୀ: ଅ:) ମଧ୍ୟରେ ୧୧ ଜଣ ଧର୍ମଶାସ୍ତ୍ରକାର ୧୮ ଖଣ୍ଡ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଜଣାଯାଏ। ଦ୍ୱିତୀୟ ପର୍ଯ୍ୟାୟରେ ଗଜପତି କପିଳେନ୍ଦ୍ର ଦେବଙ୍କଠାରୁ ମୁକୁନ୍ଦ ଦେବଙ୍କ (୧୪୩୫–୧୫୬୮ ଖ୍ରୀ:ଅ:) ରାଜତ୍ୱ କାଳ ମଧ୍ୟରେ ୧୪ ଜଣ ଶାସ୍ତ୍ରକାର ୧୮ ଖଣ୍ଡ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଦେଖାଯାଏ। ତୃତୀୟ ପର୍ଯ୍ୟାୟରେ ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବଙ୍କଠାରୁ ବୀର କେଶରୀ ଦେବଙ୍କ ରାଜତ୍ୱ କାଳ (୧୫୬୮–୧୭୯୩ ଖ୍ରୀ: ଅ:) ମଧ୍ୟରେ ଏବଂ ୧୮୫୭ ସୁଦ୍ଧା ୩୦ ଜଣ ସ୍ମୃତିକାର ୩୯ ଖଣ୍ଡ ଗ୍ରନ୍ଥ ସଙ୍କଳନ କରିଥିବାର ଜଣାଯାଏ। ତଦ୍‌ବ୍ୟତୀତ ବହୁ ଗ୍ରନ୍ଥ ଓ ଗ୍ରନ୍ଥକାର ଯେ କାଳର କରାଳ ଗର୍ଭରେ ଲୀନ ହୋଇଯାଇଛନ୍ତି, ସେଥିରେ ସନ୍ଦେହ ନାହିଁ।

ଓଡ଼ିଶାର ବହୁ ସ୍ମୃତିକାର କେବଳ ଓଡ଼ିଶା ବା ପଡ଼ୋଶୀ ରାଜ୍ୟ ନୁହେଁ ସାରା ଭାରତରେ ଖ୍ୟାତିଲାଭ କରିଥିଲେ। ସର୍ବ ଭାରତୀୟ ସ୍ତରରେ ବିଶେଷ ପ୍ରସିଦ୍ଧି ଲାଭ କରିଥିବା ଓଡ଼ିଶାର ଗ୍ରନ୍ଥକାର ଓ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଶଙ୍ଖଧରଙ୍କ (୧୦୦ ଖ୍ରୀ: ଅ:) ସ୍ମୃତିସମୁଚ୍ଚୟ, ବାଜପେୟୀ ଶମ୍ଭୁକର ମିଶ୍ରଙ୍କ (୧୦୬୮ ଖ୍ରୀ: ଅ:) ଶମ୍ଭୁକର ପଦ୍ଧତି, ଶ୍ରୀଧର ସ୍ୱାମୀଙ୍କ (୧୩୦୦ ଖ୍ରୀ: ଅ:) ସ୍ମୃତିସମୁଚ୍ଚୟ, ବିଦ୍ୟାକର ବାଜପେୟୀଙ୍କ (୧୩୨୫ ଖ୍ରୀ: ଅ:) ନିତ୍ୟାଚାର ପଦ୍ଧତି, ବୃହସ୍ପତି ସୂରିଙ୍କ (୧୩୫୦ ଖ୍ରୀ: ଅ:) କୃତ୍ୟ କୌମୁଦୀ, ବାଜପେୟୀ ରାମଚନ୍ଦ୍ର ଦାସଙ୍କ (୧୩୭୫ ଖ୍ରୀ: ଅ:) କୁଣ୍ଡମଣ୍ଡପଲକ୍ଷଣ, ଶୁଦ୍ଧବାର୍ତ୍ତିକ, କାଳିଦାସ ଚମ୍ପତିଙ୍କ (୧୪୫୦ ଖ୍ରୀ: ଅ:) ଶୁଦ୍ଧିଚନ୍ଦ୍ରିକା, ରାଜଗୁରୁ ବଳଭଦ୍ର ମିଶ୍ରଙ୍କ (୧୪୯୯ ଖ୍ରୀ: ଅ:) ବଳଭଦ୍ର ସଂଗ୍ରହ, ଗଜପତି ପୁରୁଷୋତ୍ତମ ଦେବଙ୍କ (୧୪୬୭–୧୪୯୭ ଖ୍ରୀ: ଅ:) ମୁକ୍ତିଚିନ୍ତାମଣି, ଗୋପାଳାର୍ଚ୍ଚନବିଧି, ଗଜପତି ପ୍ରତାପରୁଦ୍ର ଦେବଙ୍କ (୧୪୯୭–୧୫୩୫ ଖ୍ରୀ: ଅ:) ସରସ୍ୱତୀ ବିଳାସ, ପ୍ରତାପମାର୍ତ୍ତଣ୍ଡ, ମନ୍ତ୍ରିବର ଗୋଦାବର ମିଶ୍ରଙ୍କ (୧୫୧୭ ଖ୍ରୀ: ଅ:) ହରିହରଚତୁରଙ୍ଗ, ଜୟଚିନ୍ତାମଣି, ଜଗନ୍ନାଥ ଦାସଙ୍କ (୧୫୧୭ ଖ୍ରୀ: ଅ:) କୃଷ୍ଣଭକ୍ତି କଳ୍ପଲତା ଫଳ, ବାଜପେୟୀ ନରସିଂହ ମିଶ୍ରଙ୍କ (୧୫୬୫ ଖ୍ରୀ:ଅ:) ନିତ୍ୟାଚାର ପ୍ରଦୀପ, ଗଜପତି ରାମଚନ୍ଦ୍ର ଦେବଙ୍କ (୧୫୬୮–୧୬୦୬ ଖ୍ରୀ: ଅ:) ଦୁର୍ଗୋତ୍ସବ ଚନ୍ଦ୍ରିକା, ବିଶ୍ୱନାଥ ମିଶ୍ରଙ୍କ (୧୬୫୦ ଖ୍ରୀ: ଅ:) ସ୍ମୃତିସାର ସଂଗ୍ରହ, ଦିବ୍ୟସିଂହ ମହାପାତ୍ରଙ୍କ (୧୬୫୦ ଖ୍ରୀ: ଅ:) କାଳଦୀପ ଓ ଶ୍ରାଦ୍ଧ ଦୀପ, ରାଜଗୁରୁ ଗଦାଧର ମହାପାତ୍ରଙ୍କ (୧୭୦୦ ଖ୍ରୀ: ଅ:) ସ୍ମୃତି ପ୍ରକାଶ, ରଘୁନାଥ ଦାସଙ୍କ (୧୭୨୫ ଖ୍ରୀ: ଅ:) ଶ୍ରାଦ୍ଧ ନିର୍ଣ୍ଣୟ, ଉଦ୍ବାହ ତରଙ୍ଗିଣୀ, ଗୋପୀନାଥ ପଟ୍ଟନାୟକଙ୍କ (୧୭୨୫ ଖ୍ରୀ: ଅ:) ଶୁଦ୍ଧାହ୍ନିକ ପଦ୍ଧତି, ମହାମହୋପାଧ୍ୟାୟ କୃଷ୍ଣ ମିଶ୍ରଙ୍କ (୧୭୫୦ ଖ୍ରୀ: ଅ:) କାଳ ସର୍ବସ୍ୱ, କବି ଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କ (୧୭୫୦ ଖ୍ରୀ: ଅ:) ଶୁଦ୍ଧି ସର୍ବସ୍ୱ, ଗୋପୀନାଥ ଗୁରୁଙ୍କ (୧୭୬୮ ଖ୍ରୀ: ଅ:) ବ୍ରତ ସର୍ବସ୍ୱ, (୧୭୯୩ ଖ୍ରୀ: ଅ:) ଯାତ୍ରା ଭାରତ, ବାଲୁକି ପାଠୀଙ୍କ ଭଲ୍ୟାପଦ୍ଧର୍ମ ସର୍ବସ୍ୱ, ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ ନାମ ଉଲ୍ଲେଖନୀୟ। ଏଯାବତ୍ ପ୍ରଥମ ସ୍ମୃତିକାର ରୂପେ ଅଭିହିତ ଶତାନନ୍ଦ ଆଚାର୍ଯ୍ୟଙ୍କ 'ଶତାନନ୍ଦ ସଂଗ୍ରହ' ଓ 'ଶତାନନ୍ଦ ରତ୍ନମାଳା' ଗ୍ରନ୍ଥ ଦୁଇଟି ପ୍ରାପ୍ତ ନହେଲେ ମଧ୍ୟ ପରବର୍ତ୍ତୀ ସ୍ମୃତିକାରମାନେ ଗ୍ରନ୍ଥଦ୍ୱୟର ଉଦ୍ଧୃତି ବାରମ୍ବାର କରିଥିବାର ଦେଖାଯାଏ। ତଦ୍‌ବ୍ୟତୀତ ଓଡ଼ିଶାର ସ୍ମୃତିକାରମାନେ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗ ଏକକ ପର୍ଯ୍ୟାଲୋଚନା କରିବାକୁ ଯାଇ ନିଜ ନିଜ ନାମରେ 'ପଦ୍ଧତି' ଆଖ୍ୟା ଦେଇ କେତେକ ଗ୍ରନ୍ଥ ରଚନା କରି ଯାଇଛନ୍ତି। ତନ୍ମଧ୍ୟରେ ଶମ୍ଭୁକର ପଦ୍ଧତି, ବିଦ୍ୟାକର ପଦ୍ଧତି, ବାସୁଦେବ ପଦ୍ଧତି, ଗଦାଧର ପଦ୍ଧତି, ହଳଧର ପଦ୍ଧତି, ଜଳେଶ୍ୱର ପଦ୍ଧତି, ଅଗ୍ନିଷ୍ଟୋମ ପଦ୍ଧତି ପ୍ରଭୃତି ଗ୍ରନ୍ଥଗୁଡ଼ିକ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବାର ଜଣାଯାଏ। ୧୮୫୭ ପରେ ବିହାରୀ କର୍ମକାଣ୍ଡ, ପୁରୋହିତ ସର୍ବସ୍ୱ, ସୁଦର୍ଶନ ଯଜ୍ଞ ପଦ୍ଧତି, ବୃହତ୍ ଠାକୁର ପୂଜା ପଦ୍ଧତି କେତେକ ଉପାଦେୟ ଗ୍ରନ୍ଥ ସଙ୍କଳିତ ହୋଇଥିବାର ଦେଖାଯାଏ।

## ଧର୍ମଶାସ୍ତ୍ର ବିଷୟ ବିଭାଗ :

ରାମାୟଣ, ମହାଭାରତ, ପୁରାଣାଦିରେ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗ ଆଲୋଚିତ ହୋଇଛି। ସେଥିରୁ ଧର୍ମଶାସ୍ତ୍ରର ପ୍ରତିପାଦ୍ୟ ବିଷୟ ବିଶ୍ୱର ସମ୍ବନ୍ଧରେ ବିଭିନ୍ନ ପ୍ରକାର ମତ ପୋଷଣ କରାଯାଇଥିବାର ଜଣାଯାଏ। ତଦନୁଯାୟୀ ମହାଭାରତରେ ୧୮, ରାମାୟଣରେ ୭, ପୁରାଣରେ ୩୦, ସ୍ମୃତିଶାସ୍ତ୍ରରେ ୨୮ ବିଷୟର ଅବତାରଣା କରାଯାଇଛି। ତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ ଆନୁଷଙ୍ଗିକ ବିଷୟ ମଧ୍ୟ ଆଲୋଚନା ପରିସରଭୁକ୍ତ ହୋଇଛି। ସୁସ୍ଥ, ସୁନ୍ଦର ଓ ଶୃଙ୍ଖଳିତ ସମାଜ ଜୀବନ ଗଠନ କରିବା ଏହାର ମୂଳ ଲକ୍ଷ୍ୟ। ଏ କ୍ଷେତ୍ରରେ ଓଡ଼ିଶାର ଧର୍ମଶାସ୍ତ୍ରକାରମାନଙ୍କ ଅବଦାନ ଯେ ଉଲ୍ଲେଖଯୋଗ୍ୟ, ସେଥିରେ ସନ୍ଦେହ ନାହିଁ। ସେମାନେ ଦେଶ ଓ ଜାତିର ଗୌରବ ବୃଦ୍ଧି ପାଇଁ ନିଜ ନିଜ ପରିସରରେ ଯଥେଷ୍ଟ ଉଦ୍ୟମ କରି ଯାଇଛନ୍ତି। ସର୍ବ ଭାରତୀୟ ସ୍ତରରେ ସେମାନେ ନିଜ ଜନ୍ମଭୂମିର ତୀର୍ଥ, ପୀଠ, ନଦନଦୀ, ବନ, ପର୍ବତର ମାହାତ୍ମ୍ୟକୁ ବଜାୟ ରଖି ପାରିଛନ୍ତି। ସେ ସବୁର ପ୍ରକାଶନ, ଅନୁଶୀଳନ, ଗବେଷଣା ଓ ବ୍ୟାଖ୍ୟା ଅଭାବରୁ ଧର୍ମଶାସ୍ତ୍ର ସମ୍ବନ୍ଧରେ ସୃଷ୍ଟି ହୋଇଥିବା ଭୁଲ୍ ଧାରଣା ଲୋକ ମନରୁ ଦୂର ହୋଇପାରି ନାହିଁ। କିନ୍ତୁ ଏପରି ଧାରଣା ବେଶୀ କାଳ ରହିବା ବାଞ୍ଛନୀୟ ନୁହେଁ।

ବିଷୟବସ୍ତୁ ଦୃଷ୍ଟିରୁ ଓଡ଼ିଶାର ଧର୍ମଶାସ୍ତ୍ରରେ ଅଶୌଚ, ଆଶ୍ରମ, ଆହ୍ନିକ, କାଳ, ଦାନ, ପ୍ରତିଷ୍ଠା, ପ୍ରାୟଶ୍ଚିତ୍ତ, ଭକ୍ତି, ଯଜ୍ଞ, ରାଜଧର୍ମ, ବ୍ରତ, ଶାନ୍ତି, ଶୁଦ୍ଧି, ଶ୍ରାଦ୍ଧ, ସଂସ୍କାର ପ୍ରଭୃତି ୧୫ଟି ବିଷୟ ଆଲୋଚିତ ହୋଇଥିବାର ଦେଖାଯାଏ। ଏହା ଉପଲବ୍ଧ ଗ୍ରନ୍ଥ ଉପରେ ଆଧାରିତ। ତଦ୍‌ବ୍ୟତୀତ ଧର୍ମଶାସ୍ତ୍ର ସହିତ ସମ୍ପୃକ୍ତ ବେଦ, ବେଦାନ୍ତ, ନ୍ୟାୟ, ମୀମାଂସାଦି ବିଷୟରେ ମଧ୍ୟ ଶାସ୍ତ୍ରକାରମାନେ ନିଜ ନିଜ ଗ୍ରନ୍ଥରେ ଓ ସ୍ୱତନ୍ତ୍ର ଗ୍ରନ୍ଥ ମାଧ୍ୟମରେ ଆଲୋଚନା କରିଛନ୍ତି। ଉପର୍ଯ୍ୟୁକ୍ତ ବିଷୟ ବିଭାଗ ଅନୁସାରେ ଓଡ଼ିଶାରେ ଯେଉଁ ଗ୍ରନ୍ଥଗୁଡ଼ିକ ରଚିତ ହୋଇଛି ସେଥିରୁ କେତୋଟି ମୁଖ୍ୟ ଗ୍ରନ୍ଥର ନାମ ନିମ୍ନମତେ ଉଲ୍ଲେଖ କରାଯାଇପାରେ।

ଅଶୌଚ ଓ ଆଶ୍ରମ ବିଷୟ, ଶମ୍ଭୁକର ବାଜପେୟୀଙ୍କ 'ଦୁର୍ବଳ କର୍ମପଦ୍ଧତି', ବିଦ୍ୟାକରଙ୍କ 'ନିତ୍ୟାଚାର ପଦ୍ଧତି', ନରସିଂହଙ୍କ 'ନିତ୍ୟାଚାର ପ୍ରଦୀପ', ଗଦାଧରଙ୍କ 'କାଳସାର' ଓ 'ଆଚାରସାର' ପ୍ରଭୃତି ଗ୍ରନ୍ଥରେ ଆଲୋଚିତ ହୋଇଛି। ବୃହସ୍ପତିଙ୍କ 'କୃତ୍ୟ କୌମୁଦୀ', ଚିନ୍ତାମଣି ମିଶ୍ରଙ୍କ 'କୃତ୍ୟ ପୁଷ୍ପାବଳୀ', କୃଷ୍ଣ ଦାସଙ୍କ 'ନିତ୍ୟାଚାର ପଦ୍ଧତି', ବାସୁଦେବ ତ୍ରିପାଠୀଙ୍କ 'କୃତ୍ୟ ରତ୍ନାବଳୀ', ଗୋପୀନାଥ ପଟ୍ଟନାୟକଙ୍କ 'ଶୁଦ୍ଧାହ୍ନିକ ପଦ୍ଧତି' ପ୍ରଭୃତି ଗ୍ରନ୍ଥରେ ଆହ୍ନିକ ପ୍ରସଙ୍ଗ, କୃଷ୍ଣ ମିଶ୍ରଙ୍କ 'କାଳ ସର୍ବସ୍ୱ', ରଘୁନାଥଙ୍କ 'କାଳ ନିର୍ଣ୍ଣୟ', ଦିବ୍ୟସିଂହଙ୍କ 'କାଳଦୀପ', ଧର୍ମୁ ପାଠୀଙ୍କ 'କାଳ ଚନ୍ଦ୍ରିକା'ରେ କାଳ ବିଭାଗ ଓ ଶୁଭାଶୁଭ କାଳ ବିଷୟ ଏବଂ ଯୋଗୀଶ୍ୱରଙ୍କ 'ଦାନ ଦୀପାବଳୀ', ଶ୍ରୀଧର ଶର୍ମାଙ୍କ 'ଦାନ ବାକ୍ୟାବଳୀ' ପ୍ରଭୃତି ଗ୍ରନ୍ଥରେ ଦାନ ବିଷୟର ପର୍ଯ୍ୟାଲୋଚନା କରାଯାଇଛି।

ପ୍ରତିଷ୍ଠା ଓ ଉତ୍ସର୍ଗ ବିଷୟ ମାଲ୍ୟାରି ମିଶ୍ରଙ୍କ 'ପ୍ରତିଷ୍ଠା ସାର ପଦ୍ଧତି', ଚନ୍ଦ୍ରଶେଖରଙ୍କ 'ପ୍ରତିଷ୍ଠା ସାର ସଂଗ୍ରହ' ପ୍ରଭୃତି ଗ୍ରନ୍ଥରେ ଏବଂ ନରସିଂହଙ୍କ 'ପ୍ରାୟଶ୍ଚିତ୍ତ ପ୍ରଦୀପ', ମୁରାରି ମିଶ୍ରଙ୍କ 'ପ୍ରାୟଶ୍ଚିତ୍ତମନୋହର', ବାସୁଦେବଙ୍କ 'ପ୍ରାୟଶ୍ଚିତ୍ତ ବିଲୋଚନ' ଆଦି ଗ୍ରନ୍ଥରେ ପ୍ରାୟଶ୍ଚିତ୍ତ ପ୍ରସଙ୍ଗ ଆଲୋଚିତ ହୋଇଛି। ଶମ୍ଭୁକର ପଦ୍ଧତି, ବାସୁଦେବ ରଥଙ୍କ 'ମଙ୍ଗଳ ପ୍ରକାଶ',

ରାମଚନ୍ଦ୍ରଙ୍କ 'କୁଣ୍ଡମଣ୍ଡପବିଧି', 'କୁଣ୍ଡଲକ୍ଷବିବୃତି' ପ୍ରଭୃତି ଗ୍ରନ୍ଥରେ ଶ୍ରୌତ (ବୈଦିକ) ଯଜ୍ଞ ଓ ସ୍ମାର୍ତ୍ତଯଜ୍ଞର ବିଧିବିଧାନ ଓ କାର୍ଯ୍ୟବିଧି ବର୍ଣ୍ଣନା କରାଯାଇଛି । ଗଜପତି ପ୍ରତାପରୁଦ୍ର ଦେବଙ୍କ 'ସରସ୍ୱତୀ ବିଳାସ', ଗୋଦାବର ମିଶ୍ରଙ୍କ 'ହରିହର ଚତୁରଙ୍ଗ', 'ଜୟ ଚିନ୍ତାମଣି', ବାସୁଦେବ ତ୍ରିପାଠୀଙ୍କ 'ବୀର ପରାକ୍ରମ' ଓ ଗୋପୀନାଥ ତୁଙ୍ଗଙ୍କ 'ବୀର ସର୍ବସ୍ୱ' ଗ୍ରନ୍ଥରେ ରାଜଧର୍ମର ବିଭିନ୍ନ ବିଷୟ ଅର୍ଥାତ୍ ରାଜ୍ୟ, ରାଜ୍ୟାଙ୍ଗ, ରାଜ କର୍ମଚାରୀ, କୋଷ, ଦଣ୍ଡବିଧି, ବିଚାର ବ୍ୟବସ୍ଥା ଆଦି ଆଲୋଚନା କରାଯାଇଛି ।

ବିଭିନ୍ନ ଦେବ ଦେବୀଙ୍କ ପୂଜା ଓ ମାହାତ୍ମ୍ୟ ଗ୍ରନ୍ଥ ବ୍ୟତୀତ କୃତ କୌମୁଦୀ, କୃତସାର, ଦୁର୍ଗୋତ୍ସବ ଚନ୍ଦ୍ରିକା, ଶାରଦାଶର ଦର୍ଶନ ପଦ୍ଧତି, ଶ୍ରୀକୃଷ୍ଣାର୍ଚ୍ଚନ ପଦ୍ଧତି, ଶୈବକଳ୍ପଦ୍ରୁମ, ସ୍ମୃତିସାର ସଂଗ୍ରହ, ଶୈବ ପଦ୍ଧତି, ନୀଳାଦ୍ରି ମହୋଦୟ, ଯାତ୍ରା ଭାଗବତ ପ୍ରଭୃତି ଗ୍ରନ୍ଥରେ ଶୈବ କ୍ଷେତ୍ର ଭୁବନେଶ୍ୱର ଓ ଶ୍ରୀକ୍ଷେତ୍ର ପୁରୀରେ ଅନୁଷ୍ଠିତ ହେଉଥିବା ସମସ୍ତ ଯାତ୍ରା, ପର୍ବ ପର୍ବାଣୀ ସହିତ ଓଡ଼ିଶାରେ ପାଳିତ ହେଉଥିବା ବ୍ରତଗୁଡ଼ିକ ବିଶେଷ ଭାବେ ପର୍ଯ୍ୟାଲୋଚିତ ହୋଇଛି । ବିଭିନ୍ନ ସ୍ମୃତି ଗ୍ରନ୍ଥରେ ଶାନ୍ତି ପ୍ରସଙ୍ଗ ଥିଲେ ମଧ୍ୟ ନରସିଂହ ବାଜପେୟୀଙ୍କ 'ମହା ସୌର ଶାନ୍ତି' ଓ ଯୋଗୀଶ୍ୱରଙ୍କ 'ଅଦ୍ଭୁତ ସାଗର' ଏ କ୍ଷେତ୍ରରେ ଉଲ୍ଲେଖନୀୟ ଗ୍ରନ୍ଥ । ଶୁଦ୍ଧି ବିଷୟରେ ଗଦାଧରଙ୍କ 'ଶୁଦ୍ଧିସାର' ଓ କାଳିଦାସଙ୍କ 'ଶୁଦ୍ଧି ଚନ୍ଦ୍ରିକା', ଶ୍ରାଦ୍ଧ ବିଷୟରେ ଶମ୍ଭୁକରଙ୍କ 'ଶ୍ରାଦ୍ଧ ପଦ୍ଧତି', ଦିବ୍ୟସିଂହଙ୍କ 'ଶ୍ରାଦ୍ଧଦୀପ', ବିପ୍ର ମିଶ୍ରଙ୍କ 'ଶ୍ରାଦ୍ଧ ପ୍ରଦୀପ', ରଘୁନାଥଙ୍କ 'ଶ୍ରାଦ୍ଧ ନିର୍ଣ୍ଣୟ' ଏବଂ ସଂସ୍କାର ପ୍ରସଙ୍ଗରେ ଗଦାଧରଙ୍କ 'କାଳସାର' ଓ ସଂସ୍କାର ସାର', ଶମ୍ଭୁକରଙ୍କ 'ବିବାହ ପଦ୍ଧତି'ର ନାମ ଉଲ୍ଲେଖନୀୟ । ଏହା ବ୍ୟତୀତ ଯୁଦ୍ଧ, ରାଜ୍ୟ ପରିଚାଳନା, ପ୍ରଶାସନ ଆରକ୍ଷୀ ବ୍ୟବସ୍ଥା, ବିଭିନ୍ନ ପ୍ରକାର କର, ଭୂକର, କଳା, ଶିଳ୍ପ, ବିଚାର ବ୍ୟବସ୍ଥା କର୍ମଚାରୀ ଚୟନ, ଦାୟଭାଗ, ତୀର୍ଥଯାତ୍ରା, ସଙ୍ଗୀତ, ନାଗରିକ ସମିତି, ସନ୍ଧିବିଗ୍ରହ, ବୈଦେଶିକ ନୀତି, କଳିବର୍ଜ୍ୟ, ସ୍ତ୍ରୀ ଧନ, ଯୁଗ ଧର୍ମ, କର୍ମବିପାକ, ଭକ୍ଷ୍ୟାଭକ୍ଷ୍ୟ, ଆପଦ୍ ଧର୍ମ, ଶିକ୍ଷା ବ୍ୟବସ୍ଥା, ପୂର୍ତ୍ତ, ସଦାଚାର, ପ୍ରଭୃତି ବହୁ ବିଷୟର ପ୍ରାସଙ୍ଗିକ ଆଲୋଚନା ଓଡ଼ିଶାର ଧର୍ମଶାସ୍ତ୍ରରେ ସ୍ଥାନ ପାଇଥିବାର ଜଣାଯାଏ ।

## ଧର୍ମଶାସ୍ତ୍ରର ବୈଶିଷ୍ଟ୍ୟ :

ଭାରତର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ପଣ୍ଡିତମାନେ ଭାରତୀୟ ଧର୍ମଶାସ୍ତ୍ରକୁ ଯୁଗେ ଯୁଗେ ସମୃଦ୍ଧ କରି ଆସିଛନ୍ତି । ଆଞ୍ଚଳିକ ଭାଷାର ବିଦ୍ୱାନ୍‌ମାନଙ୍କ ତୁଳନାରେ ସଂସ୍କୃତ ଓ ସଂସ୍କୃତି ପ୍ରିୟ ସଂସ୍କୃତଜ୍ଞ ଶାସ୍ତ୍ରକାରମାନେ ଯେ କୌଣସି ଅଞ୍ଚଳର ଅଧିବାସୀ ହୋଇଥିଲେ ମଧ୍ୟ ଭାରତୀୟ ଏକତାକୁ ଦୃଢ଼ୀଭୂତ କରିବାରେ ବ୍ୟାପୃତ ରହି ଆସିଛନ୍ତି । ଏ କ୍ଷେତ୍ରରେ ଧର୍ମଶାସ୍ତ୍ରକାରମାନଙ୍କ ଭୂମିକା ଅବିସ୍ମରଣୀୟ । ଶାସ୍ତ୍ରକାରମାନେ ଅଞ୍ଚଳ ନିର୍ବିଶେଷରେ ପ୍ରଚଳିତ ଦେଶାଚାର, କୁଳାଚାର ଓ ପରମ୍ପରାକୁ ସ୍ୱୀକୃତି ଦେଇଛନ୍ତି । ଉଦାହରଣ ସ୍ୱରୂପ ଦକ୍ଷିଣାଞ୍ଚଳରେ ମାତୁଳ କନ୍ୟା ବିବାହ, ମଧ୍ୟ ଦେଶରେ ଗୋମାଂସ ଭକ୍ଷଣ, ପୂର୍ବାଞ୍ଚଳରେ ମତ୍ସ୍ୟ ଭକ୍ଷଣ, ଉତ୍ତରାଞ୍ଚଳରେ ନାରୀମାନଙ୍କର ମଦ୍ୟପାନ ପ୍ରଭୃତି ପରମ୍ପରାକୁ ଶାସ୍ତ୍ରକାରମାନେ ଗ୍ରହଣ କରି ନେଇଛନ୍ତି । ସେହିପରି ନୃତ୍ୟ, ଗୀତ, ବାଦ୍ୟ ଶିକ୍ଷା ଓ ତା'ର ପ୍ରୟୋଗାତ୍ମକ ଜୀବିକାକୁ ବ୍ରହ୍ମଚାରୀ ବା ବିଦ୍ୟାର୍ଥୀ କ୍ଷେତ୍ରରେ ନିଷେଧ କରାଯାଇଥିଲେ ମଧ୍ୟ ସାଧାରଣ ଜୀବନରେ ସେଗୁଡ଼ିକର ପ୍ରଚଳନକୁ ସ୍ୱୀକୃତି ଦିଆଯାଇଛି । ଗୋଷ୍ଠୀ ବିଶେଷ ତଥା ଦେଶର ପରମ୍ପରାଗତ ଆଚାରକୁ ସ୍ୱଧର୍ମ କୁହାଯାଏ । ତାହାହିଁ ମହର୍ଷି ମନୁ ଘୋଷଣା କରିଛନ୍ତି :

ଜାତିଜାନ୍‌ପଦାନ୍ ଧର୍ମାନ୍ ଶ୍ରେଣୀ ଧର୍ମାଂଶ୍ଚ ଧର୍ମବିତ୍ ।
ସମୀକ୍ଷ୍ୟ କୁଳଧର୍ମାଂଶ୍ଚ ସ୍ୱଧର୍ମଂ ପ୍ରତିପାଦୟେତ୍ ॥୮–୪୧॥

ତେଣୁ ପ୍ରଶାସନ ଦ୍ୱାରା ସ୍ୱଧର୍ମର ବିରୋଧ ବା ନିଷେଧ କରାଯିବା ଅନୁଚିତ ବୋଲି ଶାସ୍ତ୍ରକାରମାନେ ଘୋଷଣା କରି ଯାଇଛନ୍ତି ।

ଓଡ଼ିଶାର ଧର୍ମଶାସ୍ତ୍ରରେ କେତେକ ବୈଶିଷ୍ଟ୍ୟ ରହିଛି । ଉଦାହରଣ ସ୍ୱରୂପ ଭାରତର ବିଭିନ୍ନ ଅଞ୍ଚଳରେ ମରଣା ଶୌଚକାଳ ୧୦, ୧୫ ବା ୩୦ ଦିନ ପାଳିତ ହୁଏ । ଏହା ବିଭିନ୍ନ ଗୋଷ୍ଠୀ ବା ଜାତି ଉଦ୍ଦେଶ୍ୟରେ ଅଭିପ୍ରେତ । କିନ୍ତୁ ଓଡ଼ିଶାରେ ସମସ୍ତଙ୍କ ପାଇଁ ମରଣା ଶୌଚକାଳ ଦଶଦିନ ନିର୍ଦ୍ଧାରିତ ହୋଇଛି । ବାସି ତୋରାଣିକୁ ପର୍ଯ୍ୟୁଷିତ ଅନ୍ନ ଜଳ ବୋଲି ବିଚାରି ଶାସ୍ତ୍ରକାରମାନେ ତାହା ବର୍ଜନୀୟ ବୋଲି କହିଛନ୍ତି । କିନ୍ତୁ ଓଡ଼ିଶାର ଧର୍ମଶାସ୍ତ୍ରକାରମାନେ ତୋରାଣି ସହିତ ପରିବା ପକାଇ ସିଦ୍ଧ କରି ଖାଇବାକୁ କହିଛନ୍ତି । ଏହାକୁ କାଞ୍ଜି କହନ୍ତି । କାଞ୍ଜି ଓଡ଼ିଶାର ଏକ ଲୋକପ୍ରିୟ ବ୍ୟଞ୍ଜନ (ତରକାରୀ) ବା ଓଡ଼ିଆ ଖାଦ୍ୟ ରୂପେ ପ୍ରସିଦ୍ଧ । ଏହିପରି ଓଡ଼ିଆ ଜନଜୀବନର ବହୁ ଚିତ୍ର ଓଡ଼ିଶାର ଧର୍ମଶାସ୍ତ୍ରରେ ସ୍ଥାନ ପାଇଥିବାର ଦେଖାଯାଏ ।

ଓଡ଼ିଶାର ଧର୍ମଶାସ୍ତ୍ର ମଧ୍ୟରେ ବାଜପେୟୀ ସମ୍ଭୁକର ମିଶ୍ରଙ୍କ 'ଶମ୍ଭୁକର ପଦ୍ଧତି' ଶୌତଯଜ୍ଞ ସମ୍ବନ୍ଧୀୟ ଏକ ଉପାଦେୟ ଗ୍ରନ୍ଥ ରୂପେ ସୁଦୂର ବାରାଣସୀ, ମହାରାଷ୍ଟ୍ର ଓ ଦକ୍ଷିଣ ଭାରତର କେତେକ ଅଞ୍ଚଳରେ ଏବେ ବି ଆଦୃତ ହେଉଛି । ଏହା ପ୍ରାୟ ଅନେକ ଓଡ଼ିଆ ଲୋକ ଜାଣନ୍ତି ନାହିଁ । ଶ୍ରୀଜଗନ୍ନାଥ ସଂସ୍କୃତି, ଶ୍ରୀଜଗନ୍ନାଥଙ୍କ ନବ କଳେବର, ପୂଜା ପଦ୍ଧତି, ଶ୍ରୀମନ୍ଦିର ଇତିହାସ, ଭୁବନେଶ୍ୱରର ବିଭିନ୍ନ ଶିବ ମନ୍ଦିର ତଥା ଓଡ଼ିଶାର ବିଭିନ୍ନ ଦେବଦେବୀଙ୍କ ସମ୍ବନ୍ଧରେ ନିତ୍ୟାଚାର ପଦ୍ଧତି, ନିତ୍ୟାଚାର ପ୍ରଦୀପ, ଶୈବ କଳ୍ପଦ୍ରୁମ, କାଳସାର, ନୀଳାଦ୍ରି ମହୋଦୟ, ଯାତ୍ରା ଭାଗବତ ପ୍ରଭୃତି ଗ୍ରନ୍ଥରେ ଯେଉଁ ତଥ୍ୟ ରହିଛି ତାହା ଏ ପର୍ଯ୍ୟନ୍ତ ଆଲୋଚିତ ହୋଇ ନାହିଁ । ଇତିହାସ ଦୃଷ୍ଟିରୁ ଏଗୁଡ଼ିକର ଅଧ୍ୟୟନ ଏକାନ୍ତ ଆବଶ୍ୟକ । ତନ୍ତ୍ର ଗ୍ରନ୍ଥ ବ୍ୟତୀତ ତାନ୍ତ୍ରିକ ପଦ୍ଧତିର ଉପାସନା କ୍ଷେତ୍ରରେ ଉକ୍ତ ଗ୍ରନ୍ଥ ବ୍ୟତୀତ ପୁରି ସର୍ବସ୍ୱ, ବୀର ସର୍ବସ୍ୱ ଆଦି ଗ୍ରନ୍ଥର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବୃହସ୍ପତି ସୂରିଙ୍କ 'କୃତ କୌମୁଦୀ' ଓଡ଼ିଶାର ପର୍ବପର୍ବାଣୀ ସମ୍ବନ୍ଧୀୟ ଏକ ଉପାଦେୟ ଗ୍ରନ୍ଥ । ଏଥିରେ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା ଏବଂ କେବଳ ଓଡ଼ିଶାରେ ବା ଓଡ଼ିଆମାନଙ୍କ ଦ୍ୱାରା ପାଳିତ ହେଉଥିବା 'ପ୍ରଥମାଷ୍ଟମୀ' ପର୍ବର ପ୍ରଥମ ସୂଚନା ଦିଆଯାଇଛି । ନିତ୍ୟାଚାର ପଦ୍ଧତି ସହିତ ରାମଚନ୍ଦ୍ର ବାଜପେୟୀଙ୍କ 'କୁଣ୍ଡଲକ୍ଷବିବୃତି' ଏକ ଉପାଦେୟ ଗ୍ରନ୍ଥ ରୂପେ ସମଗ୍ର ଭାରତରେ ସ୍ମୃତିକାରମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି । ଏହି ଗ୍ରନ୍ଥ ଅନୁସାରେ ପ୍ରସ୍ତୁତ ବିଭିନ୍ନ ପ୍ରକାର ଯଜ୍ଞକୁଣ୍ଡ (ମଡେଲ୍)ର ଏକ ସଂଗ୍ରହାଳୟ ବୈଦିକ ଅନୁସନ୍ଧାନ ସମିତି, ପୁନାରେ ଥିବାର ଦେଖାଯାଏ ।

ଗଜପତି ପ୍ରତାପରୁଦ୍ର ଦେବଙ୍କ 'ସରସ୍ୱତୀ ବିଳାସ' ପ୍ରଶାସନ ଓ ବିଚାର ସମ୍ବନ୍ଧୀୟ ଏକ ପୃଥିବୀ ବିଖ୍ୟାତ ଗ୍ରନ୍ଥ । ସର୍ବ ଭାରତୀୟ ସ୍ତରରେ ଏହାର ଭୂରି ଭୂରି ପ୍ରଶଂସା କରାଯାଇଛି । ବିଚାର କ୍ଷେତ୍ରରେ ସମଗ୍ର ଦକ୍ଷିଣ ଭାରତରେ ଏହାର ପ୍ରଭାବ ଅଦ୍ୟାବଧି ରହିଛି । ସେହିପରି ସମର ଶାସ୍ତ୍ର ଦୃଷ୍ଟିରୁ ଜୟ ଚିନ୍ତାମଣି, ବୀର ପରାକ୍ରମ, ଓ ବୀର ସର୍ବସ୍ୱର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଗଲେ ପ୍ରାଚୀନ ଉତ୍କଳର ସମର କୌଶଳ, ଦୁର୍ଗ ରଚନା ଓ ଅସ୍ତ୍ରଶସ୍ତ୍ର ପ୍ରଭୃତି ସମ୍ବନ୍ଧରେ ବହୁ ଉପାଦେୟ ତଥ୍ୟ ଉଦ୍‌ଘାଟିତ ହୋଇପାରିବ । ଓଡ଼ିଶାର ଦୁର୍ଗା ପୂଜା ସମ୍ବନ୍ଧରେ ଦୁର୍ଗୋତ୍ସବ ଚନ୍ଦ୍ରିକା ଓ ଶାରଦାଶରଦର୍ଚ୍ଚନ ପଦ୍ଧତିର ଗୁରୁତ୍ୱ ଓ ମହତ୍ତ୍ୱ ଏ ପର୍ଯ୍ୟନ୍ତ ଲୋକ ଲୋଚନକୁ ଆସିନାହିଁ । ଓଡ଼ିଶାରେ ରାଧାକୃଷ୍ଣ ଉପାସନାର କ୍ରମବିକାଶ କ୍ଷେତ୍ରରେ କାଳ ନିର୍ଣ୍ଣୟ ଓ କାଳ ସର୍ବସ୍ୱ ଗ୍ରନ୍ଥର ଭୂମିକା ଇତିହାସ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଶୂଦ୍ର ଶ୍ରେଣୀୟ ଧର୍ମପ୍ରାଣ ଲୋକମାନଙ୍କ ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ ବିଷୟରେ ପ୍ରଣୀତ 'ଶୂଦ୍ରାହ୍ନିକ ପଦ୍ଧତି' ଏକ ଉପାଦେୟ ଗ୍ରନ୍ଥ । ସବୁ ଗ୍ରନ୍ଥର ଉପାଦେୟତା, ଐତିହାସିକ ଗୁରୁତ୍ୱ ଓ ସାଂସ୍କୃତିକ ମହତ୍ତ୍ୱ ବିଷୟରେ ସୂଚନା ଦେବା ଏଠାରେ ସମ୍ଭବ ନୁହେଁ । ଓଡ଼ିଶାର ଧର୍ମଶାସ୍ତ୍ର ସମ୍ବନ୍ଧୀୟ ବହୁ ତଥ୍ୟ ଓଡ଼ିଆ ସାହିତ୍ୟରେ ପୂରି ରହିଛି । ମହାକବି ସାରଳା ଦାସଙ୍କଠାରୁ ଆରମ୍ଭ କରି କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପର୍ଯ୍ୟନ୍ତ ସମସ୍ତ ଓଡ଼ିଆ କାବ୍ୟ

କବିତାରେ ଏବଂ ପରବର୍ତ୍ତୀ କାଳର କେତେକ ଓଡ଼ିଆ ରଚନାରେ ମଧ୍ୟ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗ ଯଥାରୀତି ଆଲୋଚିତ ହୋଇଛି । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ କବିମାନେ ସେଥିପାଇଁ ଓଡ଼ିଆ ଜାତିର ଗର୍ବ ଓ ଗୌରବର ବିଷୟ ହୋଇ ରହିଛନ୍ତି । କିନ୍ତୁ ଧର୍ମଶାସ୍ତ୍ରର ଆଚରଣ ବିଧିଠାରୁ ଆଧୁନିକ ସମାଜ ଯେତିକି ବଦଳି ଯାଉଛି, ସାମାଜିକ ବିଶୃଙ୍ଖଳା, ଅନୈକ୍ୟ ଭାବନା, ସ୍ୱାର୍ଥପରତା, ଦୁର୍ନୀତିପରାୟଣତା ସେତିକି ବୃଦ୍ଧି ପାଉଛି । ଭଗବତ୍ ଗୀତାରେ କୁହାଯାଇଛି—'ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ।' ସେଥିପାଇଁ ଆଜିର ଏ ବିଜ୍ଞାନ ଯୁଗରେ ମଧ୍ୟ ଧର୍ମଶାସ୍ତ୍ରର ମୌଳିକ ସିଦ୍ଧାନ୍ତ ଅପରିବର୍ତ୍ତିତ ଭାବେ ଗ୍ରହଣୀୟ ଓ ଅନୁସରଣୀୟ ମନେହୁଏ ।

ସମ୍ପାଦକ,
ସଂସ୍କୃତି ବିଭାଗ ନିର୍ଦ୍ଦେଶାଳୟ, ଓଡ଼ିଶା,
ଭୁବନେଶ୍ୱର ।



# ପ୍ରଜାବତ୍ସଳ ରାଜା ବୈକୁଣ୍ଠନାଥ

ଡଃ ହରିଶ୍ଚନ୍ଦ୍ର ଦାସ

ଦାନଶୀଳତା, ପ୍ରଜାବତ୍ସଳତା, ଦେଶ ମାତୃକାର ସେବା ଓ ଧର୍ମପରାୟଣତା ପାଇଁ ବାଲେଶ୍ୱର ରାଜବଂଶ ଆଧୁନିକ ଓଡ଼ିଶା ଇତିହାସରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି। ଏହି ବଂଶର ଇତିହାସ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରୁ ସ୍ପଷ୍ଟ ଭାବରେ ଜଣାପଡ଼େ, ଯଦିଓ ଏହି ପରିବାର ଉଦ୍ଭବ ପ୍ରାଚୀନ କାଳରୁ ହୋଇଛି ବୋଲି କେତେକେ ମତବ୍ୟକ୍ତ କରନ୍ତି। ଏହି ପରିବାରର ଲୋକମାନେ ଅଷ୍ଟଗ୍ରାମୀ ତାମ୍ବୁଳି ନାମକ ଏକ ସମ୍ଭ୍ରାନ୍ତ ଉଚ୍ଚ ଜାତିର ଅନ୍ତର୍ଭୁକ୍ତ। ତାମ୍ବୁଳିମାନେ ହୁଗୁଳୀ ଜିଲ୍ଲାର ମାୟାପୁରରେ ପ୍ରାଚୀନ କାଳରୁ ବାସ କରୁଥିଲେ ବୋଲି କିମ୍ବଦନ୍ତୀରୁ ଜଣାଯାଏ। ମାତ୍ର ଏ ସ୍ଥାନକୁ କେବେଠୁଁ ସେମାନେ ଆସିଲେ, ସେ ବିଷୟରେ ସଠିକ ବିବରଣୀ ମିଳେ ନାହିଁ। ମଧୁସୂଦନ ବାସର ଦେ (୧୬୬୦)ଙ୍କ ପାଖରୁ ବଂଶାନୁଚରିତର ଏକ ବିବରଣୀ ମିଳେ।

ବଙ୍ଗ ଦେଶ ସେତେବେଳେ ମୁସଲମାନ୍ ଶାସନାଧୀନ। ମୁସଲମାନ୍ ଫଉଜଦାରର ଦୌରାତ୍ମ୍ୟ ସହ୍ୟ କରି ନପାରି ମଧୁସୂଦନ ପୈତୃକ ସମ୍ପତ୍ତିବାଡ଼ି ପ୍ରତି ଆସକ୍ତି ନରଖି ମାୟାପୁର ବରାବର ପାଇଁ ତ୍ୟାଗ କଲେ। ମୁସଲମାନ୍‌ମାନଙ୍କର ଅତ୍ୟାଚାର ଓ ଯଥେଚ୍ଛାଚାରିତା ପାଇଁ ଧନ ଜୀବନ ଆଦୌ ନିରାପଦ ନଥିଲା। କେତେକ କଲିକତାରେ ବସବାସ କଲେ; କେତେକ ଆସି ରହିଲେ ମେଦିନୀପୁର ଏବଂ ତମଲୁକରେ ଏବଂ କେତେକ ଆସି ବସତି ସ୍ଥାପନ କଲେ ଓଡ଼ିଶାର ପିପିଲି ବନ୍ଦର ଓ ବାଲେଶ୍ୱରରେ। ତାମ୍ବୁଳିମାନେ ବ୍ୟବସାୟ ବାଣିଜ୍ୟରେ ପଟୁ ଥିଲେ। ଯେଉଁ ଯେଉଁ ସ୍ଥାନକୁ ସେମାନେ ଯାଇଛନ୍ତି ସେଠାରେ ବ୍ୟବସାୟ ମାଧ୍ୟମରେ ଲାଭବାନ ହୋଇଛନ୍ତି। ମଧୁସୂଦନ ସପରିବାର ଇଂରେଜ ଶାସନାଧୀନ ସୁତାନଟୀରେ ଶାନ୍ତିରେ ବସବାସ କଲେ। ୧୭୬୫ ମସିହାରେ ଦେ ପରିବାରର ଜୟକୃଷ୍ଣ ରାମ ବାରଦୀରେ ବ୍ୟବସାୟ ଭଲ ଭାବରେ ନଚଳିବାରୁ ତାଙ୍କର ତିନିଜଣ ପୁତ୍ର ସହ ବାଲେଶ୍ୱରେ ପହଞ୍ଚିଲେ। ଏଠାରେ ତାଙ୍କର ଭାଗ୍ୟ ଉଦୟ ହେଲା। ସେ ବ୍ୟବସାୟ କରିବା ପାଇଁ ଯଥେଷ୍ଟ ସୁବିଧା ସୁଯୋଗ ପାଇଲେ। ଏକ ଜାହାଜ ବୋଝେଇ ଗୁଡ଼ ଓ ଲୁଗା ଦକ୍ଷିଣ ଭାରତକୁ ପଠାଇ ଯଥେଷ୍ଟ ଲାଭ କଲେ। ଲାଭାଂଶରୁ ବାଲେଶ୍ୱରରେ ଜମିବାଡ଼ି କିଣିଲେ। ମାତ୍ର ସୌଭାଗ୍ୟ ଉପଭୋଗ କରିବା ପାଇଁ ବେଶୀ ଦିନ ବଞ୍ଚି ନଥିଲେ। ତାଙ୍କ ବଡ଼ ପୁତ୍ର ମାଣିକ ରାମ ବୁଦ୍ଧି ବଳରେ ବ୍ୟବସାୟ ବଢ଼ାଇ ପ୍ରତିପତ୍ତି ଲାଭ କଲେ। ସେ ଥିଲେ ବୁଦ୍ଧିମାନ ଏବଂ ଶିକ୍ଷିତ। ଓଡ଼ିଆ, ବଙ୍ଗଳା, ପାର୍ଶୀ ଓ ସଂସ୍କୃତ ଭାଷା ଭଲ ଭାବରେ ଜାଣିଥିଲେ। ଏହି ସମୟରେ ସେ ବାଲେଶ୍ୱରର ପ୍ରତିପତ୍ତିଶାଳୀ ତାମ୍ବୁଳୀ ବାବୁ ଲାଲ ବିହାରୀ କରଙ୍କ ସମ୍ପର୍କରେ ଆସିଲେ। କର ମହାଶୟ ମାଣିକ ରାମର ବୁଦ୍ଧିମତ୍ତାର ପରିଚୟ ପାଇ ନିଜ କନ୍ୟା ସହିତ ବିବାହ କରାଇଲେ। ୧୭୮୦ ମସିହାରେ ଶ୍ୱଶୁରଙ୍କ ସହାୟତାରେ ସେ ବ୍ୟବସାୟର ପରିସର ବଢ଼ାଇ ଅନେକ ଜମିବାଡ଼ି କିଣିଲେ ଏବଂ ବାଲେଶ୍ୱରର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହିସାବରେ ପରିଗଣିତ ହେଲେ। ୧୮୦୪ ଖ୍ରୀଷ୍ଟାବ୍ଦରେ ମାଣିକ ରାମ ମୃତ୍ୟୁବରଣ କଲେ। ତାଙ୍କର ୩ ଜଣ ପୁତ୍ର ଥିଲେ। ଦୟାରାମ, ଜଗନ୍ନାଥ ଓ ରଘୁନାଥ। ଧର୍ମ ଓ କର୍ତ୍ତବ୍ୟ ପରାୟଣ ଦୟାରାମ ନିଜର ପୈତୃକ ସମ୍ପତ୍ତି ଓ ବ୍ୟବସାୟ ବଢ଼ାଇବା ସଙ୍ଗେ ସଙ୍ଗେ ତାଙ୍କର ମାମୁଁ ବାବୁ ଜଗନ୍ନାଥ ପ୍ରସାଦ କରଙ୍କର ସମ୍ପତ୍ତିବାଡ଼ି ରକ୍ଷଣା ବେକ୍ଷଣର ଦାୟିତ୍ୱ ନେଲେ। ତାଙ୍କ ଅନ୍ତେ ପୈତୃକ ଜମିଦାରୀ ଓ ମାମୁଁଙ୍କର ସମ୍ପତ୍ତି ଓ ବ୍ୟବସାୟର ଦାୟିତ୍ୱ ପଡ଼ିଲା ଜଗନ୍ନାଥଙ୍କ ଉପରେ। ସେ ମୃତ୍ୟୁବରଣ କଲେ ୧୮୩୦ ମସିହାରେ। ତାଙ୍କର ସାନଭାଇ ରଘୁନାଥ ବ୍ୟବସାୟରେ ବିଶେଷ ନିପୁଣତା ଅର୍ଜନ କରିଥିଲେ। ବାଲେଶ୍ୱରରେ ସେତେବେଳେ ତିଆରି ହେଉଥିବା ସାନ ନାମକ ଏକ ପ୍ରକାର ସୂକ୍ଷ୍ମ ବସ୍ତ୍ର ଦେଶ ବିଦେଶରେ ବିଶେଷ ଖ୍ୟାତିଲାଭ କରିଥିଲା। ରଘୁନାଥ ଏହି ବସ୍ତ୍ର ଇଂଲଣ୍ଡ, ଡେନ୍‌ମାର୍କ, ହଲାଣ୍ଡ ଓ ପର୍ତ୍ତୁଗାଲ୍ ପ୍ରଭୃତି ଦେଶକୁ ରପ୍ତାନୀ କରି ଅମାପ ଅର୍ଥ ଉପାର୍ଜନ କଲେ। ସେ ଥିଲେ ଜଣେ ଧର୍ମପ୍ରାଣ ବ୍ୟକ୍ତି। ଉପାର୍ଜିତ ଅର୍ଥ ସେ ଦେବ ମନ୍ଦିର ଗଢ଼ିବା, କୂଅ ପୋଖରୀ ଖୋଳିବାରେ ଖର୍ଚ୍ଚ କରି ଲୋକଙ୍କର ପ୍ରିୟଭାଜନ ହୋଇ ପାରିଥିଲେ। ୧୮୪୩ ଖ୍ରୀଷ୍ଟାବ୍ଦରେ ସେ ଇହଲୀଳା ସମ୍ବରଣ କଲେ। ତାଙ୍କର ଥିଲେ ୪ ଜଣ ପୁତ୍ର। ବ୍ରଜମୋହନ, ରୂପଚରଣ, ସନାତନ ଓ ଶ୍ୟାମାନନ୍ଦ। ପିତାଙ୍କ ଜୀବଦ୍ଦଶାରେ ପ୍ରଥମ ଦୁଇ ପୁତ୍ରଙ୍କ ମୃତ୍ୟୁ ହୋଇଥିଲା। ତାଙ୍କର ମୃତ୍ୟୁର ଅବ୍ୟବହିତ ପରେ ସନାତନ ଇହଲୀଳା ସାଙ୍ଗ କଲେ। କନିଷ୍ଠ ପୁତ୍ର ଶ୍ୟାମାନନ୍ଦଙ୍କ ଉପରେ ସଂସାରର ସମସ୍ତ ଦାୟିତ୍ୱ ପଡ଼ିଲା।

୧୮୧୭ ମସିହା ମାର୍ଚ୍ଚମାସରେ ଶ୍ୟାମାନନ୍ଦଙ୍କ ଜନ୍ମ। ପିତାଙ୍କ ମୃତ୍ୟୁ ବେଳକୁ ତାଙ୍କର ବୟସ ୨୬ ବର୍ଷ। ସେ ସମସ୍ତ ରାଜକୀୟ ଗୁଣ ନେଇ ଜନ୍ମଗ୍ରହଣ କରିଥିଲେ। ତାଙ୍କର ଶିକ୍ଷା ବିଷୟରେ ସଠିକ ବିବରଣୀ ନଥିଲେ ମଧ୍ୟ ତାଙ୍କର ଯଥେଷ୍ଟ ଶିକ୍ଷାଗତ ଯୋଗ୍ୟତା ରହିଥିଲା।

ତାଙ୍କର ପରବର୍ତ୍ତୀ କାର୍ଯ୍ୟକଳାପରୁ ନଜର ଜ୍ଞାନଗାରିମା ଓ ରାଜ୍ୟ ପରିଚାଳନାରେ ଦକ୍ଷତା ବିଷୟରେ ସ୍ପଷ୍ଟ ପ୍ରମାଣ ମିଳେ । ପିତାଙ୍କ ମୃତ୍ୟୁ ପରେ ସେ ବିଳାସ ବ୍ୟସନରେ ସମୟ ନଷ୍ଟ ନକରି ଚତୁରତାର ସହିତ ବ୍ରିଟିଶ୍ ସରକାରଙ୍କ ସହ ସୁସମ୍ପର୍କ ରକ୍ଷା କରି ଜମିଦାରୀ ରକ୍ଷା କରିବାରେ ସକ୍ଷମ ହେଲେ । ରାଜବଂଶର ଇତିହାସରୁ ଜଣାପଡ଼େ ଯେ "He was fully alive to the gravity of his position instead of giving himself of to the temptation of the youth and the young man of rich families are so apt to do, he threw himself heart and soul into his work and by his able and careful management, combined with honesty and economic, he not only considerably enlarged the estates he inherited from his future but by his numerous religious and charitable works raised the family high in the estimation of the Government as well as the public".

Education and Road Cess Committeeର ସଭ୍ୟ ଏବଂ ବାଲେଶ୍ୱର ମ୍ୟୁନିସିପାଲିଟିର ସଭ୍ୟ ହୋଇ ବାବୁ ଶ୍ୟାମାନନ୍ଦ ବାଲେଶ୍ୱର ସହରର ଅନେକ ଉନ୍ନତି ସାଧନ କରିଥିଲେ । ଦାନଶୀଳତା, ମହାନୁଭବତା, କାର୍ଯ୍ୟ ଦକ୍ଷତା, ଲୋକହିତୈଷୀ ଓ ଧର୍ମାନୁରାଗତା ପାଇଁ ସେ ଥିଲେ ଜଣେ ବିଶିଷ୍ଟ ପ୍ରତିଷ୍ଠିତ ବ୍ୟକ୍ତି । ତାଙ୍କ ସମୟରେ ଦେ ପରିବାର ବାଲେଶ୍ୱରରେ ବିଶିଷ୍ଟ ରାଜବଂଶ ହିସାବରେ ପ୍ରତିଷ୍ଠା ଲାଭ କଲା ।

୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ଏକ ମର୍ମନ୍ତୁଦ ଐତିହାସିକ ଘଟଣା । ଏହି ଦୁର୍ଦ୍ଦିନରେ ଶ୍ୟାମାନନ୍ଦବାବୁ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କ ପାଇଁ ମହତ କାର୍ଯ୍ୟ କରି ଇତିହାସରେ ଅମର ହୋଇ ରହିଛନ୍ତି । ଲୋକଙ୍କ ଦୁଃଖରେ ବ୍ୟଥିତ ହୋଇ ସେ ବାଲେଶ୍ୱରରେ ଅନ୍ନଛତ୍ର ଖୋଲି ହଜାର ହଜାର ଭୋକିଲା ଲୋକଙ୍କୁ ଖାଦ୍ୟ ଯୋଗାଇଥିଲେ । ବଙ୍ଗଳା ଓ ଓଡ଼ିଶାରେ ଚାଉଳ ନମିଳିବାରୁ ସୁଦୂର ବ୍ରହ୍ମଦେଶରୁ ଜାହାଜରେ ଚାଉଳ ଆମଦାନୀ କରି ଅନ୍ନଛତ୍ର ଚଳାଇଥିଲେ ଏବଂ ବନ୍ଧୁ, ଅନ୍ୟ ପଡ଼ୋଶୀ ଏବଂ ଅନ୍ୟାନ୍ୟ ବାଲେଶ୍ୱରବାସୀଙ୍କୁ ପ୍ରଚୁର ପରିମାଣରେ ଚାଉଳ ଯୋଗାଇ ଦେବାର ବ୍ୟବସ୍ଥା କଲେ । ତାଙ୍କ ରାଜ୍ୟର ପ୍ରଜାମାନଙ୍କର କର ଛାଡ଼ କରିଦେଲେ । ଯାହାର ସେ ସମୟର ମୂଲ୍ୟ ହେଉଛି ପ୍ରାୟ ଏକ ଲକ୍ଷ ଟଙ୍କା । ଏଠାରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇ ପାରେ ଯେ ରାଜା ଶ୍ୟାମାନନ୍ଦଙ୍କ ସାହାଯ୍ୟ ପାଇଁ ବାଲେଶ୍ୱର ଜିଲ୍ଲାରେ ଦୁର୍ଭିକ୍ଷଜନିତ ମୃତ୍ୟୁ ସଂଖ୍ୟା ଅନ୍ୟାନ୍ୟ ଜିଲ୍ଲା ତୁଳନାରେ ଯଥେଷ୍ଟ କମ୍ । ତାଙ୍କର ଏହି ମହତ କାର୍ଯ୍ୟ ପାଇଁ ବ୍ରିଟିଶ୍ ସରକାରଙ୍କ ପାଖରୁ ବହୁ ପ୍ରଶଂସାପତ୍ର ପାଇଥିଲେ । ଧର୍ମ ସଂସ୍ଥା ଓ ଲୋକ ହିତକର କାର୍ଯ୍ୟ ପାଇଁ ତାଙ୍କର ଦାନ ଅତୁଳନୀୟ । ସେ ବାଲେଶ୍ୱର ସହରରେ ନୀମକାରୀ ଓ ଝାଡ଼େଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ତୀର୍ଥପ୍ରାୟ ରେମୁଣାର ଗୋପୀନାଥ ମନ୍ଦିର ମଧ୍ୟ ପୁନଃ ନିର୍ମାଣ କରିଥିଲେ । ୮୦,୦୦୦ ଟଙ୍କା ଖର୍ଚ୍ଚ କରି ପୁରୀର ଗୁଣ୍ଡିଚା ମନ୍ଦିରର ପୁନଃ ନିର୍ମାଣ ତାଙ୍କର ସର୍ବଶ୍ରେଷ୍ଠ ମହତ୍ୱପୂର୍ଣ୍ଣ କାର୍ଯ୍ୟ । ଏତେବଡ଼ ମହତ୍ୱପୂର୍ଣ୍ଣ କାର୍ଯ୍ୟ କରି ମଧ୍ୟ ସେ ତାଙ୍କ ପରିବାରର କାହାକୁ ଜଣାଇ ନଥିଲେ । ତାଙ୍କର ମୃତ୍ୟୁ ପରେ କାଗଜପତ୍ରରୁ ଏ ବିଷୟ ଜଣାପଡ଼ିଲା । ଏହା ହିଁ ତାଙ୍କ ଚରିତ୍ରର ବିଶେଷତ୍ୱ । ବାଲେଶ୍ୱର ସହର ତଥା ମଫସଲରେ ସେ ଅନେକ ପୋଖରୀ ଓ କୂଅ ଖନନ କରି ଲୋକଙ୍କର ଜଳ କଷ୍ଟ ଦୂର କରିଥିଲେ । ତାଙ୍କର ଅନ୍ୟାନ୍ୟ ମହତ୍ୱପୂର୍ଣ୍ଣ କାର୍ଯ୍ୟ ମଧ୍ୟରେ ୧୮୭୪ ମସିହାରେ ରେମୁଣାରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ, ୧୮୬୯ ଶ୍ରୀଖଣ୍ଡରେ- ତାଙ୍କ ନାମରେ ଏକ ଦାତବ୍ୟ ଚିକିତ୍ସାଳୟ, ଜିଲ୍ଲା ସ୍କୁଲର ସର୍ବଶ୍ରେଷ୍ଠ ବିବେଚିତ ଛାତ୍ର ପାଇଁ Prince of Wales ବୃତ୍ତି, ବାଲେଶ୍ୱର ରାଜବାଟୀ ସମ୍ମୁଖରେ ଗୃହ ଦେବତା ରାଧାଗୋବିନ୍ଦ ଜୀଉଙ୍କ ପାଇଁ ମନ୍ଦିର ନିର୍ମାଣ, ଭକ୍ତ ଓ ତୀର୍ଥଯାତ୍ରୀମାନଙ୍କ ପାଇଁ ସଦାବ୍ରତ ସ୍ଥାପନ, ଦେଶୀ ଜିନିଷ ସଂଗ୍ରହ କରି ପାରୁଆ ପଡ଼ାରେ ୧୮୭୪ ମସିହାରେ ଏକ ବିରାଟ ପ୍ରଦର୍ଶନୀର ଆୟୋଜନ ଉଲ୍ଲେଖନୀୟ ।

ଶ୍ୟାମାନନ୍ଦଙ୍କର ରାଜଭକ୍ତି, ପ୍ରଜାବତ୍ସଳତା, ଦାନଶୀଳତାରେ ମୁଗ୍ଧ ହୋଇ ବ୍ରିଟିଶ୍ ସରକାର ତାଙ୍କୁ ୧୮୬୮ ମସିହାରେ ରାୟବାହାଦୁର, ୧୮୭୭ରେ ରାଜା ଓ ୧୮୮୭ରେ ରାଜା ବାହାଦୁର ପଦରେ ଭୂଷିତ କରିଥିଲେ । ଶେଷ ପଦବୀ ପାଇବାର ବର୍ଷକ ପରେ ଅର୍ଥାତ୍ ୧୮୮୮ ଅକ୍ଟୋବର ମାସରେ ୭୨ ବର୍ଷ ବୟସରେ ଶ୍ୟାମାନନ୍ଦ ଇହଲୀଳା ସାଙ୍ଗ କଲେ । ତାଙ୍କ ମୃତ୍ୟୁରେ ବାଲେଶ୍ୱର ସହର ତଥା ତାଙ୍କ ରାଜ୍ୟରେ ଶୋକର ଛାୟା ଖେଳି ଯାଇଥିଲା । ୧୮୯୦ ମସିହା ଅଗଷ୍ଟ ମାସରେ ତାଙ୍କ ସ୍ତ୍ରୀ ରାଣୀ ଶ୍ରୀମତୀଙ୍କର ମୃତ୍ୟୁ ହେଲା ।

ଶ୍ୟାମାନନ୍ଦଙ୍କର ଦୁଇ ପୁତ୍ର (କୁମାର ବୈକୁଣ୍ଠନାଥ ଓ କୁମାର ସତ୍ୟେନ୍ଦ୍ରନାଥ) ଓ ସୁରିଜଣ କନ୍ୟା ଥିଲେ । ବଡ଼ ପୁଅ କୁମାର ବୈକୁଣ୍ଠନାଥ ପିତାଙ୍କ ପରି ମହାନୁଭବ ଥିଲେ । ବହୁ ଆଡ଼ମ୍ବରରେ ପିତାଙ୍କର ଶ୍ରାଦ୍ଧ ଉତ୍ସବ ପାଳନ ଏକ ଐତିହାସିକ ଘଟଣା । ବଙ୍ଗ ଦେଶ ଓ ଓଡ଼ିଶାର ବହୁ ବିଶିଷ୍ଟ ବ୍ରାହ୍ମଣ ଓ ପଣ୍ଡିତମାନଙ୍କୁ ତାଙ୍କ ପିତାଙ୍କର ଶ୍ରାଦ୍ଧ ଉତ୍ସବକୁ ନିମନ୍ତ୍ରଣ କରିଥିଲେ । ପଣ୍ଡିତମାନେ କୁମାରଙ୍କର ଆତିଥେୟତାରେ ମୁଗ୍ଧ ହୋଇ ତାଙ୍କୁ "ଦେବ" ପଦବୀରେ ଭୂଷିତ କରିଥିଲେ ନଭେମ୍ବର ୧୮୮୮ ମସିହାରେ ।

ରାଜା ବୈକୁଣ୍ଠନାଥ ଦେବ ବାହାଦୁରଙ୍କର ଜନ୍ମ ୧୮୬୨ ମସିହାରେ । ସେ ଥିଲେ ପିଲାଦିନୁ ମେଧାବୀ, ବିଚକ୍ଷଣ ଓ କାର୍ଯ୍ୟତତ୍ପର । ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢୁଥିବା ବେଳେ ଜନ ଆନ୍ଦୋଳନରେ ସକ୍ରିୟ ଭାଗ ନେଇ ପଢ଼ାପଢ଼ି ଛାଡ଼ିଦେଲେ । ମାତ୍ର ରାଜ୍ୟ ପରିଚାଳନା କରିବାର ସମସ୍ତ ଗୁଣ ସେ ପିତାଙ୍କ ପାଖରୁ ଶିଖିଥିଲେ ।

ଲୋକପ୍ରିୟତା ଓ କାର୍ଯ୍ୟଦକ୍ଷତା ବଳରେ ୧୮୭୭ ମସିହାରେ ବାଲେଶ୍ୱର ମିଉନିସିପାଲିଟିର ଭାଇସ୍ ଚେୟାରମ୍ୟାନ୍ ପଦବୀରେ ନିଯୁକ୍ତ ହେଲେ । ବହୁମୁଖୀ ଯୋଜନା କାର୍ଯ୍ୟକାରୀ କରି ସେ ବାଲେଶ୍ୱର ସହରର ଯଥେଷ୍ଟ ଉନ୍ନତି ସାଧନ କରିଥିଲେ । କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ସରକାର ତାଙ୍କୁ ତିନିବର୍ଷ ପାଇଁ ବାଲେଶ୍ୱର ମିଉନିସିପାଲିଟିର ଚେୟାରମ୍ୟାନ୍ ପଦବୀରେ ନିଯୁକ୍ତି କଲେ । ତାଙ୍କର କାର୍ଯ୍ୟଦକ୍ଷତା ବିଷୟରେ ତତ୍କାଳୀନ କଲେକ୍ଟର୍ T. J. C. Grantଙ୍କର ୧୮୮୨-୮୩ ମସିହାର ବିବରଣୀ ଉଲ୍ଲେଖଯୋଗ୍ୟ । "The only officer to be noticed especially is the Vice-Chairman, Kumar Baikuntha Nath De. This gentleman is a conspicuous example of the excellent results that can be obtained from the public spirit and the active interest in local prosperity and advance which is so much needed and so rarely found among the upper classes in Orissa.

The Kumar's services to the Municipality (and not only in that direction) are thoroughly real and solidly valuable. His social position and character and his wealth put him in a position to render great services to the public and great assistance to its officers. The Kumar joins the will to the power.

ରାଜା ବୈକୁଣ୍ଠନାଥ ଦେବ Road Cess Committee ଏବଂ Balasore District Boardର Vice-Chairman ହୋଇ-

ସରକାରଙ୍କ ଦ୍ୱାରା Honorary Magistrate ଥିଲେ। ପଦବୀରେ ନିଯୁକ୍ତି ବିଶେଷ ଉଲ୍ଲେଖଯୋଗ୍ୟ। ତାଙ୍କର କାର୍ଯ୍ୟଦକ୍ଷତା ସମ୍ପର୍କରେ ବାଲେଶ୍ୱର କଲେକ୍ଟର୍, ବେଙ୍ଗଲ୍‌ର ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର୍ ଭୂୟସୀ ପ୍ରଶଂସା କରି ସେମାନଙ୍କର ବିବରଣୀରେ ଲିପିବଦ୍ଧ କରିଛନ୍ତି।

ଓଡ଼ିଶୀ କଳା ଓ ସଂସ୍କୃତିର ପରାକାଷ୍ଠା ପ୍ରତିପାଦନ କରିବା ପାଇଁ ସେ ମହାର୍ଘ ଦର୍ଶନୀୟ ଜିନିଷ ଯୋଗାଡ଼ କରି କଲିକତାରେ ୧୮୮୪ ମସିହାରେ ଅନୁଷ୍ଠିତ ଅନ୍ତର୍ଜାତୀୟ ପ୍ରଦର୍ଶନୀରେ ପ୍ରଦର୍ଶିତ କରି ଓଡ଼ିଶାର ସମ୍ମାନ ବଢ଼ାଇଥିଲେ। ଏଥିପାଇଁ ଏବଂ ଓଡ଼ିଆରେ ରିପନ୍ ଏଟ୍‌ଲାସ୍ ଛପାଇ ସରକାରଙ୍କଠାରୁ ସମ୍ମାନପତ୍ର ପାଇଥିଲେ।

୧୮୮୩ ମସିହାରେ Bengal Lagislative Councilର ସଭ୍ୟ ଭାବରେ ନିଯୁକ୍ତ ହୋଇଥିଲେ। ଏହି ସମ୍ମାନସୂଚକ ପଦବୀରେ ନିଯୁକ୍ତି ପାଇବାରେ ରାଜା ବୈକୁଣ୍ଠନାଥ ଦେବ ହେଉଛନ୍ତି ସର୍ବ ପ୍ରଥମ ଓଡ଼ିଶାବାସୀ। ଏହି ପଦବୀରେ ତିନିବର୍ଷ ରହି ନିଜର ଅସାଧାରଣ ଶକ୍ତି ଓ ଅଭିଜ୍ଞତା ପ୍ରଦର୍ଶନ କରିବାରେ ସୁଯୋଗ ଲାଭ କଲା। ବିଶେଷତଃ Municipal Bill ଆଗତ ବେଳେ ସେ ଆଲୋଚନାରେ ସକ୍ରିୟ ଭାଗ ନେଇ ପୌର ସଂସ୍ଥା ଶାସନ ସମ୍ବନ୍ଧୀୟ ଅଭିଜ୍ଞତା ଆଲୋଚନା ମାଧ୍ୟମରେ ପ୍ରତିପାଦିତ କରିଥିଲେ। ତାଙ୍କର ଲୋକହିତକର କାର୍ଯ୍ୟ, ଦାନଶୀଳତା, ସରକାରଙ୍କ ଶାସନ କାର୍ଯ୍ୟରେ ଅଭିନିବେଶ ପାଇଁ ତାଙ୍କୁ ୧୮୮୯ ମସିହାରେ ରାଜା ବାହାଦୁର ପଦବୀରେ ଭୂଷିତ କରାଗଲା।

ରାଜା ବୈକୁଣ୍ଠନାଥ ବହୁ ଲୋକହିତକର କାର୍ଯ୍ୟ କରି ରାଜ ବଂଶର ମର୍ଯ୍ୟାଦା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ରାଜଭକ୍ତି ଓ ପ୍ରଜାବତ୍ସଳତାର ପରାକାଷ୍ଠା ପ୍ରତିପାଦିତ କରିଛନ୍ତି। ବହୁ ଲୋକହିତକର କାର୍ଯ୍ୟ ମଧ୍ୟରୁ ପାନୀୟ ଜଳ ଯୋଗାଣ ପାଇଁ ଶ୍ୟାମ ସାଗର ଫଣ୍ଡ୍, ଗୁଦବାଲି ଡାକ୍ତରଖାନାକୁ ଔଷଧ ଯୋଗାଇବା ପାଇଁ ରାଣୀ ଶ୍ରୀମତୀ ଫଣ୍ଡ୍, ବାଲେଶ୍ୱର ଜିଲ୍ଲା ସ୍କୁଲର ସଂସ୍କୃତିରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ର ପାଇଁ Balay ley ମେଡାଲ୍ ପ୍ରଦାନ, ବାଲେଶ୍ୱର ନଳକୂଳ ଲକ୍ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ, ଅନନ୍ତପୁରରେ ମିଃ ଇଃ ସ୍କୁଲ, ସୋରରେ Elliot Charitable Dispensary ଏବଂ ବାଲେଶ୍ୱରରେ ରାଣୀ ଶ୍ରୀମତୀ ଫିମେଲ୍ ଚେରିଟେବୁଲ୍ ଡିସ୍‌ପେନ୍‌ସାରୀ, ଜଳେଶ୍ୱରରେ Albert Victor Charitable Dispensary ସ୍ଥାପନ, ବାଲେଶ୍ୱରରେ ରାଣୀ ସାଗର ନାମରେ ଏକ ବିରାଟ ପୋଖରୀ ଖନନ ଉଲ୍ଲେଖନୀୟ।

ବଦାନ୍ୟତା, ସୌଜନ୍ୟତା, ସଚ୍ଚରିତ୍ର ଦେଶ ସେବା ଓ ଲୋକହିତକର କାର୍ଯ୍ୟ କରି ରାଜକୁଳର ମର୍ଯ୍ୟାଦା ବୃଦ୍ଧି କରିଥିଲେ। ବିଦ୍ୟାଳୟ, ମୁଦ୍ରାଯନ୍ତ୍ର ସଂସ୍ଥାପନ ନାନା ପ୍ରକାର ପୁସ୍ତକ, ପତ୍ରିକା ପ୍ରକାଶ କରି ଓଡ଼ିଆ ସାହିତ୍ୟର ବିଶେଷ ଉନ୍ନତି କରିଛନ୍ତି।

ବ୍ରିଟିଶ୍ ସରକାର ଦିଲ୍ଲୀ ଦରବାରରେ ବୈକୁଣ୍ଠନାଥଙ୍କୁ ସମ୍ମାନିତ କରିଥିଲେ। ଦିଲ୍ଲୀରୁ ପ୍ରତ୍ୟାଗମନ ପରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା। ଏ ସମ୍ପର୍କରେ ଇଂରାଜୀ, ବଙ୍ଗଳା, ସଂସ୍କୃତ ଓ ଓଡ଼ିଆରେ ଅନେକ ଅଭିନନ୍ଦନ ପତ୍ର ରହିଛି। ସେଥି ମଧ୍ୟରୁ ସଂସ୍କୃତରେ ଲିଖିତ ଅଭିନନ୍ଦନ ପତ୍ରରୁ କେତେ ଧାଡ଼ି ଏଠାରେ ଉଦ୍ଧାର କରାଗଲା।

ଯତ୍କୀର୍ତ୍ତୀ ବ୍ରତତିର୍ବିବେକ ସଲିଳୈରତ୍ୟର୍ଥ ସମ୍ବର୍ଦ୍ଧିତା।
ବିଦ୍ୱନ୍ମୋଦଫଳଂ ତନୋତି ବହୁଳଂ ଭକ୍ତ୍ୟେନ ପୁଷ୍ପାନ୍ୱିତା॥
ଶ୍ରୀମଦ୍‌ଭାରତ ଭୂପତେଃ ସୁବିଦିତା ଖ୍ୟାତିର୍ଯଦୀୟାଭବତ୍।
ବୈକୁଣ୍ଠେଶ ମନାରତଂ ସକୁରଣଃ କାମଂ ସରାମୋଽବତୁ॥

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ,
ଭୁବନେଶ୍ୱର।



ଭୁବନେଶ୍ୱର ରାଜଭବନରେ ମଣିପୁର ରାଜ୍ୟପାଳ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଓ ଓଡ଼ିଶା ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା

# ଭାଷା ଅନେକ ଦେଶ ଗୋଟିଏ

*ଶ୍ରୀମତୀ ବିତସ୍ତା ମହାପାତ୍ର*
*ଡକ୍ଟର ଅମୂଲ୍ୟ ମହାପାତ୍ର*

ଆମ ଦେଶର ନାମ ଭାରତବର୍ଷ । ଏହି ଦେଶରେ ଅନେକ ଭାଷାଭାଷୀର ଲୋକମାନେ ଅଛନ୍ତି । ଏହି ଭାରତବର୍ଷର ପ୍ରତ୍ୟେକ ପ୍ରଦେଶର ଭାଷା ଅଲଗା ଅଲଗା । ଯେମିତି ଆମ ଓଡ଼ିଶାର ଭାଷା ଓଡ଼ିଆ, ଆସାମର ଭାଷା ଆସାମୀ, ବଙ୍ଗର ଭାଷା ବଙ୍ଗଳା, ଆନ୍ଧ୍ରପ୍ରଦେଶର ଭାଷା ତେଲୁଗୁ, ତାମିଲନାଡୁର ଭାଷା ତାମିଲ, ମହାରାଷ୍ଟ୍ରର ଭାଷା ମରାଠୀ, ଗୁଜୁରାଟର ଭାଷା ଗୁଜୁରାଟୀ – ସେହିପରି ଅନ୍ୟ ପ୍ରଦେଶଗୁଡ଼ିକର ଭାଷା ଭିନ୍ନ ଭିନ୍ନ । ଆମ ଦେଶରେ ଏହିପରି ୧୭ ପ୍ରକାରର ଭାଷା ଅଛି । ଖାଲି ସେତିକି ନୁହେଁ, ପ୍ରତ୍ୟେକ ପ୍ରଦେଶରେ ମଧ୍ୟ ବିଭିନ୍ନ ଭାଷାର ଲୋକମାନେ ଅଛନ୍ତି । ଯେପରି କୋରାପୁଟର ଆଦିବାସୀଙ୍କ ପାଇଁ କେତେକ ଭାଷା ଅଛି, ସେହିପରି ଅନ୍ୟ କେତେ ଜାତିର ଲୋକଙ୍କ ପାଇଁ ମଧ୍ୟ ଅଲଗା ଅଲଗା ଭାଷା ରହିଛି ।

ଆମେ କୌଣସି ହାଟ ବା ମେଳା ବୁଲି ଗଲାବେଳେ ସେଠାରେ କେତେ ପ୍ରକାର ବେଶଭୂଷାର ଲୋକ ଦେଖିବାକୁ ପାଉଥାଉ । ସେମାନେ ସବୁ ବିଭିନ୍ନ ଭାଷାରେ କଥାବାର୍ତ୍ତା ହେବାର ମଧ୍ୟ ଶୁଣିଥିବ । ସିଏ ଯାହାର ଭାଷା ନିଜ ନିଜ ଲୋକଙ୍କ ମଧ୍ୟରେ କଥାବାର୍ତ୍ତା ହୋଇଥାନ୍ତି । ଯଦିଓ ସବୁ ଭାଷା ଆମେ ବୁଝିପାରୁ ନାହିଁ, ତଥାପି କେତେକ ଶବ୍ଦ ବୁଝିହେଲା ଭଳି ଲାଗେ । ସେମାନଙ୍କର ବ୍ୟବହାର, ଚାଲିଚଳଣି ଅଲଗା ଅଲଗା ମଧ୍ୟ ହୋଇଥାଏ । ସେମାନେ ତାଙ୍କର ନିଜ ନିଜର ରୁଚି ଅନୁସାରେ ଖାଇବା, ପିଇବା, ନାଚିବା, ଗାଇବା ପ୍ରଭୃତି କରିଥାନ୍ତି । ହାଟ ବା ମେଳାରେ ଅଲଗା ଅଲଗା ଭାଷାର ଲୋକମାନେ କଥାବାର୍ତ୍ତା ହେଉଥିଲେ ମଧ୍ୟ ଦୂରକୁ ସେହି ସମସ୍ତ ଭାଷା ଗୋଟିଏ ସ୍ୱର ଭଳି ଶୁଣାଯାଏ । ଠିକ୍ ସେହିପରି ଆମ ଦେଶରେ ବିଭିନ୍ନ ଭାଷାର ଲୋକମାନେ ରହିଥିଲେ ମଧ୍ୟ ସେମାନେ ସମସ୍ତେ କହନ୍ତି "ଆମେ ଭାରତବାସୀ" । ସେମାନେ ସମସ୍ତେ ବିଭିନ୍ନ ଜାତି, ଧର୍ମର ଲୋକ ହୋଇ ସୁଦ୍ଧା ଭାଇ ଭାଇ ମିଳିମିଶି, କାନ୍ଧକୁ କାନ୍ଧ ମିଳାଇ ସୁଖ ଦୁଃଖରେ ରହନ୍ତି ।

ଆମ ଭାରତର ସାହିତ୍ୟ, କଳା, ସଂସ୍କୃତି, ପର୍ବ ପର୍ବାଣୀ ସେହି ସମସ୍ତ ଭାଷାକୁ ନେଇ ଗଢ଼ି ଉଠିଛି । ଓଡ଼ିଶା ଲୋକଙ୍କ ପର୍ବ ପର୍ବାଣୀ ମହାରାଷ୍ଟ୍ରୀୟ ଲୋକଙ୍କଠାରୁ ଭିନ୍ନ । ଶିବ ଉପାସକର ଭକ୍ତ ତ ଅନ୍ୟ କେତେ ଉପାସକର ଭକ୍ତ । ତଥାପି ସମସ୍ତଙ୍କର ଲକ୍ଷ୍ୟ ଏକ । ଯେହେତୁ ସେହି ସମସ୍ତ ପର୍ବ ପର୍ବାଣୀ ଭିନ୍ନ ଧରଣର ହୋଇଥିଲେ ମଧ୍ୟ ଉଦ୍ଦେଶ୍ୟ ପ୍ରାୟ ସମାନ ହୋଇଥାଏ । ସମସ୍ତେ ଏକ ଆନନ୍ଦ ଉତ୍ସବ ମଧ୍ୟରେ ତାହା ପାଳନ କରିଥାନ୍ତି । ସେହିପରି ଭିନ୍ନ ଭାଷାଭାଷୀ ପ୍ରଦେଶର ଲୋକମାନେ ନିଜ ନିଜର ବିଧିରେ ପୂଜା କରୁଥିଲେ ମଧ୍ୟ ସମସ୍ତଙ୍କର ଆରାଧ୍ୟ ଦେବତା ଏକ ସେହି ଈଶ୍ୱର । ପ୍ରତ୍ୟେକ ଧର୍ମ ଦେବତା ଈଶ୍ୱରଙ୍କର ଭିନ୍ନ ଭିନ୍ନ ରୂପ ମାତ୍ର । ସେହିପରି ବିଭିନ୍ନ ଭାଷା ମଧ୍ୟରେ ସାମଞ୍ଜସ୍ୟ ପ୍ରକାର ଦେଖିବାକୁ ମିଳିଥାଏ । ଯେପରି ବଙ୍ଗ ଭାଷା ସହିତ ଆସାମୀ ଭାଷାର ଓ ବଙ୍ଗ, ଆସାମୀ ସହିତ ଓଡ଼ିଆ ଭାଷାର ସାମଞ୍ଜସ୍ୟ ରହିଛି । ସେହିପରି କେତେକାଂଶରେ ତେଲୁଗୁ ଭାଷା ସହିତ ତାମିଲ ଭାଷା ଓ ତାମିଲ ଭାଷା ସହିତ ମାଲାୟାଲାମ୍‌ର ସମ୍ପର୍କ ରହିଥାଏ । ହିନ୍ଦୀ ସହିତ ପଞ୍ଜାବୀ ଓ ମରାଠୀ ଭାଷାର ସାମଞ୍ଜସ୍ୟ ଦେଖିବାକୁ ମିଳିଥାଏ । ଏହିପରି କେତେକ ଭାଷାଭାଷୀ ଲୋକଙ୍କ ମଧ୍ୟରେ ତାଙ୍କର ସଂସ୍କୃତି ପରମ୍ପରାର ସମାନତା ଦେଖିବାକୁ ମିଳିଥାଏ । ଯେପରି ଓଡ଼ିଆମାନଙ୍କ ପୂଜାପର୍ବ, ଉପାସନା ସହିତ ବଙ୍ଗାଳୀମାନଙ୍କ ପୂଜାପର୍ବ, ଉପାସନାରେ ସମାନତା ରହିଥାଏ । ଗୁଜୁରାଟୀମାନଙ୍କ ନୀତିନିୟମ, ଚାଲିଚଳଣି ସହିତ ମରାଠୀ ଲୋକଙ୍କର ଆଚାର, ବ୍ୟବହାର ଓ ସଂସ୍କୃତିର ମେଳ ରହିଥିବାର ଦେଖାଯାଏ । ବିଭିନ୍ନ ଭାଷାର ଲୋକମାନଙ୍କ ମଧ୍ୟରେ ବିବାହ ଓ ବନ୍ଧୁତା ସ୍ଥାପନ ହେଉଛି । ଏହାଦ୍ୱାରା ଦେଶରେ ଜାତୀୟତା ଓ ଏକତା ବଢ଼ିବାରେ ସାହାଯ୍ୟ କରୁଛି । ଭିନ୍ନ ଭିନ୍ନ ଭାଷାର ଲୋକଙ୍କ ମଧ୍ୟରେ ଚିଠିପତ୍ର ଦେବାନେବା ହେତୁ ବନ୍ଧୁତା ସୃଷ୍ଟି ହୋଇ ପାରୁଛି ।

ଆମେ ସମସ୍ତେ ଭାରତମାତାର ସନ୍ତାନ । ତାହାରି କୋଳରେ ଆମେ ବଢ଼ୁଛୁ । ଯଦିବା ଆମର ଭାଷା ଭିନ୍ନ ଭିନ୍ନ, ମାତ୍ର ଆମର ଲକ୍ଷ୍ୟ ଗୋଟିଏ । ଆମେ ସମସ୍ତେ ଦେଶର ଉନ୍ନତି ଚାହୁଁ । ଦେଶର ଉନ୍ନତି ଆମର ଉନ୍ନତି । ଏଥିପାଇଁ ଅନେକ ବାଧାବିଘ୍ନ ଆସିଥାଏ, ମାତ୍ର ସେଗୁଡ଼ିକୁ ଆମେ ଆଦୌ ଖାତିର ନକରି ଭାରତମାତାର ସେବାରେ ଲାଗି ପଡ଼ିଥାଉ । ଆମେ ଭାରତମାତାର ବିକାଶ ପାଇଁ ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇଥାଉ । ଆମର ଏହି ଭାରତ ଦେଶକୁ ସ୍ୱାଧୀନ କରିବା ପାଇଁ କେବଳ ଗୋଟିଏ ଭାଷା ବା ପ୍ରଦେଶର ଲୋକମାନେ ଲଢ଼ିଥିଲେ ତା ନୁହେଁ, ସମସ୍ତ ଭାରତବର୍ଷର ବିଭିନ୍ନ ପ୍ରଦେଶର ବିଭିନ୍ନ ଭାଷାଭାଷୀ ଲୋକେ ନିଜ ଜୀବନର ସମସ୍ତ ସୁଖ, ଶାନ୍ତିକୁ ପାଦରେ ଦଳି, ଜୀବନ

# ନୀଳକଣ୍ଠଙ୍କ ଦୃଷ୍ଟିରେ 'ସମାଜ' ଓ 'ବ୍ୟକ୍ତି'

ଡଃ ଚନ୍ଦ୍ରା ପଟ୍ଟନାୟକ

ପଣ୍ଡିତ ନୀଳକଣ୍ଠଙ୍କ ଦାର୍ଶନିକ ଚିନ୍ତନର ଏକ ବିଶିଷ୍ଟ ଦିଗ ହେଉଛି ଦର୍ଶନକୁ ସମାଜର ଭିତିଭୂମି ରୂପେ ଉପସ୍ଥାପିତ କରିବାର ସାହସିକ ପ୍ରୟାସ । ତାଙ୍କ ମତରେ ଭାରତୀୟ ପରମ୍ପରାରେ 'ସମାଜ' ଚେତନାର ଏକ ବିଶିଷ୍ଟ ଭୂମିକା ରହିଛି ଏବଂ ବଳିଷ୍ଠ ଯୁକ୍ତି ଓ ନିରପେକ୍ଷ ବିଶ୍ଳେଷଣ ଦ୍ୱାରା ଏହାକୁ ସେ 'ଆର୍ଯ୍ୟ ଜୀବନ' ଓ "ଶ୍ରୀମଦ୍ ଭଗବଦ୍ ଗୀତା"ର ଭାଷ୍ୟ ପ୍ରଭୃତି ଗ୍ରନ୍ଥରେ ଉପସ୍ଥାପିତ କରିଛନ୍ତି । ସେ ଦର୍ଶାଇଛନ୍ତି ଯେ ଗୀତା ଧର୍ମ ଓ ଆର୍ଯ୍ୟ ଧର୍ମରେ 'ଦର୍ଶନ' ତଥା 'ଧର୍ମ'ର ପ୍ରକୃତ ଅର୍ଥ ଏହି 'ସମାଜ' ଚେତନା ଉପରେ ହିଁ ପର୍ଯ୍ୟବସିତ ଓ ଏହି ସମାଜ ଚେତନାରେ 'ବ୍ୟକ୍ତି' ଓ 'ସମାଜ' ଦୁଇଟି ପରସ୍ପର-ବିରୋଧୀ ପ୍ରତ୍ୟୟ ନୁହେଁ ବରଂ ଉଭୟ ପ୍ରତ୍ୟୟ ପରସ୍ପର ଉପରେ ନିର୍ଭରଶୀଳ । ଭାରତୀୟ ଦର୍ଶନରେ 'ବ୍ୟକ୍ତି' ଓ 'ସମାଜ'କୁ କେନ୍ଦ୍ର କରି 'ବ୍ୟକ୍ତିବାଦ' ଓ 'ସମାଜବାଦ' ନାମକ ଦୁଇଟି ପରସ୍ପର ବିରୋଧୀ ବିଚାରଧାରା ଗଠନ କରାଯାଇ ନାହିଁ ବରଂ ଏହି ଦ୍ୱନ୍ଦ୍ୱର ଏକ ସାବଲୀଳ ଓ ସହଜ ସମାଧାନ ଉପସ୍ଥାପିତ କରାଯାଇଛି । 'ସମାଜ' ଓ 'ବ୍ୟକ୍ତି' ଏହି ଦୁଇଟି ପ୍ରତ୍ୟୟ ମଧ୍ୟରେ କି ପ୍ରକାର ସମ୍ପର୍କ ଥାଇପାରେ ତାହାର ଏକ ଗଭୀର ବିଶ୍ଳେଷଣ କରି ସାମାଜିକ ଦର୍ଶନକୁ ପଣ୍ଡିତ ନୀଳକଣ୍ଠ ଏକ ନୂତନ ଦିଗ୍‌ଦର୍ଶନ ଦେଇ ପାଇଛନ୍ତି । ଏ ସମ୍ବନ୍ଧରେ ତାଙ୍କର ଚିନ୍ତାଧାରା ଯେପରି ଅନବଦ୍ୟ ସେହିପରି ଯୁଗୋପଯୋଗୀ ମଧ୍ୟ । ପଣ୍ଡିତ ନୀଳକଣ୍ଠଙ୍କର ଦାର୍ଶନିକ ଚିନ୍ତନର ଏହି ବୈଶିଷ୍ଟ୍ୟ ପ୍ରତି ବିସ୍ତୃତ ଆଲୋକପାତ କରିବା ହିଁ ଏହି ପ୍ରବନ୍ଧର ମୁଖ୍ୟ ଲକ୍ଷ୍ୟ ।

ଦର୍ଶନ ଶବ୍ଦଟିର ବ୍ୟାଖ୍ୟା କରି ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି – "ଦର୍ଶନ ଶବ୍ଦର ପାରିଭାଷିକ ବ୍ୟୁତ୍ପତ୍ତି ଯାହା ହେଉ, କଥାଟିର ଅର୍ଥ ହେଉଛି 'ଦେଖିବା' । ଏଇ ଦେଖିବା ବୋଇଲେ ବିଶ୍ୱ ସମ୍ପର୍କରେ ବ୍ୟକ୍ତିକୁ ଦେଖିବା । ବିଶ୍ୱ ସମ୍ପର୍କରେ ବ୍ୟକ୍ତିକୁ ଦେଖିବା ସଙ୍ଗତି କେଉଁଠାରେ ? ମାନବ ପାଇଁ ସେ ସଙ୍ଗତିଟି ହେଉଛି ସମାଜ ସମ୍ପର୍କରେ ନିଜକୁ ଦେଖିବା ।"[1] ଏହି ଉକ୍ତିଟିରୁ ଏହା ସ୍ପଷ୍ଟ ଯେ ତାଙ୍କ ମତରେ 'ସମାଜ' ଓ 'ବ୍ୟକ୍ତି' ତଥା ଉଭୟଙ୍କ ସମ୍ପର୍କର ଅନୁଶୀଳନ ବିନା ଦର୍ଶନର କୌଣସି ମହତ୍ତ୍ୱ ନାହିଁ । ଠିକ୍ ସେହିପରି, 'ଧର୍ମ' ଶବ୍ଦର ବିଶ୍ଳେଷଣ କରି ପଣ୍ଡିତ ନୀଳକଣ୍ଠ କହିଛନ୍ତି – "ଧର୍ମ ଶବ୍ଦ ଧୃ ଧାତୁ (ଧାରଣ କରିବାରୁ) ବାହାରିଛି । ଧର୍ମ ସମସ୍ତ ପ୍ରଜାଙ୍କୁ ଧାରଣ କରିଛି । .... ଏହି ଧର୍ମ ହିଁ ତେଣୁ ଧାରଣ ବା ବନ୍ଧନ । ଏହା କ୍ଷୟ ହେଲେ ମାଧ୍ୟାକର୍ଷଣ ବ୍ୟତୀତ ଆକାଶରେ ସୂର୍ଯ୍ୟାଦି ଜ୍ୟୋତିଷ୍କମାନଙ୍କର ବା କର୍ଣ୍ଣଧାର ବ୍ୟତୀତ ସମୁଦ୍ରରେ ଜାହାଜର ଯେ ଅବସ୍ଥା ହେବାର କଥା, ଜଗତର ତଥା ସମାଜର ସେଇ ଅବସ୍ଥା ହେବ । ଏଠାରେ ପ୍ରଜା ଶବ୍ଦ ମାନବ-ସମାଜ ଅର୍ଥରେ ହୁଏତ ପ୍ରସଙ୍ଗତଃ ପ୍ରଯୁକ୍ତ ହୋଇଛି ।"[2] ତେଣୁ ତାଙ୍କ ମତରେ ଧର୍ମ ହେଉଛି ସମୂହ ବିକାଶର ଧାରଣା ।

'ଧର୍ମ' ଓ 'ଦର୍ଶନ' ସମ୍ବନ୍ଧରେ ଉପରୋକ୍ତ ଦୁଇଟି ଉକ୍ତିରୁ ଏହା ସ୍ପଷ୍ଟ ଯେ ପଣ୍ଡିତ ନୀଳକଣ୍ଠ 'ଧର୍ମ' ବା 'ଦର୍ଶନ'କୁ ଅତିମାନବୀୟ ସୂକ୍ଷ୍ମ ତାତ୍ତ୍ୱିକ ଚିନ୍ତା ବୋଲି ପ୍ରତିପାଦିତ ନ କରି ତାହାକୁ ସମାଜାଭିମୁଖୀ ମାନବୀୟ ତତ୍ତ୍ୱ ବୋଲି ଦର୍ଶାଇବାକୁ ଚାହିଁଛନ୍ତି । ଅନେକ ଦାର୍ଶନିକ ଦର୍ଶନକୁ ମାନବାତୀତ ସୂକ୍ଷ୍ମତର ତତ୍ତ୍ୱ ବୋଲି ଦର୍ଶାଇଛନ୍ତି ଓ ଏହା ଫଳରେ ଦର୍ଶନକୁ ମାନବ-ସମାଜଠାରୁ ଦୂରେଇ ନେଇଛନ୍ତି । ଏପରି ଦାର୍ଶନିକ ଚିନ୍ତନର ପ୍ରଭାବ ସମାଜ ଉପରେ ପଡେ ନାହିଁ ଓ ଦର୍ଶନ ଏକ ସୂକ୍ଷ୍ମ ବୌଦ୍ଧିକ ଖେଳ (intellectual acrobatics) ରେ ପରିଣତ ହୁଏ । ପଣ୍ଡିତ ଜବାହରଲାଲ ନେହେରୁ ଯଥାର୍ଥରେ କହିଥିଲେ ଯେ ମଣିଷର ଲୋଡା ହେଉଛି 'ଜୀବନ୍ତ ଦର୍ଶନ' ବା "living philosophy".[3] ଏହି living philosophy ବା living truthର କଳ୍ପନା ପଣ୍ଡିତ ନୀଳକଣ୍ଠଙ୍କ ଦର୍ଶନରେ ପ୍ରକୃତରେ ଦେଖିବାକୁ ମିଳେ ।

ଠିକ୍ ସେହିପରି ଧର୍ମ ଶବ୍ଦର ଅର୍ଥ ମୋଗଲ ଓ ତତ୍‌ପରବର୍ତ୍ତୀ ଯୁଗରେ କାଳକ୍ରମେ ବିକୃତ ହୋଇ 'ଈଶ୍ୱର ସମ୍ବନ୍ଧୀୟ ଚିନ୍ତା' ବୋଲି ଅଭିହିତ କରାଯାଇଛି ଏବଂ 'ଧର୍ମ' ଶବ୍ଦଟିର ପରିବର୍ତ୍ତିତ ଅର୍ଥରୁ ଜାତ ହୋଇଛି ଧର୍ମାନ୍ଧତା, ଧର୍ମଭୀରୁତା, କୁସଂସ୍କାର ଓ ବିଶୃଙ୍ଖଳା । ତେଣୁ ପଣ୍ଡିତ ନୀଳକଣ୍ଠ 'ଦର୍ଶନ' ଓ 'ଧର୍ମ' ଶବ୍ଦର

ପ୍ରକୃତ ଅର୍ଥ ବିଶ୍ଳେଷଣ କରି ଏହି ଦୁଇଟି ପ୍ରତ୍ୟୟକୁ ସମାଜାଭିମୁଖୀ କରାଇବାର ପ୍ରୟାସ କରିଥିଲେ ଏବଂ ଆଧୁନିକ ବୌଦ୍ଧିକ ଜଗତରେ ଏକ ବିପ୍ଳବ ଆଣି ଭାରତୀୟ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବାର ପ୍ରଚେଷ୍ଟା କରିଥିଲେ । ଏହାର ପ୍ରଭାବ ଯଦି ଭାରତୀୟ ଚିନ୍ତାଧାରାରେ ଠିକେମାତ୍ର ପ୍ରତିଫଳିତ ହୁଅନ୍ତା ତେବେ ବର୍ତ୍ତମାନ ଯୁଗର ଭାରତର ଇତିହାସ ହୁଏତ ଅନ୍ୟ ଭାବରେ ଲେଖାଯାଇପାରନ୍ତା । ଏହି ପ୍ରକାର 'ସାମାଜିକ' ଚେତନା କେନ୍ଦ୍ରିକ ଦାର୍ଶନିକ ବିଚାରରେ ସମାଜ କ'ଣ ? ବ୍ୟକ୍ତି କ'ଣ ? ଓ ସମାଜ ଏବଂ ବ୍ୟକ୍ତି କି ପ୍ରକାର ଭାବରେ ସମ୍ବନ୍ଧିତ ? — ସେବୁ ପ୍ରଶ୍ନର ବିଚାର ନ କରିଲେ ପଣ୍ଡିତ ନୀଳକଣ୍ଠଙ୍କର ସାମାଜିକ ଦର୍ଶନର ପ୍ରକୃତ ମୂଲ୍ୟାୟନ ହୋଇପାରିବ ନାହିଁ ।

## ସମାଜ କ'ଣ ?

ତାଙ୍କ ମତରେ ସମାଜ ହେଉଛି ବ୍ୟକ୍ତିର ଆତ୍ମପ୍ରକାଶର କ୍ଷେତ୍ର । "ଏଇ ସମାଜ ହିଁ ମନୁଷ୍ୟର ସାଧନା କ୍ଷେତ୍ର । ମାନବ—କର୍ମର ଲୀଳା ଏହି ସମାଜ ମଧ୍ୟରେ । ସାମାଜିକ ମାନବର ପରସ୍ପର ସମ୍ବନ୍ଧରେ କର୍ମ ନିୟତ ହୁଏ" ।[୪] ଅର୍ଥାତ୍, ପଣ୍ଡିତ ନୀଳକଣ୍ଠଙ୍କ ମତରେ ମଣିଷ ଏକ ଏପରି ଜୀବ ଯାହାର ସ୍ଥିତି ସମ୍ବନ୍ଧରେ ସଚେତନ ହେବାର ପୃଷ୍ଠଭୂମି ହେଉଛି ସମାଜ । ପ୍ରକୃତିରେ ଯେପରି ପ୍ରତ୍ୟେକ ଜାଗତିକ ବସ୍ତୁ ଆତ୍ମପ୍ରକାଶ କରେ, ସେହିପରି ମାନବର ଆତ୍ମପ୍ରକାଶର କ୍ଷେତ୍ର ହେଉଛି ସମାଜ । ତାହାର ଜନ୍ମ ସମାଜରେ, ତାହାର ବ୍ୟକ୍ତିତ୍ୱର ବିକାଶ ସମାଜରେ ଓ ତାହାର ସାଧନା ମଧ୍ୟ ଏହି ସମାଜରେ । ତେଣୁ ମନୁଷ୍ୟର ଆଦର୍ଶ, ତାହାର ପରାର୍ଥ କର୍ମ, ତାହାର ପୁରୁଷାର୍ଥ କର୍ମ, ତାହାର ତପ, ଦାନ ସବୁ କିଛି ଏହି ସାମାଜିକ ବ୍ୟକ୍ତିତ୍ୱ ମାଧ୍ୟମରେ ହିଁ ପ୍ରକଟିତ ।

ସମାଜ ମାଧ୍ୟମରେ ମନୁଷ୍ୟ ଯେଉଁ କର୍ମ କରେ ତାହାକୁ ସାଧାରଣତଃ ଦୁଇ ଦିଗରୁ ବିଚାର କରାଯାଇପାରେ — ପ୍ରଥମତଃ କର୍ତ୍ତବ୍ୟ ଓ ଦ୍ୱିତୀୟତଃ ଦାବୀ । ନୀଳକଣ୍ଠଙ୍କ ମତରେ ସମାଜରେ ଚଳିବାକୁ ହେଲେ — "ପ୍ରତ୍ୟେକେ ନିଜେ ନିଜର ଯାହା ପାଇବାର ଅଛି, ତାହା ଦାବୀ କରି ଆଦାୟ କଲେ ସମାଜ ଚଳିବ" ।[୫] କିନ୍ତୁ ଦାବୀ ଯଦି ସୁସଂହତ ଭାବେ କରା ନ ଯାଏ ତେବେ ସମାଜର ସଂହତିରେ ବାଧା ପଡେ । ସମାଜରେ ପ୍ରତ୍ୟେକଙ୍କର ପ୍ରତ୍ୟେକଠାରେ ଦାବୀ ଅଛି ଓ ଏହିପରି ପରସ୍ପରଠାରୁ ଦାବୀ ଆଦାୟ ମାଧ୍ୟମରେ ସମସ୍ତେ ନିଜ ନିଜର ପ୍ରାପ୍ୟ ପାଉଥାଆନ୍ତି । ତେଣୁ ଦାବୀ କରିବା ସମାଜରେ ଏକ ଅଶୁଭ ଲକ୍ଷଣ ନୁହେଁ । ବରଂ ଦାବୀ ଆଦାୟ କରିବାରୁ ହିଁ କର୍ତ୍ତବ୍ୟ ସଚେତନତା ସୃଷ୍ଟି ହୁଏ । କିନ୍ତୁ ସମସ୍ତେ ଯଦି ଭାବିବେ 'ମୋର କେବଳ ପାଇବାର ଅଛି, କିନ୍ତୁ କିଛି ଦେବାର ନାହିଁ' ତେବେ ସମାଜରେ ବିଶୃଙ୍ଖଳା ସୃଷ୍ଟି ହେବ । ତେଣୁ ସମାଜର ପ୍ରଗତି ପାଇଁ ଦାବୀ ଓ ଅଧିକାର ଯେତିକି ପ୍ରୟୋଜନୀୟ, କର୍ତ୍ତବ୍ୟ ମଧ୍ୟ ସେତିକି ପ୍ରୟୋଜନୀୟ । ପ୍ରତ୍ୟେକେ ନିଜର କର୍ତ୍ତବ୍ୟ କରିଲେ ସେହି କର୍ତ୍ତବ୍ୟ ମାଧ୍ୟମରେ ଅନ୍ୟର ଦାବୀ ପୂରଣ ହୁଏ । ଦାବୀ ଓ କର୍ତ୍ତବ୍ୟ — ଏ ଦୁଇଟି ଧାରଣା ପରସ୍ପରର ପରିପୂରକ । "ଦୁଇଟିର ବ୍ୟାପ୍ତି ସମାଜରେ ଚିରନ୍ତନ । ମାତ୍ର ଅଧିକାର ଦୃଷ୍ଟିବଦ୍ଧ ସମାଜରେ ତ୍ୟାଗ ଧର୍ମ ବା କର୍ତ୍ତବ୍ୟ ଚୋଦନା ବିନା ଧ୍ୱଂସ ଅନିବାର୍ଯ୍ୟ । ........ ପୁଣି କେବଳ କର୍ତ୍ତବ୍ୟ—ମାତ୍ରର ଚୋଦନା ପ୍ରତିଷ୍ଠିତ ହେଲେ ସମାଜ ଜଡ ବସ୍ତୁର ସଂହତି ମାତ୍ରରେ ପରିଣତ ହେବାର କଥା । ଏହା ମାନବ ସମାଜର ପ୍ରକୃତି ନୁହେଁ । ବରଂ ଅଧିକାର ଦାବୀରେ ସ୍ୱେଚ୍ଛା ଅବଲମ୍ବନ କରିବା ମାନବର ପ୍ରକୃତି ଓ ତ୍ୟାଗ ବା କର୍ତ୍ତବ୍ୟ ସେଥିରେ ସଂଯମ । ଏହା ହିଁ ମାନବ ସମାଜ କହିଲେ ଚଳେ" ।[୬] ତେଣୁ ଏଥିରୁ ସ୍ପଷ୍ଟ ଯେ ସମାଜ ହେଉଛି ବ୍ୟକ୍ତି ତଥା ମଣିଷ ମଧ୍ୟରେ ଥିବା ଆପେକ୍ଷିକ ସମ୍ପର୍କର ନାମ । 'ସମାଜ' ମଣିଷ କର୍ମର ବିକାଶ ତଥା ଅଧିକାର ଓ ତ୍ୟାଗର ଆଦାନପ୍ରଦାନ ମାଧ୍ୟମରେ ଯଥାର୍ଥ ରୂପ ପାଏ । ପଣ୍ଡିତ ନୀଳକଣ୍ଠଙ୍କ 'ସମାଜ' ସମ୍ବନ୍ଧୀୟ ବିଶ୍ଳେଷଣ ଅତ୍ୟନ୍ତ ସାବଲୀଳ ଓ ସୁସଂହତ । ଭୋଗ ଓ ତ୍ୟାଗ, କର୍ତ୍ତବ୍ୟ ଓ ଅଧିକାର ମଧ୍ୟରେ ସେ ଯେଉଁ ସଙ୍ଗତି ଓ ସମନ୍ୱୟ ଦର୍ଶାଇଛନ୍ତି ତାହାର ଉଦାହରଣ ସାମାଜିକ ଦର୍ଶନରେ ବିଶେଷ ନାହିଁ । ଅନେକ ଦାର୍ଶନିକ ସମାଜକୁ ଏକ ସତ୍ତା ରୂପେ କଳ୍ପନା କରି ଏଥି ପାଇଁ କେବଳ ତ୍ୟାଗ କରିଯିବାକୁ ଉପଦେଶ ଦେଇଛନ୍ତି । ଏହି ପ୍ରକାର ବିଚାରଧାରାରେ ତ୍ୟାଗ ଓ କର୍ତ୍ତବ୍ୟକୁ ହିଁ ସମାଜରେ ମନୁଷ୍ୟର ଆତ୍ମବିକାଶର ପନ୍ଥା ବୋଲି ଧରି ନିଆଯାଏ । ତେଣୁ ଏହି ପ୍ରକାର 'ସମାଜ' କଳ୍ପନାରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ହୀନ ବୋଲି ପ୍ରତିପାଦିତ କରାଯାଇଛି । ପ୍ଲାଟୋଙ୍କ 'ଆଦର୍ଶ ରାଷ୍ଟ୍ର' ସମ୍ବନ୍ଧୀୟ ତଥ୍ୟ ଏହି ପ୍ରକାର ବିଚାରଧାରା ଉପରେ ପ୍ରତିଷ୍ଠିତ । ଏଠାରେ ସମାଜ ଅତିମାନବୀୟ କଳ୍ପନା ଓ ଏହି ପ୍ରକାର ସମାଜର ଚିନ୍ତା ଏକ ସ୍ୱପ୍ନବିଳାସ ମାତ୍ର । ପଣ୍ଡିତ ନୀଳକଣ୍ଠଙ୍କ ମତରେ ଏ ପ୍ରକାର ସମାଜ ସ୍ୱାଭାବିକ ନୁହେଁ । କାରଣ "ଏ ପ୍ରକାର ତ୍ୟାଗର ଲଗାମ ସ୍ଥାୟୀ ନୁହେଁ । ତାହା ମଧ୍ୟ ଇତିହାସରେ ହୋଇନାହିଁ" ।[୭] ପ୍ଲାଟୋ ମଧ୍ୟ ଏହି ସତ୍ୟକୁ ଉପଲବ୍ଧି କରି ପରେ କହିଥିଲେ ଯେ ତାଙ୍କର କଳ୍ପିତ ଆଦର୍ଶ ରାଷ୍ଟ୍ର ଏକ ଆଦର୍ଶ ମାତ୍ର — "ଏହାର ସ୍ଥିତି ଭାଷା ରାଜ୍ୟରେ ଅଛି କିନ୍ତୁ ପୃଥିବୀରେ ନାହିଁ" ।[୮] ଏଥିରୁ ସୁସ୍ପଷ୍ଟ ଯେ ପଣ୍ଡିତ ନୀଳକଣ୍ଠଙ୍କର ବିଶ୍ଳେଷଣ କେତେ ସୁସଙ୍ଗତ । ଏହା ବାସ୍ତବବାଦୀ । ତାଙ୍କର 'ସମାଜ' ଚେତନା ଭୋଗ—ତ୍ୟାଗ, ଅଧିକାର—କର୍ତ୍ତବ୍ୟ, ପାଇବା ଓ ଦେବାର ସମନ୍ୱୟ ଉପରେ ହିଁ ପର୍ଯ୍ୟବସିତ ।

## ବ୍ୟକ୍ତି ଓ ସମାଜ

ସାଧନାର କ୍ଷେତ୍ର ସମାଜ ହେଲେ ହେଁ 'ବ୍ୟକ୍ତି' କଳ୍ପନା ବିନା ମଣିଷ ସମାଜର ଅର୍ଥ ନାହିଁ । ବ୍ୟକ୍ତି ସତ୍ତା ବିନା ସମାଜ ଏକ ଶୂନ୍ୟ ଧାରଣା । ବିଖ୍ୟାତ ଦାର୍ଶନିକ ପ୍ଲାଟୋ ଯଥାର୍ଥରେ କହିଥିଲେ — "ରାଜ୍ୟ ବା ସମାଜ ଗଛ ବା ପଥରରୁ ସୃଷ୍ଟି ହୁଏ ନାହିଁ । ଏଥିରେ ବସବାସ କରୁଥିବା ବ୍ୟକ୍ତିମାନଙ୍କ ଚରିତ୍ରର ଏହା ପରିପ୍ରକାଶ ମାତ୍ର" ।[୯] ସମାଜ ଆମ କର୍ମର ଦର୍ପଣ । ଏହି ଚିନ୍ତାଧାରା ପଣ୍ଡିତ ନୀଳକଣ୍ଠଙ୍କ ଦର୍ଶନରେ ମଧ୍ୟ ପ୍ରତିଫଳିତ । ସେ ସ୍ପଷ୍ଟ ଭାବରେ କହିଛନ୍ତି — "ବ୍ୟକ୍ତି ସମଷ୍ଟିରେ ଲୀନ ନୁହେଁ କି ସମଷ୍ଟିରୁ ଏକା ବେଳକେ ସ୍ୱତନ୍ତ୍ର ନୁହେଁ" ।[୧୦] 'ବ୍ୟକ୍ତି' ଚେତନାରେ ସ୍ୱାତନ୍ତ୍ର୍ୟ ଓ ସମଷ୍ଟି ଉଭୟର ପ୍ରଭାବ ପରିଲକ୍ଷିତ ହୁଏ । କିନ୍ତୁ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ କେଉଁଠି ଓ ସମଷ୍ଟି କେଉଁଠି ? ଏହାର ଉତ୍ତର ସେ ଏକ ସରଳ ଉଦାହରଣ ଦ୍ୱାରା ବ୍ୟାଖ୍ୟା କରି ବୁଝାଇଛନ୍ତି । ପୃଥିବୀରେ ଯେତେ ପତ୍ର ଅଛି ସମସ୍ତେ ସମସ୍ତଙ୍କଠାରୁ ଭିନ୍ନ କାରଣ ସମସ୍ତଙ୍କର ଭିନ୍ନ ଭିନ୍ନ ସତ୍ତା ଅଛି । କିନ୍ତୁ ଆମେ ସମଷ୍ଟି ଦୃଷ୍ଟିକୋଣରୁ ଏହି ସ୍ୱତନ୍ତ୍ର ସତ୍ତାମାନଙ୍କୁ 'ପତ୍ର' ବୋଲି କହିଥାଉ । ଛୋଟ ପତ୍ର, ବଡ ପତ୍ର, ଗୋଲ ପତ୍ର, ଲମ୍ବା ପତ୍ର ସମସ୍ତେ ଭିନ୍ନ କିନ୍ତୁ ସବୁକୁ 'ପତ୍ର' ବୋଲି କୁହାଯାଇଥାଏ । ଠିକ୍ ସେହିପରି 'ବ୍ୟକ୍ତି'ର ମଧ୍ୟ ସ୍ୱତନ୍ତ୍ର ସତ୍ତା ଅଛି । ମନୁଷ୍ୟର ନିଜସ୍ୱ ତାର ପରିଚାୟକ ହେଉଛି କର୍ମ । କର୍ମ ହିଁ ବ୍ୟକ୍ତିର ଆତ୍ମପ୍ରକାଶର ପରିପନ୍ଥା । ଅଥଚ, ବ୍ୟକ୍ତି "କର୍ମର ମଧ୍ୟ ବୁବୁଲା ନୁହେଁ" । କର୍ମ ମଧ୍ୟରେ ବ୍ୟକ୍ତିର ସତ୍ତା ଖୋଜି ମିଳେ ନାହିଁ ।

ବରଂ ଏହା "ମୁଁ" ପ୍ରତ୍ୟୟ ଉପରେ ନିର୍ଭରଶୀଳ । ଏହି "ମୁଁ" ବିନା ବ୍ୟକ୍ତି କର୍ମର ଅର୍ଥ ନାହିଁ । ବ୍ୟକ୍ତିର ସବୁ କର୍ମରେ "ମୁଁ" ଅଛି ଅଥଚ ଏହି "ମୁଁ" ସବୁ କର୍ମଠାରୁ ଭିନ୍ନ । "ଏଇ ଯେ 'ମୁଁ'ର ଅସ୍ମି–ତ୍ୱ ବା ଅସ୍ତିତ୍ୱର ପ୍ରତୀତି ହେଲା ମୋର ବ୍ୟକ୍ତିତ୍ୱ"[୧୧] କିନ୍ତୁ କୌଣସି ବ୍ୟକ୍ତିର କର୍ମ କେବଳ 'ମୁଁ'ତ୍ୱ ଦ୍ୱାରା ବିଚାର କରାଯାଏ ନାହିଁ । ପ୍ରତ୍ୟେକ ବ୍ୟକ୍ତିର କର୍ମ ସମାଜ ତଥା ବିଶ୍ୱର ଅନ୍ୟାନ୍ୟ ବ୍ୟକ୍ତି ଓ ବସ୍ତୁ ସହିତ ସମ୍ବନ୍ଧିତ । ବ୍ୟକ୍ତି କର୍ମର ଶୁଭାଶୁଭ ବିଚାର ତାହାର ଅନ୍ୟ ବ୍ୟକ୍ତି ବା ବସ୍ତୁ ପ୍ରତି କି ପ୍ରକାର ପ୍ରଭାବ ହେଉଛି ତାହାଦ୍ୱାରା ହିଁ ବିଚାର କରାଯାଏ । ତେଣୁ 'ବ୍ୟକ୍ତି'ର ବିଶ୍ଳେଷଣ କର୍ମ ବିନା ଅସମ୍ଭବ ; ପୁଣି କର୍ମର ବିଚାର ସମାଜର ପୃଷ୍ଠଭୂମିରେ ହିଁ କରାଯାଇଥାଏ ।

ପଣ୍ଡିତ ନୀଳକଣ୍ଠଙ୍କ ମତରେ ଜୀବନ ଗୋଟିଏ ନୀତି । ଏହା ଭୁଲି ଆୟୁ ବିବର୍ତ୍ତନର ମଧ୍ୟ ଦେଇ ଗତି କରେ । ଏହି ନୀତି ଅନ୍ତର୍ନିହିତ ଶକ୍ତି ରୂପରେ ମଧ୍ୟ ରହିଛି । ପାରିପାର୍ଶ୍ୱ ସମ୍ପର୍କ, ସଂସର୍ଗ ଓ ପରିବର୍ତ୍ତନ ନେଇ ଏହାର ବିକାଶ ଘଟେ । ତେଣୁ ଜନ୍ମରୁ ମରଣ ପର୍ଯ୍ୟନ୍ତ ଏହି ଧାରାବାହିକ କ୍ରିୟା ଚାଲିଛି । ନଚେତ୍ ଜୀବନର ସ୍ଥିତି ରହିବ ନାହିଁ । ବୃକ୍ଷଟିଏ ଯାହାପରି ବୃକ୍ଷର ଯେମିତି ଆଦର୍ଶ ସେହିପରି ପୂର୍ଣ୍ଣତା ଲାଭ କରିବା ମଣିଷ ଜୀବନର ଆଦର୍ଶ ଏବଂ ସେହି ପୂର୍ଣ୍ଣତା ଆସେ ସମାଜ ମାଧ୍ୟମରେ । ବୃକ୍ଷର ବୃଦ୍ଧି ଯେପରି ସୂର୍ଯ୍ୟର କିରଣ ଦେବା କର୍ମ, ବାୟୁର ଅଙ୍ଗାର ଉତ୍ପାଦ କର୍ମ, ପତ୍ରର ସେସବୁକୁ ଏକତ୍ରିତ କରିବା କର୍ମ ପଦ୍ଧତି ଉପରେ ନିର୍ଭର କରେ, ସେହିପରି ବ୍ୟକ୍ତିର ବିକାଶ ସମାଜର ଅନ୍ୟାନ୍ୟ ବ୍ୟକ୍ତିର କର୍ମ ଉପରେ ନିର୍ଭରଶୀଳ । କର୍ମର ଆଦାନପ୍ରଦାନ ବିନା 'ବ୍ୟକ୍ତି' ଧର୍ମର ପ୍ରକାଶ ହୁଏ ନାହିଁ । ତେଣୁ କର୍ମ ମାଧ୍ୟମରେ ବ୍ୟକ୍ତି ଓ ବ୍ୟକ୍ତି, ସମାଜ ଓ ବ୍ୟକ୍ତି ତଥା ବିଶ୍ୱ ଓ ବ୍ୟକ୍ତି ବନ୍ଧା ହୋଇ ରହିଛନ୍ତି । ତେଣୁ କର୍ମ ହିଁ ସମାଜର ଧାରୟିତ୍ରୀ ବା ବନ୍ଧନ ।

କିନ୍ତୁ ଏପରି ବିଶ୍ଳେଷଣକୁ ଗ୍ରହଣ କରିବା ପୂର୍ବରୁ ମନରେ ପ୍ରଶ୍ନ ଉଠିପାରେ ଯେ ସମାଜରେ ବ୍ୟକ୍ତି କର୍ମର ଆଦାନ ପ୍ରଦାନ ଦ୍ୱାରା ସମଷ୍ଟି ଶୃଙ୍ଖଳିତ ନ ହୋଇ ବିଶୃଙ୍ଖଳିତ ମଧ୍ୟ ହୋଇପାରେ । ସମସ୍ତେ ଯଦି ନିଜ ନିଜ ସ୍ୱାର୍ଥ ପ୍ରତି ଦୃଷ୍ଟି ରଖି କର୍ମକୁ ବିଚାର କରନ୍ତି ତେବେ ସମାଜରେ ଶୃଙ୍ଖଳା ନଷ୍ଟ ହେବାର ଯଥେଷ୍ଟ ସମ୍ଭାବନା ରହିଛି । ଏ କ୍ଷେତ୍ରରେ କର୍ମକୁ ସମାଜର ଧାରୟିତ୍ରୀ ବୋଲି କୁହାଯାଇ ପାରିବ କି ? ପଣ୍ଡିତ ନୀଳକଣ୍ଠ ସମାଜ ଚେତନାକୁ ପୂର୍ଣ୍ଣାଙ୍ଗ ରୂପ ଦେବା ପାଇଁ 'ଯଜ୍ଞ' ଓ ସ୍ୱଧର୍ମ – ଏ ଦୁଇଟି ପ୍ରତ୍ୟୟର ସାହାଯ୍ୟ ନେଇଛନ୍ତି ।

ନୀଳକଣ୍ଠଙ୍କ ମତରେ କାମନା ପ୍ରବୃତ୍ତ ହୋଇ କର୍ମ କରିଲେ ହୁଏତ ବ୍ୟକ୍ତିର ମଙ୍ଗଳ ହୋଇପାରେ କିନ୍ତୁ ଅନ୍ୟର ମଙ୍ଗଳ ବାଧାପ୍ରାପ୍ତ ହୁଏ । ତେଣୁ ଆତ୍ମୋତ୍ସର୍ଗ ସାମାଜିକ ଜୀବନର ଏକ ଅଙ୍ଗ ଏବଂ ତାଙ୍କ ମତରେ ଆତ୍ମୋତ୍ସର୍ଗହିଁ 'ଯଜ୍ଞ'ର ମୂଳମନ୍ତ୍ର । ସେ ଦର୍ଶାଇଛନ୍ତି ଯେ ବିଶ୍ୱରେ ନିୟତ କର୍ମ ମାଧ୍ୟମରେ ସମସ୍ତେ ତ୍ୟାଗ କରି ଚାଲିଛନ୍ତି । "ଯେତେ ତ୍ୟାଗ, ବ୍ୟକ୍ତିତ୍ୱ ସେତେ [illegible] । ଏହି ତ୍ୟାଗ ହିଁ ସ୍ୱର୍ଗ ବା ଅମୃତ ଉତ୍ସର୍ଗ – ଯଜ୍ଞ । [illegible] ହିଁ ଯଜ୍ଞ । ଲୋକ ସଂଗ୍ରହର ଉଦ୍ଦେଶ୍ୟ ଛାଡ଼ି ଦାନ ବା [illegible] ଯଜ୍ଞରେ ହେଲା ଯଜ୍ଞ"[୧୨] ସାମାଜିକ ମାନବର ସାଧନା [illegible] ବୋଲୁଥିବାରୁ ସମାଜର ମଙ୍ଗଳ ପାଇଁ ନିୟତ କର୍ମ [illegible] ହିଁ ଯଜ୍ଞ । ନିଜ କାମନା ପ୍ରତି ଦୃଷ୍ଟି ନ ଦେଇ ନିଜର କର୍ତ୍ତବ୍ୟ ବା ସମାଜ ଲାଗି ଯାହା ଦାନ କରିବାକୁ ହେବ" ଏହି ପ୍ରତି ଦୃଷ୍ଟି ଦେବା ହିଁ ମନୁଷ୍ୟର ଆଦର୍ଶ । ଏହାର ଅନ୍ୟ ନାମ ସ୍ୱଧର୍ମ ସାଧନା । ଏଠାରେ 'ଯଜ୍ଞ' ଶବ୍ଦର ବ୍ୟାଖ୍ୟା ସମ୍ପୂର୍ଣ୍ଣ ଦାର୍ଶନିକ । 'ଯଜ୍ଞ' ଶବ୍ଦର ଅର୍ଥ କେତେକ ଉପଚାର ପାଳନ କରି ପଶୁବଳି ଦେବା ନୁହେଁ । ବରଂ ଏହା ନିଜର ପଶୁ ପ୍ରବୃତ୍ତି ବା କାମନାର ବଳି । ଏଥିରୁ ପଣ୍ଡିତ ନୀଳକଣ୍ଠଙ୍କ ବିଶ୍ଳେଷଣାତ୍ମକ ଓ ଯୁକ୍ତିସିଦ୍ଧ ଦାର୍ଶନିକ ଚିନ୍ତନର ସ୍ପଷ୍ଟ ପରିଚୟ ମିଳେ ।

ଅନ୍ୟ ଦିଗରେ 'ସ୍ୱଧର୍ମ' ଶବ୍ଦଟିର ବିଶ୍ଳେଷଣ ମଧ୍ୟ ସେହିପରି ଅତୁଳନୀୟ ଏବଂ ଅନବଦ୍ୟ । ଏହି ଶବ୍ଦଟିର ବ୍ୟାଖ୍ୟା କରି ସେ ବୁଝାଇଛନ୍ତି ଯେ 'ସ୍ୱଧର୍ମ' ହେଉଛି "ସ୍ୱଭାବ ନିୟତ କର୍ମ" । "ଯଜ୍ଞ କର୍ମ"ରେ ଆତ୍ମୋତ୍ସର୍ଗ ଓ କର୍ତ୍ତବ୍ୟର କଥା କୁହାଯାଇଛି । କେବଳ ଆତ୍ମୋତ୍ସର୍ଗ ଉପରେ ଜୋର ଦେଲେ ସେ ପ୍ରକାର ସମାଜ ଏକ ଅବାସ୍ତବତାରେ ପରିଣତ ହୁଏ । ସମାଜରେ ସମସ୍ତେ ଖାଲି କର୍ତ୍ତବ୍ୟ କରିବେ ବୋଲି କହିଦେଲେ ଶୃଙ୍ଖଳା ଆସେନାହିଁ । ତାଙ୍କ ଭାଷାରେ – "ସମସ୍ତେ ଖାଲି କର୍ତ୍ତବ୍ୟ କରିବି କରିବି ବୋଲି ମାତି ବସିଲେ କର୍ତ୍ତବ୍ୟ କରିବାର ସୁବିଧା ହିଁ ମିଳିବ ନାହିଁ"[୧୩] ତେଣୁ ବିଶ୍ୱରେ ତଥା ସମାଜରେ ଯାହାର ଯେଉଁ ନିର୍ଦ୍ଦିଷ୍ଟ କର୍ମ ବା ସ୍ୱଭାବ ନିୟତ କର୍ମ ତାହା ପାଳନ କରିବାର ଅର୍ଥ ହେଉଛି ସ୍ୱଧର୍ମ ପାଳନ କରିବା । ସୂର୍ଯ୍ୟର ସ୍ୱଭାବ ନିୟତ କର୍ମ, ବୃକ୍ଷ ବା ପର୍ବତଠାରୁ ଭିନ୍ନ । ତେଣୁ ପ୍ରତ୍ୟେକ ବସ୍ତୁ ବା ବ୍ୟକ୍ତିର ବିକାଶ ସ୍ୱଭାବରେ ତାହାର କର୍ତ୍ତବ୍ୟ ବା କର୍ମ ନିୟନ୍ତ୍ରିତ । ସୂର୍ଯ୍ୟର ସ୍ୱଭାବ ନିୟତ ବିକାଶ କିରଣ ପ୍ରଦାନ କରିବାରେ, ତେଣୁ ଏହା ତାହାର ସ୍ୱଧର୍ମ । ମନୁଷ୍ୟ ବିଶ୍ୱର ଏକ ଅଂଶ ହେଲେ ହେଁ ତାହାର ସ୍ଥାନ ସ୍ୱତନ୍ତ୍ର । ତେଣୁ ମନୁଷ୍ୟ କ୍ଷେତ୍ରରେ ସ୍ୱଧର୍ମ ହେଉଛି "ନିଜ ପରିସ୍ଥିତିରେ ଯେଉଁ କର୍ମର ଅଧିକାରୀ, ଯେଉଁ କର୍ମକୁ ଯୋଗ୍ୟ, ସେଇ କର୍ମ ବା 'ସ୍ୱଧର୍ମ' କରିଯିବା"[୧୪] ସାମାଜିକ ଶୃଙ୍ଖଳା କର୍ତ୍ତବ୍ୟ ଓ ସ୍ୱଧର୍ମ ପାଳନ ମାଧ୍ୟମରେ ହିଁ ଆସିଥାଏ । ଏହି ପରିପ୍ରେକ୍ଷୀରେ ବେଦରେ ଓ ଗୀତାରେ ଚାତୁର୍ବର୍ଣ୍ଣ୍ୟ କଥା କୁହାଯାଇଛି । ଯେଉଁ ଆଦର୍ଶରେ ସମାଜ ପରିଚାଳିତ ହେଲେ ମଧ୍ୟ ସମାଜରେ କର୍ମ ବିଭାଗ ଅବଶ୍ୟମ୍ଭାବୀ । ଏହି କର୍ମ ବିଭାଗ ମାଧ୍ୟମରେ ପ୍ରତ୍ୟେକ ବ୍ୟକ୍ତି ସମାଜର ଉନ୍ନତି ଦୃଷ୍ଟିରୁ ସ୍ୱ–କର୍ମ କରିଥାଏ । ଏହି କର୍ମ ବିଭାଗ ସମାଜରେ ଶୃଙ୍ଖଳାର ମୂଳ । ପଣ୍ଡିତ ନୀଳକଣ୍ଠଙ୍କ ମତରେ, "ଏ କର୍ମ ବିଭାଗ ଶୃଙ୍ଖଳାଟି ମାନବ ସମାଜର ସ୍ୱଭାବ ବା ସ୍ୱଭାବ–ନିୟତ ଧର୍ମ – ସମାଜର ସ୍ୱ–ଧର୍ମ ବୋଲିବାକୁ ହେବ"[୧୫] ତେଣୁ ଗୋଟିଏ ସମାଜରେ ଶିକ୍ଷକ ଯଦି ତାହାର ସ୍ୱଭାବ ନିୟତ କର୍ମ କରେ ଯେଉଁ ଶିକ୍ଷା ଦାନରେ ନିଜକୁ ନିୟୋଜିତ କରେ। ରାଜା ଯଦି ପ୍ରଜାପାଳନ ମାଧ୍ୟମରେ ସ୍ୱଧର୍ମରେ ନିୟୋଜିତ ହୁଏ, ସୈନିକ ଯଦି ତାହାର ସ୍ୱଧର୍ମ ଅର୍ଥାତ୍ ଦେଶରକ୍ଷା କର୍ମରେ ନିୟୋଜିତ ହୁଏ – ଏପରି ପ୍ରତ୍ୟେକେ ଯଦି ସମାଜରେ ନିଜର ସ୍ୱ ସ୍ୱ କର୍ମ ପାଳନ କରନ୍ତି ତେବେ ସମାଜରେ ଆପେ ଆପେ ଶୃଙ୍ଖଳା ଆସେ । ପୁଣି ପଣ୍ଡିତ ନୀଳକଣ୍ଠଙ୍କ ମତରେ ସ୍ୱ–କର୍ମ ବା ସ୍ୱ–ଧର୍ମରେ ନିୟୋଜିତ ହେଲେ ମନୁଷ୍ୟ ଫଳାଫଳର ଅପେକ୍ଷା କରେ ନାହିଁ । ସେ ଏହି ତଥ୍ୟଟିକୁ ସୂର୍ଯ୍ୟର ଉଦାହରଣ ଦ୍ୱାରା ସୁନ୍ଦରଭାବରେ ବୁଝାଇଛନ୍ତି । ସୂର୍ଯ୍ୟର କର୍ମ କିରଣ ଦେବା – ସେହି କିରଣରେ ହୁଏତ ପୋଖରୀରେ ପଦ୍ମ ଫୁଟେ ପୁଣି ହୁଏତ ସେହି କିରଣ କ୍ଷେତକୁ ପୋଡି ନଷ୍ଟ କରିଦିଏ । କିନ୍ତୁ ସୂର୍ଯ୍ୟର କର୍ମ ଭଲ ମନ୍ଦର ଫଳାଫଳର ଅପେକ୍ଷା କରେ ନାହିଁ । ମନୁଷ୍ୟର କ୍ଷେତ୍ରରେ ମଧ୍ୟ ଯେଉଁ ବ୍ୟକ୍ତି ସମାଜରେ [illegible]ର ସ୍ୱଭାବ ନିୟତ କର୍ମ କରେ ସେ ସ୍ୱ–ଧର୍ମ ଦ୍ୱାରା ସାମାଜିକ କର୍ତ୍ତବ୍ୟ ପାଳନ କରେ ମାତ୍ର । ତେଣୁ ସେ କ୍ଷେତ୍ରରେ ଫଳାଫଳର ଆଶା ତାହାକୁ ବିବ୍ରତ କରେ ନାହିଁ ।

ପଣ୍ଡିତ ନୀଳକଣ୍ଠ ଅର୍ଥଧର୍ମ ଓ ସମାଜଧର୍ମ ଆଧାରରେ ଯେଉଁ ଧର୍ମ ଶବ୍ଦର ଯେଉଁ ବିଶ୍ଳେଷଣ କରିଛନ୍ତି ତାହା ସହିତ ଗ୍ରୀକ୍ ଦାର୍ଶନିକ ପ୍ଲାଟୋଙ୍କ ବର୍ଣ୍ଣିତ "ଆଦର୍ଶ ରାଜ୍ୟ" ସମ୍ବନ୍ଧୀୟ ଧାରଣା ମଧ୍ୟରେ ସାମଞ୍ଜସ୍ୟ ଏକାଧିକ ପରିଲକ୍ଷିତ ହୁଏ । ପ୍ଲାଟୋଙ୍କ ମତରେ ସମାଜର ଶ୍ରେଣୀ ବିଭାଗ ବଂଶ ବା ଜନ୍ମ ବା ଧନ ଭିତ୍ତିରେ ନ ହୋଇ କର୍ମର ଭିତ୍ତିରେ କରିବା କଥା ଚିନ୍ତା କରିଥିଲେ । ସେ ମଧ୍ୟ କହିଥିଲେ ଯେ Justiceର ଅର୍ଥ ହେଉଛି "Doing your duty in your own station". ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ଲାଟୋ Justice କହିଲେ ଆଇନଗତ ବିଚାର ବୋଲି ଚିନ୍ତା କରି ନ ଥିଲେ । ତାଙ୍କ ମତ ଅନୁଯାୟୀ Justiceର ମୂଳ ହେଉଛି Balance ବା Harmony ବା ସମନ୍ୱୟ । ଏହି ସମନ୍ୱୟକୁ ସେ ସମାଜର ମୂଳ ଭିତ୍ତି ବୋଲି ଦର୍ଶାଇଥିଲେ । ତେଣୁ ନୀଳକଣ୍ଠ ଓ ପ୍ଲାଟୋଙ୍କ 'ସମାଜ' ଚେତନାରେ ଉଲ୍ଲେଖଯୋଗ୍ୟ ସାମଞ୍ଜସ୍ୟ ଅଛି । କିନ୍ତୁ ଏଥିରୁ ପ୍ରମାଣିତ ହୁଏ ନାହିଁ ଯେ ପଣ୍ଡିତ ନୀଳକଣ୍ଠ ସମାଜଧର୍ମ ତଥା ଅର୍ଥଧର୍ମର ବିଶ୍ଳେଷଣ ପ୍ଲାଟୋଙ୍କ ଆଧାରରେ କରିଛନ୍ତି । Platoଙ୍କ Justice ତଥା Ideal State ସଂଜ୍ଞାରେ ଅଧିକାର କଥା ଅଛି କିନ୍ତୁ ଭୋଗର ନାହିଁ, କର୍ତ୍ତବ୍ୟର କଥା କୁହାଯାଇଛି କିନ୍ତୁ ଅଧିକାର କଥା କୁହାଯାଇ ନାହିଁ । ତେଣୁ ପ୍ଲାଟୋଙ୍କ ସମନ୍ୱୟ କଳ୍ପନା ଅପୂର୍ଣ୍ଣ । କିନ୍ତୁ ପଣ୍ଡିତ ନୀଳକଣ୍ଠଙ୍କ ବିଶ୍ଳେଷଣ ଅନୁସାରେ, ସ୍ୱ-ଧର୍ମ ଧାରଣାରେ — "ଭୋଗ ଥାଇପାରେ ; କିନ୍ତୁ ଭୋଗର ଲାଳସା ନାହିଁ । କର୍ମର ପରସ୍ପର ଅପେକ୍ଷିତାରେ ଅନ୍ୟଠାରୁ ପାଇବା ଥାଇପାରେ କିନ୍ତୁ କାହାରିଠାରୁ କିଛି ନେବା ନାମ ନାହିଁ" ।୧୬ ଏଠାରେ ଭୋଗ ଓ ତାହାର କଳ୍ପନାକୁ ହେୟ ବୋଲି ମନେ କରାଯାଇନାହିଁ । ତେଣୁ ତାଙ୍କର 'ସମାଜ' ଚେତନା ଅଧିକ ବାସ୍ତବବାଦୀ ଓ ଅଧିକ ସମନ୍ୱିତ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ପ୍ଲାଟୋ ଆଦର୍ଶ ରାଷ୍ଟ୍ରରେ ଯେଉଁ ସମନ୍ୱୟର ଭିତ୍ତି ଖୋଜୁଥିଲେ ତାହା ନୀଳକଣ୍ଠଙ୍କ 'ସମାଜ' ସମ୍ବନ୍ଧୀୟ ବିଶ୍ଳେଷଣରେ ଅଧିକ ପରିସ୍ଫୁଟ । 'ସମାଜ' ଓ 'ବ୍ୟକ୍ତି' ଏ ଦୁଇଟି ପ୍ରତ୍ୟୟକୁ କେନ୍ଦ୍ର କରି ସମାଜ ତଥା ରାଜନୀତି ଦର୍ଶନର ଇତିହାସରେ ଗଢି ଉଠିଛି ଦୁଇଟି ସମାନ୍ତରାଳ ଚିନ୍ତାଧାରା । ଏକ ଦିଗରେ 'ବ୍ୟକ୍ତି-ବାଦ' ଓ ଅନ୍ୟ ଦିଗରେ 'ସମାଜ-ବାଦ' । କେତେକ ଦାର୍ଶନିକ 'ସମାଜ'କୁ ହିଁ ମୂଳ ପ୍ରତ୍ୟୟ ବୋଲି ଉପସ୍ଥାପିତ କରି 'ବ୍ୟକ୍ତି' ପ୍ରତ୍ୟୟକୁ ଗୌଣ ବୋଲି ଦର୍ଶାଇଛନ୍ତି । ଏହି ତଥ୍ୟକୁ କେନ୍ଦ୍ର କରି ଜନ୍ମ ନେଇଛି 'ସମାଜବାଦ' ଓ 'କମ୍ୟୁନିଜମ୍' । ଅନ୍ୟ ଦିଗରେ କେତେକ ଦାର୍ଶନିକଙ୍କ ମତରେ 'ବ୍ୟକ୍ତି'ହିଁ ମୁଖ୍ୟ ଓ 'ସମାଜ'ର ସଂଜ୍ଞା 'ବ୍ୟକ୍ତି' କଳ୍ପନା ଉପରେ ନିର୍ଭରଶୀଳ । ଏହି ତଥ୍ୟକୁ କେନ୍ଦ୍ର କରି ରୂପ ନେଇଛି 'ବ୍ୟକ୍ତିବାଦ' । ଏହି ଦାର୍ଶନିକ ଚିନ୍ତାର ପ୍ରଭାବରେ ରାଜନୀତି ତଥା ଅର୍ଥନୀତି କ୍ଷେତ୍ରରେ Individualism ବନାମ Socialism ଏବଂ Capitalism ବନାମ Communismର ଆଦର୍ଶଗତ ପାର୍ଥକ୍ୟ ଦେଖାଦେଇଛି । ଏହି ଦୁଇଟି ତଥ୍ୟ ଉପରେ ପର୍ଯ୍ୟବସିତ ଆଦର୍ଶଗତ ଦ୍ୱନ୍ଦ୍ୱର ଅବସାନ ଯେପରି ନାହିଁ । ତେଣୁ 'ବ୍ୟକ୍ତି' ଓ 'ସମାଜ' — ସାମାଜିକ ଦର୍ଶନର ଇତିହାସରେ ପରସ୍ପର ବିରୋଧୀ କଳ୍ପନା ବୋଲି ପ୍ରତୀତ ହେବା ସ୍ୱାଭାବିକ । କିନ୍ତୁ ପଣ୍ଡିତ ନୀଳକଣ୍ଠ ତାଙ୍କର ଦାର୍ଶନିକ ବିଚାର ମାଧ୍ୟମରେ ଏହି ସମସ୍ୟାର ଯେଉଁ ଗଭୀର ଓ ସାର୍ବକାଳୀନ ସମାଧାନ ଉପସ୍ଥିତ କରିଛନ୍ତି ତାହା ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ 'ସମାଜ' ପ୍ରତ୍ୟୟକୁ ପ୍ରାଧାନ୍ୟ ଦେଇ 'ବ୍ୟକ୍ତି'ର ସ୍ୱତନ୍ତ୍ରତାକୁ ଖର୍ବ କରିନାହାନ୍ତି କିମ୍ବା 'ବ୍ୟକ୍ତି' କଳ୍ପନାକୁ ପ୍ରାଧାନ୍ୟ ଦେଇ ସମାଜକୁ ବ୍ୟକ୍ତି ସମୂହର ସଂଯୋଜନା ମାତ୍ର ବୋଲି ଦର୍ଶାଇ ନାହାନ୍ତି । ବରଂ 'ବ୍ୟକ୍ତି' ଓ 'ସମାଜ' ଏ ଦୁଇଟି ପ୍ରତ୍ୟୟକୁ ସେ ପରସ୍ପରର ପରିପୂରକ ବୋଲି ଉପସ୍ଥାପିତ କରି ପ୍ରଚଳିତ ଧାରା ଚଳି ଆସୁଥିବା ଆଦର୍ଶଗତ ଦ୍ୱନ୍ଦ୍ୱର ସମାଧାନ ମାର୍ଗ ଦର୍ଶାଇ ଯାଇଛନ୍ତି । ଏହା ହିଁ ତାଙ୍କର ସମାଜାଭିମୁଖୀ ଦର୍ଶନର ବୈଶିଷ୍ଟ୍ୟ ।


୧. ପଣ୍ଡିତ ନୀଳକଣ୍ଠ ଦାସ—"ବିଶ୍ୱ ଦର୍ଶନରେ ମୁ-ବାଦ" ଏସ ଦାସଙ୍କ ନୂଆ ପ୍ରେସ, ୨ୟ ସଂସ୍କରଣ, ପୃ—୪୬୩ ।

୨. ପଣ୍ଡିତ ନୀଳକଣ୍ଠ ଦାସ—ଶ୍ରୀମଦ୍ ଭଗବଦ୍ ଗୀତା, କୈଟ ପୁସ୍ତକାଳୟ କଟକ, ଚତୁର୍ଥ ସଂସ୍କରଣ, ପୃ—୨୪୦ ।

୩. J. Nehru-Discovery of India.

୪. "ଶ୍ରୀମଦ୍ ଭଗବଦ୍ ଗୀତା"—ଗୀତା ପ୍ରବେଶ, ପୃ—୨୦୫ ।

୫. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୨୦୬ ।

୬. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୨୦୯ ।

୭. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୨୧୮ ।

୮. Plato-Republic, Ninth Book, 592 : A (The city (Ideal State) is founded in words for on earth I imagine it nowhere exists).

୯. Plato-Republic-544 : D. cf.

୧୦. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୩୦୨ ।

୧୧. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୨୭୩ ।

୧୨. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୨୫୬ ।

୧୩. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୩୦୩ ।

୧୪. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୧୬୬ ।

୧୫. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୩୦୬ ।

୧୬. "ଶ୍ରୀମଦ୍ ଭଗବଦ୍ ଗୀତା", ପୃ—୧୬୬ ।



ପ୍ରାଧ୍ୟାପିକା, ଦର୍ଶନ ବିଭାଗ,
ବାଣୀବିହାର, ଭୁବନେଶ୍ୱର ।

# ଐକ୍ୟର ପ୍ରତୀକ ସଂସ୍କୃତି

ପୂର୍ଣ୍ଣଚନ୍ଦ୍ର ଓଝା

ରାଷ୍ଟ୍ରୀୟ ଏକତା ସାମୂହିକ ସମୃଦ୍ଧି ପାଇଁ ଅପରିହାର୍ଯ୍ୟ । ଏକତା ବିନା ଦେଶର ସ୍ଥିତି ଅସମ୍ଭବ । ଏହା ଦେଶକୁ ନାନା ପ୍ରକାର ବାହ୍ୟ ବିପତ୍ତଣକାରୀ ତଥା ଅଘଟଣକାରୀ ସମସ୍ୟାରୁ ରକ୍ଷା କରିଥାଏ । କେବଳ ବାହ୍ୟ ଶତ୍ରୁ ନୁହେଁ ଅଭ୍ୟନ୍ତରୀଣରୁ ଦେଶକୁ ବଞ୍ଚାଇବା ପାଇଁ ଏହାର ଆବଶ୍ୟକତା ଅନୁଭୂତ ହୁଏ । କୌଣସି ଦେଶର ସଂସ୍କୃତି ତା'ର ରାଷ୍ଟ୍ରୀୟ ଐକ୍ୟର ପରିଚୟ ଦେଇଥାଏ । ଭାରତୀୟ ସଂସ୍କୃତି ସୁପ୍ରାଚୀନ । ବାହ୍ୟଭେଦ ସତ୍ତ୍ୱେ ସଂସ୍କୃତିର ଆତ୍ମା ଅଖଣ୍ଡିତ । ସଂସ୍କୃତ ହିଁ ଭାରତୀୟ ସଂସ୍କୃତିର ମୂଳ ଭିତ୍ତି । ଐକ୍ୟ ନିମିତ୍ତ ସମନ୍ୱୟ ଭାବନା ଏକାନ୍ତ ଆବଶ୍ୟକ । ସଂସ୍କୃତି ହେଉଛି ଅନେକତା ମଧ୍ୟରେ ଏକତା ଖୋଜିବାର ପ୍ରୟାସ । ଏହି ଭାରତ ଭୂମିକୁ ବହୁ ସଂସ୍କୃତି ଆସିଛି ମାତ୍ର ସବୁ ଆର୍ଯ୍ୟ ସଂସ୍କୃତିରେ ମିଶିଯାଇ ନିଜର ଅସ୍ତିତ୍ୱ ହରାଇ ବସିଛନ୍ତି । ଜୈନ ଦର୍ଶନର ସ୍ୟାଦ୍‌ବାଦ ମଧ୍ୟ ସମନ୍ୱୟର ପ୍ରତୀକ । ଆମ ଧର୍ମରେ ୩୩ କୋଟି ଦେବତା ଅଛନ୍ତି ମାତ୍ର ସେମାନଙ୍କ ମଧ୍ୟରେ ଆନ୍ତରିକତାର ଭେଦ ପରିଲକ୍ଷିତ ହୁଏ ନାହିଁ । ସେଥିପାଇଁ ମନୀଷୀମାନେ ମତବ୍ୟକ୍ତ କରନ୍ତି ଯେ, "ସର୍ବ ଦେବ ନମସ୍କାର କେଶବଂ ପ୍ରତି ଗଚ୍ଛତି ।" ଅର୍ଥାତ୍ ଦେବତାଙ୍କୁ ପ୍ରଣାମ କଲେ କେଶବଙ୍କୁ ଏହା ପ୍ରାପ୍ତ ହୋଇଥାଏ । ଭାରତୀୟଙ୍କର ଧର୍ମ, ଦର୍ଶନ, ସାହିତ୍ୟ ତଥା ଅନ୍ୟାନ୍ୟ କଳାରେ ମଧ୍ୟ ସମନ୍ୱୟର ଭାବନା ଦେଖିବାକୁ ମିଳିଥାଏ । ଆର୍ଯ୍ୟ ସଂସ୍କୃତିର ସମନ୍ୱୟ ଭାବନାର ଏକ ନିଦର୍ଶନ ନିମ୍ନଲିଖିତ ସଂସ୍କୃତ ଶ୍ଳୋକରେ ଅଛି :

"ଯଂ ଶୈବା ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନୀ
ବୌଦ୍ଧାଃ ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ
ଅର୍ହନ୍ନିତ୍ୟଥ ଜୈନ ଶାସନରତାଃ କର୍ମେତି ମୀମାଂସକାଃ
ସୋଽୟଂ ଯୋ ବିଦଧାତୁ ବାଞ୍ଛିତ ଫଳଂ ତ୍ରୈଲୋକ୍ୟନାଥ ହରିଃ ।"

ବୈଦିକ ଜୀବନାଦର୍ଶ ଅନୁଶାସନ ଏବଂ ଏକତା ତଥା ସମନ୍ୱୟରେ ହିଁ ପର୍ଯ୍ୟବେଶିତ । ତେଣୁ ଋଗ୍‌ବେଦରେ ଋଷି ଗାଇଉଠିଛନ୍ତି :

ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାମ୍ ।
ଦେବାଭାଗଂ ଯଥାପୂର୍ବେ ସଂଜାନାନାଉପାସତେ ॥

ସେହିପରି ମନ, ଭାବନା ଏବଂ ଅଭିପ୍ରାୟର ଏକତାର ପରାକାଷ୍ଠାକୁ ମଧ୍ୟ ଋଗ୍‌ବେଦର ଦଶମ ମଣ୍ଡଳ ସୂଚାଇ ଦେଇଥାଏ । ଯଥା :

ସମାନୀ ବ ଆକୁତିଃ ସମାନା ହୃଦୟାନିବ ।
ସମାନମସ୍ତୁ ବୋ ମନୋ ବଃ ସୁସହା ସତି ॥

ସେହିପରି ଦେଖିବାକୁ ଗଲେ ଭାରତବର୍ଷର ଯେଉଁ ଭୌଗୋଳିକ ଚି... ସଂସ୍କୃତ ଭାଷାରେ ବର୍ଣ୍ଣିତ ଅଛି ତାହା ମଧ୍ୟ ରାଷ୍ଟ୍ରୀୟ ଐକ୍ୟର ଦ୍ୟୋତକ । "ବାୟୁ ପୁରାଣ" ଓ "ବିଷ୍ଣୁ ପୁରାଣ"ରେ ଲେଖା ଅଛି :

ଉତ୍ତରଂ ଯତ୍ସମୁଦ୍ରସ୍ୟ ହିମାଦ୍ରେଶ୍ଚୈବ ଦକ୍ଷିଣମ୍ ।
ବର୍ଷଂ ତଦ୍ ଭାରତନାମ ଭାରତୀ ସନ୍ତତିଃ ଯତ୍ର ॥

"ମାର୍କଣ୍ଡେୟ ପୁରାଣ" ମଧ୍ୟ ଏ କଥାକୁ ସମର୍ଥନ କରି ସୁନ୍ଦର ଭାବେ ବର୍ଣ୍ଣନା କରିଛି :

ଏତତ୍ତୁ ଭାରତବର୍ଷଃ ଚତୁଃ ସଂସ୍ଥାନ ସଂସ୍ଥିତମ୍
ଦକ୍ଷିଣା ପରତୀ ହ୍ୟସ୍ୟ ପୂର୍ବେଣ ଚ ମହୋଦଧିଃ
ହିମବାନୁତ୍ତରେଣାସ୍ୟ କାର୍ମୁକସ୍ୟ ଯଥା ଗୁଣଃ ॥

ସାଧାରଣ ଭାରତୀୟ ମଧ୍ୟ ତା'ର ସ୍ନାନ କାଳରେ ସବୁ ଦିଗ୍... ବ୍ୟାପିଥିବା ଭାରତର ମୁଖ୍ୟ ନଦୀମାନଙ୍କର ନାମ ନେଇଥାଏ । ଯଦି ତା'ର ଐକ୍ୟଭାବ ନଥାଆନ୍ତା ତେବେ ସେ କେବଳ ନିଜ ପ୍ରଦେଶର ନଦୀ ବା ନଗର ନାମକୁ ଉଚ୍ଚାରଣ କରି ଥାଆନ୍ତା । ମାତ୍ର ତାହା ନକରି ସମନ୍ୱୟ ପାଇଁ ସେ ଉଚ୍ଚାରଣ କରେ :

ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ ।
ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ॥

ସେହିପରି ପ୍ରାୟ ସମସ୍ତ ମୁଖ୍ୟ ନଗରମାନଙ୍କର ନାଥ ଥାଇ ତୀର୍ଥ... ନାମକୁ ସ୍ମରଣ କରିବାକୁ ଯାଇ ପୁରାଣକାର ପ୍ରତ୍ୟେକ ଭାରତୀୟଙ୍କୁ ସମନ୍ୱୟ ମନ୍ତ୍ର ଶୁଣାଇ ଥାଏ :

ଅଯୋଧ୍ୟା ମଥୁରା ମାୟା କାଶୀ କାଞ୍ଚି ଅବନ୍ତିକା ।
ପୁରୀ ଦ୍ୱାରବତୀ ଚୈବ ସପ୍ତୈତେ ମୋକ୍ଷଦାୟିକାଃ ॥

ସେହିପରି ପ୍ରାତଃସ୍ମରଣ ସମୟରେ କେତେକ ପାଠ କରିଥାଆନ୍ତି :

ପ୍ରୟାଗଂ ପାଟଳିପୁତ୍ରଂ ବିଜୟାନଗରଂ ପୁରୀଂ ।
ଇନ୍ଦ୍ରପ୍ରସ୍ଥଂ ଗୟାଂ ଚୈବ ପ୍ରତ୍ୟୁଷେ ପ୍ରତ୍ୟହଂ ସ୍ମରେତ୍ ॥

ତଥାଚ ପ୍ରାତଃ ସ୍ମରଣରେ କେତେକ ବିଦ୍ୱାନ୍ ଉତ୍କଳର "ମହେନ୍ଦ୍ର" ପର୍ବତ, ମହୀଶୂରର "ମଳୟ", ମହାରାଷ୍ଟ୍ରର "ସହ୍ୟ", ଉତ୍ତରସ୍ଥ "ହିମାଳୟ", ଗିର୍ନାରର "ରୈବତକ", ମଧ୍ୟପ୍ରଦେଶର "ବିନ୍ଧ୍ୟ" ଏବଂ ରାଜସ୍ଥାନର "ଆରାବଳୀ" ପର୍ବତର ନାମକୁ ଧ୍ୟାନ କରିଥାନ୍ତି । ଯଥା :

ମହେନ୍ଦ୍ରୋ ମଳୟଃ ସହ୍ୟୋ ଦେବତାତ୍ମା ହିମାଳୟଃ ।
ଧ୍ୟେୟୋ ରୈବତକ ବିନ୍ଧ୍ୟୋ ଗିରିଶ୍ଚାରାବଳିସ୍ତଥା ॥

ଉପରୋକ୍ତ ଉଦାହରଣଗୁଡ଼ିକରୁ ଭାରତର ସମନ୍ୱୟ ତଥା ରାଷ୍ଟ୍ରୀୟ ଐକ୍ୟ ଭାବନାର ଆଭାସ ମିଳିଥାଏ । ଏହି ଦେଶରେ ସର୍ବ ଧର୍ମର, ସବୁ ଜାତିର ସମନ୍ୱୟ ଘଟି ଆସିଛି । ବିଶ୍ୱାମିତ୍ର, ଜାବାଳୀ, ସୂତ ଆଦି ଋଷିଗଣଙ୍କୁ ମଧ୍ୟ ବ୍ରାହ୍ମଣ ଋଷିଗଣ ପୂଜାକରି ଆସିଛନ୍ତି । ଏଥିରୁ ସମନ୍ୱୟର ସୂଚନା ମିଳିଥାଏ । ମୁସଲମାନ ରାଜତ୍ୱ କାଳରେ ମଧ୍ୟ ଭାରତର ରାଷ୍ଟ୍ରୀୟ ଐକ୍ୟର ପ୍ରତୀକ ସଂସ୍କୃତ ଚର୍ଚ୍ଚା ଯେ କେବଳ ବ୍ରାହ୍ମଣମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା ତାହା ନୁହେଁ, "ଦାରାସିକୋ"ଙ୍କ ଭଳି ମୁସଲମାନ ପଣ୍ଡିତମାନେ ମଧ୍ୟ ସଂସ୍କୃତ ବିଶେଷ ଭାବରେ ଅଧ୍ୟୟନ କରି ନାନା କାବ୍ୟ କବିତା ରଚନା କରି ଯାଇଛନ୍ତି । ବ୍ରିଟିଶ୍ ରାଜତ୍ୱ କାଳରେ ଉଇଲିୟମ୍ ଜୋନ୍ସ, ହେନ୍‌ରୀ ଟାମସ, ଚାର୍ଲସ ଉଇଲକିନ୍ସ, ୱାରେନ୍ ହେଷ୍ଟିଂସ, ଷେନ୍‌କନୋ, କୋଲବ୍ରୁକ୍, ବୁହ୍ଲର, କିଥ, ଉଇଣ୍ଟରନିଜ୍, ମ୍ୟାକ୍‌ଡୋନାଲ୍ଡ, ମୋନିୟର୍ ଉଇଲିୟମ୍ସ ପ୍ରଭୃତି ବିଦ୍ୱାନଗଣ ଏହାର ଭୂରିଭୂରି ପ୍ରଶଂସା କରି ଯାଇଛନ୍ତି ।

ପ୍ରକୃତରେ ସଂସ୍କୃତ ଭାଷା ଭାରତୀୟ ସଂସ୍କୃତି ତଥା ରାଷ୍ଟ୍ରୀୟ ଐକ୍ୟର ପରିଚାୟକ । ଏ କଥାକୁ ଅନୁମାନ କରି ଅତି ବୁଦ୍ଧିମାନ ମ୍ୟାକଲେ ସାହେବ ନିଷ୍ପତ୍ତି ନେଇଥିଲେ ଯେ ଯଦି ଭାରତୀୟ ଐକ୍ୟ ରୂପକ ସଂସ୍କୃତ ଭାଷାକୁ ବଳିଦାନ ଦେଇ ଇଂରାଜୀ ଭାଷାର ପ୍ରଚାର ତଥା ପ୍ରସାର କରାଯାଏ ତେବେ ନିଶ୍ଚିତ ଭାବରେ ଭାରତରେ ଇଂରାଜୀ ସାମ୍ରାଜ୍ୟ ବିସ୍ତାର ଲାଭ କରି ପାରିବ । ତେଣୁ ୧୮୩୫ର ନୂତନ ଶିକ୍ଷାନୀତି ଅନୁସାରେ ଇଂରାଜୀ ଭାଷା ଉପରେ ଗୁରୁତ୍ୱ ଆରୋପ କରି ସଂସ୍କୃତ ଭାଷାକୁ ହତାଦର କରାଗଲା । ମ୍ୟାକଲେ ସାହେବ ସଂସ୍କୃତକୁ ଏକ ମୃତ ଭାଷା (Sanskrit is a dead language) ବୋଲି କହିଥିଲେ । ବୁଦ୍ଧ ବିବେକଶୂନ୍ୟ ବ୍ୟକ୍ତିମାନେ ଏ କଥାରେ ମଧ୍ୟ ହାଣୀ ବିରାଡ଼ି ଅସରପା ଦେଖି ବାଇ ହେଲା ଭଳି ନାଚିବାକୁ ଲାଗିଲେ ଓ ବର୍ତ୍ତମାନ ସୁଦ୍ଧା ନାଚୁଛନ୍ତି । ମାତ୍ର ମ୍ୟାକଲେ ସାହେବଙ୍କ କୂଟନୀତିରେ ପଡ଼ି ସେମାନେ ଜାଣିପାରି ନଥିଲେ ନଡ଼ିଆ ଓ ସେଓ ଫଳ ମଧ୍ୟରେ ପାର୍ଥକ୍ୟ କ'ଣ । କାହାର ଗୁରୁତ୍ୱ ବେଶୀ ଓ କାହା ପାଇଁ ଆଜି ଭାରତବର୍ଷ ପୃଥିବୀରେ ଅଗ୍ରଗଣ୍ୟ ଯେଉଁ ସଂସ୍କୃତ ସମସ୍ତ ବିଦ୍ୟାର ଆଧାର ଯେଉଁଥିରେ ସମସ୍ତ ପ୍ରକାର ସାମାଜିକ, ରାଜନୈତିକ, ଆର୍ଥିକ, ଆଧ୍ୟାତ୍ମିକ, ଦାର୍ଶନିକ ତଥା ବୈଜ୍ଞାନିକ ମୂଲ୍ୟ ଆଦିର ନିହିତ ସେହି ସଂସ୍କୃତରେ ଅଭିରୁଚି ଆଜି ସୁଦୂର ପରାହତ । ସଂସ୍କୃତ ଯେଉଁ ଦେଶର ଗର୍ବ ସେହି ଦେଶରୁ ଅପମାନିତ, ନିକ୍ଷେପିତ ହୋଇ ସୁଦୂର ବିଦେଶରେ ଯଥା : ଜର୍ମାନ୍, ଫ୍ରାନ୍ସ, ଋଷିଆ, ଆମେରିକା, ଚୀନ୍, ଜାପାନ୍ ପ୍ରଭୃତି ବରିଷ୍ଠ ତଥା ଧନାଢ୍ୟ ଦେଶମାନଙ୍କରେ ଏହା ପଠିତ ତଥା ପାଠିତ ହୋଇ ପାରୁଛି । ଏହାଠାରୁ ଆମ ପକ୍ଷରେ ଆଉ ଲଜ୍ଜ୍ୟାକର ବିଷୟ ବା କ'ଣ ଥାଇପାରେ ?

ଯେଉଁ ସଂସ୍କୃତ ଭାରତୀୟ ସଂସ୍କୃତିର ମୂଳ ଉତ୍ସ, ଯାହାପାଇଁ ଭାରତ ଗର୍ବିତ, ଯେଉଁ ସଂସ୍କୃତ ରାଷ୍ଟ୍ରୀୟ ଏକତା ରକ୍ଷା କରି ପାରିଛି ତାହାର ପ୍ରଚାର ତଥା ପ୍ରସାର ନିତାନ୍ତ ଆବଶ୍ୟକ । ଈଶାବାସ୍ୟୋପନିଷଦରେ ଯେଉଁ ତ୍ୟାଗ ଓ ତପସ୍ୟାର ଭାବନା ନିହିତ ତାହା ଭାରତର ପ୍ରତି କୋଣେ କୋଣେ ତଥା ଦେଶ ବିଦେଶରେ ମଧ୍ୟ ଝଙ୍କୃତ ହେଉଛି । ଯଥା :

ଈଶାବାସ୍ୟମିଦଂ ସର୍ବଂ ଯତ୍ କିଞ୍ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ ॥

ସଂସ୍କୃତ ଭାଷା ଦେଶର ମାନ, ମର୍ଯ୍ୟାଦା ରକ୍ଷା କରିବା ନିମନ୍ତେ ଦେଶ ମାତୃକାକୁ ସ୍ୱର୍ଗର ଆସନ ଦେଇଛି — "ଜନନୀ ଜନ୍ମ ଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।" ପୁଣି ସମଗ୍ର ପୃଥିବୀକୁ କୁଟୁମ୍ବ ଭାବେ ଗ୍ରହଣ କରିଛି : "ବସୁଧୈବ କୁଟୁମ୍ବକମ୍ ।" ରାଷ୍ଟ୍ରର ସମନ୍ୱୟ ତଥା ରାଷ୍ଟ୍ରୀୟ ଐକ୍ୟର ଜୟଧ୍ୱନି ମଧ୍ୟ ଝଙ୍କୃତ କରିଛି :

"ଦ୍ୟୌଃ ଶାନ୍ତିରନ୍ତରୀକ୍ଷଂ ଶାନ୍ତିଃ ପୃଥିବୀ ।
ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ ॥
ବନସ୍ପତୟଃ ଶାନ୍ତିର୍ବିଶ୍ୱେଦେବାଃ ଶାନ୍ତିଃ ।
ବ୍ରହ୍ମ ଶାନ୍ତି ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥"

ଗ୍ରାମ : ସିଂହମାପୁର,
ପୋ: ଅ: ବହୁଗ୍ରାମ,
ଜିଲ୍ଲା : କଟକ ।



'ମୋର-ମୋର ଏକା କାହିଁକି, ଆମ ସମସ୍ତଙ୍କ ସ୍ୱପ୍ନର ସ୍ୱରାଜରେ ଜାତି କିମ୍ବା ଧର୍ମଗତ ଭେଦଭାବ ରହିବ ନାହିଁ । ଏହା ଶିକ୍ଷିତ କିମ୍ବା ଧନୀ ବ୍ୟକ୍ତିମାନଙ୍କ ଏକଚାଟିଆ ଅଧିକାର ହୋଇ ରହିବ ନାହିଁ । ସ୍ୱରାଜ ସମସ୍ତଙ୍କର । ଏଥିରେ କୃଷକ, ଧନୀ, ନିର୍ଦ୍ଧନ, ଅନ୍ଧ ଓ କୋଟି କୋଟି ଦେଶବାସୀ ଲୋକଙ୍କ ସ୍ଥାନ ରହିଛି ।'

# ପ୍ରାଚୀନ ଉତ୍କଳରେ ପତ୍ନୀର ସ୍ଥାନ

ଶ୍ରୀ ସୀମାଞ୍ଚଳ ପ୍ରଧାନ

ଓଡ଼ିଆ ଲୋକ ସାହିତ୍ୟରେ ନାରୀ ନିର୍ଯ୍ୟାତନାର ଚିତ୍ର ଥିଲେ ମୁଖ୍ୟ ପତ୍ନୀ ରୂପେ ନାରୀର ମହତ୍ତ୍ୱ ରହିଛି । ଯୋଉ ସହିତ ଶାସ୍ତ୍ର ନଣନ୍ଦଙ୍କ ସମର୍ଥ ବଞ୍ଚିତ ଥିଲାବେଳେ ସେ ପତିର ଅର୍ଦ୍ଧାଙ୍ଗିନୀ ଭାବେ ସତ୍ତ୍ୱ ମର୍ଯ୍ୟାଦାର ଅଧିକାରିଣୀ । ଭାରତୀୟ ସମାଜରେ ପତ୍ନୀର ସ୍ଥାନ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ ଧର୍ମାନୁଷ୍ଠାନରେ ଅବିବାହିତା କିମ୍ବା ବିପତ୍ନୀକ ପୁରୁଷ କର୍ତ୍ତା ରୂପେ ଅଂଶ ଗ୍ରହଣ କରିବା ନିଷିଦ୍ଧ(୧) । ପତ୍ନୀ ସଖାମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ଓ ତ୍ରିବର୍ଗ ଫଳ ପ୍ରାପ୍ତିର ମୂଳ ଉତ୍ସ ଏବଂ ସଂସାର ବନ୍ଧନରୁ ତରିବାର ଏକମାତ୍ର ମାଧ୍ୟମ ।

ପତ୍ନୀ ବିନା ପତିର ଜୀବନ ପରିପୂର୍ଣ୍ଣ ନୁହେଁ । 'ଶତପଥ ବ୍ରାହ୍ମଣ' ଅନୁଯାୟୀ ପତ୍ନୀ ଆତ୍ମାର ଅର୍ଦ୍ଧେକ(୨) । ସାମାଜିକ ପ୍ରତିଷ୍ଠା କିମ୍ବା ବଂଶ ରକ୍ଷା ପତି ପତ୍ନୀଙ୍କ ମିଳନରେ ହିଁ ସଫଳପର ହୋଇଥାଏ । ତେଣୁ ସାଂସାରିକ କ୍ଷେତ୍ରରେ ପତ୍ନୀର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ନାରୀର ପତ୍ନୀ ରୂପକୁ ମନୁଷ୍ୟ ବିଭିନ୍ନ ସମୟରେ ବିଭିନ୍ନ ଭାବରେ ଦେଖି ଆସିଛି । ସେଥି ମଧ୍ୟରୁ କେହି କେହି ନାରୀ ଓ ପୁରୁଷକୁ ସୁଖ ସମ୍ଭୋଗର ଜୀବନ୍ତ ପ୍ରତିମା ରୂପେ ଗ୍ରହଣ କଲାବେଳେ(୩) ଆଉ କେହି କେହି ତାକୁ କାର୍ଯ୍ୟରେ ମନ୍ତ୍ରୀ, କଳା କର୍ମରେ ସଖୀ ଏବଂ ଧର୍ମ କର୍ମରେ ଅର୍ଦ୍ଧାଙ୍ଗିନୀ ରୂପେ ପରିକଳ୍ପନା କରିଛନ୍ତି । ଏହା ବ୍ୟତୀତ ସଂସ୍କୃତ ସାହିତ୍ୟରେ ବିଶେଷ କରି ସଂସ୍କୃତ କଥା ସାହିତ୍ୟ ମଧ୍ୟରେ ପତ୍ନୀର କଳଙ୍କିତ ରୂପ ବିରଳ ନୁହେଁ । ଲୋକ କଥା, ଓଷା ବ୍ରତ, ପ୍ରବାଦ ପ୍ରବଚନଗୁଡ଼ିକରେ ମଧ୍ୟ ବିବିଧ ରୂପ ଦେଖିବାକୁ ମିଳେ । ଓଡ଼ିଆ ଲୋକ ସାହିତ୍ୟରେ ପତ୍ନୀର ସ୍ଥାନ ଓ ତାର ମାନସିକ ଚିନ୍ତାଧାରା କିପରି ପ୍ରତିଫଳିତ ତାହା ନିମ୍ନରେ ବିଶ୍ଳେଷଣ କରାଯାଉଅଛି ।

ବିବାହ କାର୍ଯ୍ୟ ସମାପନ ପରେ କୁମାରୀ ପତ୍ନୀ ରୂପେ ସମାଜରେ ସ୍ୱୀକୃତିଲାଭ କରେ । ପତ୍ନୀକୁ କେଉ ପରିବାର ଗଠନର ଭିତ୍ତି ସ୍ଥାପନ [illegible]ଥାଏ । ପତ୍ନୀ ଉପରେ ସମଗ୍ର ପରିବାରର ଉନ୍ନତି ଅବନତି ନିର୍ଭର [illegible] ତେଣୁ କୁହାଯାଏ ପତ୍ନୀ ବିନା ପତି ହେଉଛି ଛାପହୀନ ରୂପ [illegible] । କଥାରେ କହନ୍ତି ପତ୍ନୀ ବିନା ଘର ଘର ନୁହେଁ । ତାହା [illegible]ପ୍ତରେ ଲକ୍ଷ୍ମୀ ରୂପେ ପରିଚିତ(୪) । ଏତଦ୍‌ବ୍ୟତୀତ ରୂପବତୀ [illegible]ଣୀ ଅପେକ୍ଷା ଗୁଣବତୀ ନାରୀ ପତ୍ନୀ ପାଇଁ ଅଧିକ ଉପଯୁକ୍ତ ବୋଲି ଚୀନାମାନେ କହିଆସିଛନ୍ତି(୫) । ପାର୍ସୀୟାନ୍ ପ୍ରବଚନ ଅନୁଯାୟୀ ସୁନ୍ଦରୀ ପତ୍ନୀ ମନୁଷ୍ୟକୁ ଶୀଘ୍ର ବିପଦ ମୁଖକୁ ଟାଣି ନିଏ(୬) । ସଂସ୍କୃତରେ ମଧ୍ୟ ଏକ ପ୍ରବଚନ ଅଛି – "ଭାର୍ଯ୍ୟା ରୂପବତୀ ଶତ୍ରୁ" । ସୁନ୍ଦରୀ ପତ୍ନୀର ଅହମିକାଗ୍ରସ୍ତ ରୂପ ଓଡ଼ିଆ ଲୋକ ସାହିତ୍ୟରେ ବହୁଳ ଭାବେ ପରିଦୃଷ୍ଟ ହୋଇଥାଏ ।

ପତ୍ନୀର କର୍ତ୍ତବ୍ୟ ହେଉଛି ସ୍ୱାମୀର ସୁଖ ଦୁଃଖରେ ସମଭାଗୀ ହେବା । ଏହି କର୍ତ୍ତବ୍ୟରୁ ଯେଉଁ ପତ୍ନୀ ବିଚ୍ଛିନ୍ନ ସେ ସମାଜ ଚକ୍ଷୁରେ କୁପତ୍ନୀ ରୂପେ ବିବେଚିତ ହୋଇଥାଏ । ଏହି ପ୍ରକାର ମନୋବୃତ୍ତିସମ୍ପନ୍ନା ପତ୍ନୀକୁ ପ୍ରାଚୀର ଗାତର ବୃକ୍ଷ ସହିତ ତୁଳନା କରାଯାଏ । କାଷ୍ଠ ଦେହରେ ବୃକ୍ଷ ଉଠିବା ଦ୍ୱାରା ଯେମନ୍ତ କାନ୍ଥଟି ଯେପରି ଭାଙ୍ଗି ପଡ଼େ, ସେହିପରି କୁପତ୍ନୀ ପରିବାରକୁ ଧ୍ୱଂସ ଆଡ଼କୁ ଟାଣି ନିଏ(୮) ।

ସ୍ୱାମୀ ସୁନ୍ଦର ହୁଅନ୍ତୁ ବା ଅସୁନ୍ଦର ହୁଅନ୍ତୁ, ଧନୀ ହୁଅନ୍ତୁ ବା ନିର୍ଦ୍ଧନ ହୁଅନ୍ତୁ, ମୂର୍ଖ ହୁଅନ୍ତୁ ବା ପଣ୍ଡିତ ହୁଅନ୍ତୁ ସେ ସବୁକୁ ବାଛ ବିଚାର ନକରି ଓଡ଼ିଆ ସମାଜର ପ୍ରାୟ ସମସ୍ତ ପତ୍ନୀ ସ୍ୱାମୀ ସେବାରେ ନିଜକୁ ନିୟୋଜିତ କରିଥାନ୍ତି । ପତ୍ନୀର ଏହି ପତିପରାୟଣତା ଭାରତୀୟ ପରମ୍ପରାରେ ପ୍ରଶଂସିତ । ଓଡ଼ିଆ ଲୋକ ସାହିତ୍ୟରେ ମଧ୍ୟ ତା'ର ଏହି ରୂପଟିକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ପତି ସବୁବେଳେ ସମାଜରେ କିପରି ପ୍ରତିଷ୍ଠା ଅର୍ଜନ କରିବେ ଓ ଅନ୍ୟମାନଙ୍କଠାରୁ କିପରି ସେ ଉଚ୍ଚାସନ ପାଇପାରିବେ, ଏହି କଥା ପତ୍ନୀ ସବୁବେଳେ ଚିନ୍ତା କରିଥାଏ(୯) । ପତ୍ନୀ ଆଖିରେ ପତି କେତେ ଯେ ଆପଣାର ତାହା 'ସାବିତ୍ରୀ ଚରିତ' ଗୀତିରୁ ସଷ୍ଟ ରୂପେ ପ୍ରତୀୟମାନ ହୁଏ(୧୦) । ଏହାଛଡ଼ା ଗୋବିନ୍ଦଚନ୍ଦ୍ର ଗୀତରେ ରାଜନବରରୁ ସ୍ୱାମୀ ପରିତ୍ୟକ୍ତା ମୁକ୍ତା ଦେଈଙ୍କ ପତିପରାୟଣା ରୂପକୁ ସଷ୍ଟତଃ ଲକ୍ଷ୍ୟ କରାଯାଇପାରେ ।

ପତ୍ନୀ ମୁକ୍ତା ଦେଈ ଗର୍ଭରୁ ଯେତେବେଳେ ପୁତ୍ର ସନ୍ତାନ ଜନ୍ମ ହେଲା ନାହିଁ । ସେତେବେଳେ ରାଜା ଲୋକାପବାଦରୁ ରକ୍ଷା ପାଇବା ପାଇଁ ପତ୍ନୀକୁ ବନସ୍ତକୁ ପଠାଇ ଦେଲେ । କିଛି ଦିନ ପରେ ରାଜା ଶିକାରକୁ ଯାଇଥିବା ସମୟରେ ସେ ଅଦୂରରେ ଗୋଟିଏ ଦିବ୍ୟ ଅଟ୍ଟାଳିକା ଦେଖିବାକୁ ପାଇଲେ । ପତିଙ୍କର ଆଗମନ ଲକ୍ଷ୍ୟ କରି ପତ୍ନୀ ମୁକ୍ତା ଦେଈ ପୂର୍ବ ରାଗକୁ ଭୁଲିଯାଇ ପ୍ରଥମରେ ରାଜାଙ୍କୁ ପାଛୋଟି ନେଲେ । ସୁବର୍ଣ୍ଣ ଝରିରେ ପାଣି ନେଇ ପାଦ ପ୍ରକ୍ଷାଳନ କଲେ ଓ ସେହି ପାଣିରୁ

ଛିଞ୍ଚି ସେବନ କରି ମସ୍ତକରେ ଛିଞ୍ଚିଲେ(୧୧)। ପତ୍ନୀ ମୁକ୍ତା ଦେଈଙ୍କର ଏତାଦୃଶ କାର୍ଯ୍ୟାବଳୀରୁ ସେ କିପରି ପତିଭକ୍ତା ତାହା ବେଶ୍ ଜଣାପଡ଼େ। କେବଳ ଏତିକି ନୁହେଁ, ସ୍ୱାମୀର ମନ ଜାଣି ଖାଇବାକୁ ଦେବା(୧୨), ସେବା ଶୁଶ୍ରୂଷା କରିବା(୧୩), ବିପଦରେ ସାହାଯ୍ୟ କରିବା(୧୪) ମନୋବୃତ୍ତି ମଧ୍ୟ ଓଡ଼ିଆ ପରିବାରରେ ପରିଲକ୍ଷିତ ହୁଏ।

ପତି ରୋଗୀ ହେଉ କିମ୍ବା ଭୋଗୀ ହେଉ, ସେ ପତ୍ନୀ ପାଇଁ ଦେବତା। ସର୍ବଦା ପତିର ସେ ଚରଣ ଦାସୀ(୧୫)। ପତି ରୋଗାକ୍ରାନ୍ତ ହେଲେ ସୁଖୀ ପତ୍ନୀ କେବେହେଲେ ଭ୍ରୂକ୍ଷେପ କରେ ନାହିଁ ବରଂ ପତି କିପରି ଆରୋଗ୍ୟଲାଭ କରିବ ସେହି ଚିନ୍ତାରେ ସେ ସର୍ବଦା ବ୍ୟାକୁଳ ଥାଏ। ଏହାର ଭୁରି ଭୁରି ଦୃଷ୍ଟାନ୍ତ ଆଲୋଚ୍ୟ ଲୋକ ସାହିତ୍ୟରେ ପରିପୂର୍ଣ୍ଣ। ଭାରତୀୟ ପୁରାଣରେ ଉଲ୍ଲେଖ ଅଛି ସତୀ ଅନୁସୂୟା ତା' କୁଷ୍ଠ ରୋଗାକ୍ରାନ୍ତ ସ୍ୱାମୀଙ୍କର ସେବା କରିବାରେ ତତ୍ପର ଥିଲେ। ସେଇଥିରୁ ତାଙ୍କର ଅତୁଳନୀୟ ସ୍ୱାମୀ ସେବା ମନୋଭାବର ପରିଚୟ ମିଳିଥାଏ। ଏତଦ୍‌ବ୍ୟତୀତ କୁଷ୍ଠ ରୋଗାକ୍ରାନ୍ତ ସ୍ୱାମୀ ରାଜା ଚିତ୍ରସେନଙ୍କର ରୋଗ ଉପଶମ ପାଇଁ ତାଙ୍କ ପତ୍ନୀ କିପରି ସୋମନାଥ ବ୍ରତ(୧୬) କରି ସ୍ୱାମୀଙ୍କର ରୋଗ ଉପଶମ କରିବାରେ ସମର୍ଥା ହୋଇପାରିଥିଲେ ତାହା ଉକ୍ତ ବ୍ରତ କଥାରୁ ଜାଣିହୁଏ।

ଓଡ଼ିଆ ପରିବାରର ପତ୍ନୀ ତା' ସ୍ୱାମୀଙ୍କର ଆରୋଗ୍ୟ କାମନା କରି କେତେ ଦିଅଁ ଦେବତାଙ୍କୁ ପୂଜା କରେ। କେତେ ଓଷା ବ୍ରତ ଓ କେତେ ପୂଜା ଦ୍ରବ୍ୟ ସମର୍ପଣ ଓ ମାନସିକ କରେ। ସେ ସ୍ୱାମୀଙ୍କର ଦୀର୍ଘାୟୁ କାମନା କରିବା ଉଦ୍ଦେଶ୍ୟରେ ସାବିତ୍ରୀ ବ୍ରତ(୧୭) କୁଷ୍ଠ ରୋଗରୁ ମୁକ୍ତି ପାଇବା ନିମିତ୍ତ ସୋମନାଥ ବ୍ରତ(୧୮) ଓ ବଡ଼ ଓଷା(୧୯) ସ୍ୱାମୀଙ୍କୁ ବିପଦରୁ ଉଦ୍ଧାର କରିବା ଲାଗି ସ୍ୱାମୀ ଉଦ୍ଧାର ବ୍ରତ(୨୦) ପ୍ରଭୃତି ପାଳନ ପାରମ୍ପରିକ ଭାବେ ପାଳିତ ହୁଏ।

ସ୍ୱାମୀ ହେଉଛନ୍ତି ପତ୍ନୀର ପ୍ରାଣ(୨୧)। ତେଣୁ ସ୍ୱାମୀଠାରୁ ପତ୍ନୀ କେବେହେଲେ ଦୂରେଇ ଯିବାକୁ ଇଚ୍ଛା କରେ ନାହିଁ। ସ୍ୱାମୀଙ୍କ ଦୁଃଖକୁ ଲାଘବ କରିବା ନିମନ୍ତେ ପତ୍ନୀ ଅବିରତ ଚେଷ୍ଟା ଚଳାଇଥାଏ। ଏହାର ଏକ ବାସ୍ତବିକ ଚିତ୍ର ରାମଚନ୍ଦ୍ରଙ୍କ ବନବାସ ସମୟରେ ସୀତାଙ୍କ ଗମନ ଓ ଗୋବିନ୍ଦଚନ୍ଦ୍ରଙ୍କ ଗୃହତ୍ୟାଗ ସମୟରେ ଭାର୍ଯ୍ୟାମାନଙ୍କ ପଶ୍ଚାତ୍‌ଧାବନ(୨୨), ଖୁଲଣାସୁନ୍ଦରୀ ଗୀତରେ ସ୍ୱାମୀ ସହ ଖୁଲଣାର ଗମନର ଚିତ୍ର ପଲ୍ଲୀଗୀତଗୁଡ଼ିକରେ ଦେଖିବାକୁ ମିଳେ।

ପତିର ଦୁଃଖ ଦେଖିବାକୁ ପତ୍ନୀ କେବେହେଲେ ଇଚ୍ଛା କରେ ନାହିଁ। ତେଣୁ ଗୋବିନ୍ଦଚନ୍ଦ୍ର ଯୋଗୀ ବେଶ ଧାରଣ କରି ଉଦର ପୋଷଣ କରିବେ, ଏହା ତାଙ୍କ ପତ୍ନୀଙ୍କ ପକ୍ଷେ ଅସହ୍ୟ ହୋଇପଡ଼ିଛି। ତେଣୁ ସ୍ୱାମୀଙ୍କର ଦୁଃଖକୁ ଲାଘବ କରିବା ନିମନ୍ତେ ପତ୍ନୀଦ୍ୱୟ ସ୍ୱାମୀଙ୍କୁ କହିଛନ୍ତି ଆମେ ଥାଉ ଥାଉ ଆପଣଙ୍କୁ ଭିକ୍ଷା ମଗାଇ ଦେବୁ ନାହିଁ(୨୩)। ପତ୍ନୀମାନଙ୍କର ଏ ପ୍ରକାର ମନୋବୃତ୍ତିରୁ ସେମାନଙ୍କ ଆଦର୍ଶ ପତି ଭକ୍ତିକୁ ଲକ୍ଷ୍ୟ କରିବାର କଥା।

ଏହା ବ୍ୟତୀତ ସ୍ୱାମୀ ଅନ୍ୟ ନାରୀ ପ୍ରତି ଦୁର୍ବଳତା ପ୍ରକାଶ କରିବା ଲକ୍ଷ୍ୟ କଲେ ପତ୍ନୀ ମନ ଆଶଙ୍କାରେ ଭରିଯାଏ। ନିଜେ ଅନୁଶୋଚନା କରି ନିଜର ଦିନ କେମିତି ସରିବ ବୋଲି ଚିନ୍ତା କରେ(୨୪)। ସ୍ୱାମୀଙ୍କର ସୁଖରୁ ବଞ୍ଚିତା ହେଲେ ପତ୍ନୀ ମନରେ ବିରସ ଭାବ ଦେଖାଦିଏ। ଦୃଷ୍ଟାନ୍ତ ସ୍ୱରୂପ ନିମ୍ନୋକ୍ତ ଛଟାକୁ ଗ୍ରହଣ କରାଯାଇ ପାରେ :

"କପରା ବିଶାନ୍ତି ଦୁଃଖ
ଦିନେ ପାଇ ନାହିଁ ପରତା ସୁଖ
ସେଥିପାଇଁ ମନ ଦୁଃଖୀ।"(୨୫)

ଆଦର୍ଶ ପତ୍ନୀ କୁପଥଗାମୀ ସ୍ୱାମୀଙ୍କୁ ଉଚିତ ମାର୍ଗକୁ ଆଣିବା ପାଇଁ ଚେଷ୍ଟା କରିଥାଏ। ପୁଣି ସ୍ୱାମୀଙ୍କୁ ବିପଦରୁ ଉଦ୍ଧାର କରିବା ଦିଗରେ ବିଭିନ୍ନ ଉପାୟ ବତାଏ(୨୬)। ବିଦେଶକୁ ଯାଉଥିବା ସ୍ୱାମୀ କିପରି ଶୀଘ୍ର ଶୁଭରେ ଗୃହକୁ ପ୍ରତ୍ୟାବର୍ତ୍ତନ କରିବେ ସେଥିପାଇଁ ପତ୍ନୀ ତାଙ୍କୁ ନିବେଦନ କରି କହେ :

କେଉଁ ଦିନ ଆସିବ ମୋ ପାଶେ ଫେରି।
ଦେହ ମୋ ଲୁଇଁ କହ ନହେବ ଡେରି॥
ବସିଣ ଗଣୁଥିବି ଦିନ ତ ମୁହିଁ।
ଡେରି ହୋଇଲେ ପ୍ରାଣ ରହିବି ନାହିଁ॥(୨୭)

ଏତଦ୍‌ବ୍ୟତୀତ ପତ୍ନୀ ସ୍ୱାମୀଙ୍କର ଶୁଭକାମନାରେ ଚିନ୍ତିତ ଥାଏ(୨୮)। ଯୁଦ୍ଧ କ୍ଷେତ୍ରରେ ସ୍ୱାମୀ ପଦାର୍ପଣ କରିବା ପୂର୍ବରୁ ପତ୍ନୀ ପତି କପାଳରେ ବିଜୟର ଟୀକା ଲଗାଇଦିଏ, ଶୁଭରେ ପ୍ରତ୍ୟାବର୍ତ୍ତନ କରିବା ସକାଶେ ସ୍ୱାମୀ ଅଙ୍ଗରେ ଠାକୁର ପାଦୁକ ବୋଳିଦିଏ(୨୯)। ସ୍ୱାମୀଙ୍କ କଥାକୁ ଆଦର୍ଶ ପତ୍ନୀ କେବେହେଲେ ଅମାନ୍ୟ କରେ ନାହିଁ।

ପତ୍ନୀର ମାତୃତ୍ୱ ଆଶା ଅତ୍ୟନ୍ତ ପ୍ରବଳ। ବିବାହିତ ଜୀବନର ବହୁବର୍ଷ ଅତିବାହିତ ହେଲା ପରେ ଯଦି ସେ ସନ୍ତାନବତୀ ନହୁଏ, ସେତେବେଳେ ସେ ବଂଶ ରକ୍ଷା ନିମନ୍ତେ ସ୍ୱାମୀଙ୍କୁ ଦ୍ୱିତୀୟବାର ବିବାହ କରିବାକୁ ଅନୁରୋଧ କରେ। ଉଦାହରଣ ସ୍ୱରୂପ ଖୁଲଣା ସୁନ୍ଦରୀ ଗୀତରେ ଆଦର୍ଶ ପତ୍ନୀ ନୟନା ସୁନ୍ଦରୀର ଏ ପ୍ରକାର ଅନୁରୋଧ ଉଲ୍ଲିଖିତ ଥିବାର ଦେଖାଯାଏ(୩୦)।

ସନ୍ତାନବତୀ ପତ୍ନୀ କେବେହେଲେ ସ୍ୱାମୀଙ୍କୁ ଅନ୍ୟ ଦାରା ଗ୍ରହଣ କରିବାକୁ ଅନୁମତି ଦିଏ ନାହିଁ(୩୧)। କାରଣ ସେ ଜାଣେ ସପତ୍ନୀର ଜ୍ୱାଳା ଅସହ୍ୟ ଓ ହୃଦୟ ବିଦାରକ। ପତ୍ନୀ ସବୁବେଳେ ଭାବେ ତା' ଜୀବନ କେମିତି ଅହ୍ୟ ତେଲ୍ଲୁରେ ଯିବ; ସ୍ୱାମୀଙ୍କ ମୃତ୍ୟୁ ପୂର୍ବରୁ ତା'ର ମୃତ୍ୟୁ ହେବ। ଏଥିରେ ତା'ର ମୁକ୍ତି ଓ ଗତି ବୋଲି ସେ ମନେକରେ(୩୨)।

ଉପରୋକ୍ତ ଆଲୋଚନାରୁ ଓଡ଼ିଆ ଲୋକ ସାହିତ୍ୟରେ ଥିବା ଆଦର୍ଶ ପତ୍ନୀର ସ୍ୱରୂପଟିକୁ ବେଶ୍ ଉପଲବ୍ଧି କରି ହୁଏ।

ଏତଦ୍‌ବ୍ୟତୀତ ଏଥିରୁ କୁପତ୍ନୀର କେତୋଟି ନିଦର୍ଶନ ମଧ୍ୟ ଅନୁସନ୍ଧାନ କରାଯାଇ ପାରେ। ଯାହା ଲାଖି ଯିଏ(୩୩), ମାଉ ଗୁଲିଆ ଟକ୍କେର ସାଉ(୩୪), ଦୋଳି ଗୀତ(୩୫), ଲୋକବାଣୀ ପ୍ରଭୃତିରେ କୁପତ୍ନୀ ଦ୍ୱାରା ପତି କିପରି ନିର୍ଯ୍ୟାତିତ ହୁଏ, ତା'ର ଚିତ୍ର ଦେଖିବାକୁ ମିଳି ପାରିବ। ଏହିପରି ପତ୍ନୀମାନେ ଓଡ଼ିଆ ସାମାଜିକ ଚଳଣିରେ ହତଲକ୍ଷ୍ମୀ ରୂପେ ବିବେଚିତା। ଏହି ପ୍ରକାର ପତ୍ନୀ କେବଳ ସ୍ୱାମୀ ସୁଖରେ ହିଁ ସୁଖୀ ଓ ଧନସମ୍ପଦର ସାଥୀ(୩୬)। ସ୍ୱାମୀ କୌଣସି କାରଣରୁ ଉପାର୍ଜନକ୍ଷମ ହୋଇ ନପାରିଲେ ସ୍ତ୍ରୀ ସ୍ୱାମୀ ଉପରେ ବିରକ୍ତ ହୁଏ(୩୭)। କେବେକେବେ ସ୍ୱାମୀ ଉପରକୁ ହାତ ଉଠାଏ(୩୮)। ଗାଳିଗୁଲଜ କରେ ଏବଂ ସ୍ୱାମୀଙ୍କୁ ବିପଦରେ ପରିତ୍ୟାଗ କରି ପିତୃ ଗୃହକୁ ପଳାୟନ କରେ(୩୯)।

ଏତଦ୍‌ବ୍ୟତୀତ ପତ୍ନୀ ଯେ ଅବିଶ୍ୱାସୀ ଏପରି ଏକ ବିଶ୍ୱାସ ଲୋକ ସାହିତ୍ୟରୁ ଦେଖିବାକୁ ମିଳିଥାଏ(୪୦)। ସତ କଥା କେବେହେଲେ ପତ୍ନୀ ଆଗେ କହିବା ଅନୁଚିତ ବୋଲି ନିମ୍ନୋକ୍ତ ଲୋକୋକ୍ତିରୁ ଜଣାଯାଏ।

"ହାତି ପରି ଅର୍ଜିବୁ।
ପାଆନ୍ତ ପରି ଖାଇବୁ॥
ମାଇପ ଆଗେ ମିଛ କହିବୁ।
ରାଜାଙ୍କ ଆଗରେ ସତ କହିବୁ॥"(୪୧)

ସମାଜରେ ବହୁ ନାରୀ ବିବାହର ପ୍ରଚଳନ ଥିବା ଯୋଗୁଁ ଅନ୍ୟାନ୍ୟ ପତ୍ନୀମାନଙ୍କର ସ୍ୱରୂପ ସମ୍ପର୍କରେ ମଧ୍ୟ ଲୋକ କବିର ମନୋଭାବ ତା'ର ସୃଷ୍ଟିରେ ସୁସ୍ପଷ୍ଟ। ପ୍ରଥମା ପତ୍ନୀଠାରୁ ଦ୍ୱିତୀୟା ପତ୍ନୀ ମାରାତ୍ମକ। ଦ୍ୱିତୀୟା ପତ୍ନୀକୁ ସାଧାରଣତଃ ଅପବିତ୍ର ଭାବେ ହିଁ ରୂପାୟିତ କରାଯାଇଛି। ଦ୍ୱିତୀୟା ପତ୍ନୀର ମନ ଧରି ସ୍ୱାମୀ କାମ ନକଲେ ସୁନାର ଘର ଚୂନାରେ ପରିଣତ ହୋଇଯିବା ସମ୍ଭାବନା। ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି :

"ଅବଧାନ, ଆଗ ମାଇପକୁ ତଉଡ଼ ଗୁପତ
ପଛ ମାଇପକୁ ସାବଧାନ।"(୪୨)

ଏଥିରୁ ଦୁଇପତ୍ନୀ ଲାଗି ପରିବାର ମଧ୍ୟରେ ଅଶାନ୍ତିର ଝଡ଼ ସୃଷ୍ଟି ହେଉଥିବାର ଦୃଷ୍ଟାନ୍ତ ମଧ୍ୟ ରାମାୟଣ, ମହାଭାରତ ପରି ଲୋକ ଗଳ୍ପଗୁଡ଼ିକରେ ମଧ୍ୟ ଦେଖିବାକୁ ମିଳେ। ରାମାୟଣର ଦଶରଥଙ୍କ ପତ୍ନୀ କୈକେୟୀ, ମହାଭାରତର ଶାନ୍ତନୁଙ୍କ ପତ୍ନୀ ଗଙ୍ଗାଙ୍କ ପାଇଁ ପାରିବାରିକ ଅଶାନ୍ତିର ଝଡ଼ ସୃଷ୍ଟି ହୋଇଥିବା ସର୍ବଜନ ବିଦିତ। ତେଣୁ ଲୋକ କବି କହେ :

"ପୁରନେ ଯେଉଁ ପୁତ୍ର ଦେବ ଜନ୍ମ।
ସ୍ତିରୀଙ୍କ କଥାରେ ନୋହିବ ଭ୍ରମ॥
ସ୍ତିରୀ ଲାଗିକରି ଘରକୁ ଗୋଳ।
ଦ୍ରୌପଦୀ ଲାଗି ମଲେ କୁରୁକୁଳ॥"(୪୩)

ସେ ଯାହାହେଉ ଲୋକ ସାହିତ୍ୟର ଅଧିକାଂଶ ସ୍ଥଳରେ ପତ୍ନୀର ପତିବ୍ରତା ରୂପଟିକୁ ଅଧିକ ରୂପାୟନ କରିବା ପାଇଁ ଲୋକ କବି ସଚେଷ୍ଟ ଥିବା ଦେଖାଯାଏ। ପତ୍ନୀର କୁରୂପ ଅପେକ୍ଷା ସୁରୂପଟି ଯେ ଲୋକ ସାହିତ୍ୟରେ ବିଶେଷ ପରିମାଣରେ ପରିସ୍ଫୁଟ, ଏହା ନିର୍ଦ୍ୱନ୍ଦରେ କୁହାଯାଇ ପାରିବ। ପତ୍ନୀର ଆଦର୍ଶ ରୂପଟି ସାମ୍ପ୍ରତିକ ନାରୀ ସମାଜରେ ପ୍ରଭାବ ପକାଇଲେ ନାରୀ ସମାଜ ଯେ ଆଦର୍ଶ ମାର୍ଗରେ ପରିଚାଳିତ ହୋଇ ପାରିବ ଏହା କହିଲେ ଅସଙ୍ଗତ ହେବ ନାହିଁ।

## ପାଦଟୀକା :

(୧) ପାରଳା ମହାଭାରତରେ ସାମାଜିକ ଜୀବନ–ଡ: ରବିନ୍ଦ୍ର ରଥ, ପୃଷ୍ଠା ୨୨–୨୩।
(୨) ଏସିଆ ଓ ସଂସ୍କୃତି–ଡ: କୁଞ୍ଜ ପଣ୍ଡା, ପୃଷ୍ଠା ୧୨।
(୩) A study of women of Bengal Sankar Sen Gupta, Page 135.
(୪) Ibed Page 137.
(୫) Without a wife the house is the abode of the devil, (Ibid, Page 137).
(୬) One should choose a wife the ears rather than with eyes. (Ibed page 136).
(୭) A fair wife, a white horse and a back door will quickly make a rich man poor. (Ibed, page 137).
(୮) A tree growing on the wall i.e. like the fig tree, which under mines the wall by its roots. (Ibed page 136-137).
(୯) ମୋ ଶିରସ୍ତ ହେବ କନକ ରାଜନ, ମୁଁ ହେବି ପାଟ ରାଣୀ, (ଲୋ: ଗ: ସଂ, ପୃଷ୍ଠା ୪୫୬)।
(୧୦) ପ: ଗୀ: ସଂ, (ତୃତୀୟ ଭାଗ), ପୃଷ୍ଠା ୪୭।
(୧୧) ଗୋବିନ୍ଦଚନ୍ଦ୍ର–ପ: ଗୀ: ସଂ (ତୃତୀୟ ଭାଗ), ପୃଷ୍ଠା ୩୪। (ii) ଉ: ଗା: ଗୀ, ପୃଷ୍ଠା ୩୭।
(୧୨) ଦୁଃଖୁନୀ–ପ: ଗୀ: ସଂ (ପ୍ରଥମ ଭାଗ), ପୃଷ୍ଠା ୧୩।
(୧୩) ତତ୍ରୈବ, ପୃଷ୍ଠା ୧୩।
(୧୪) ସାଧବର ସାନପୁଅ–ଲୋ: ଗ:ସଂ, ପୃଷ୍ଠା ୬୦୪।
(୧୫) କୁହୁକ କଣ୍ଟାଟ–ତତ୍ରୈବ, ପୃଷ୍ଠା ୬୭୯।
(୧୬) ସୋମନାଥ ବ୍ରତ କଥା–ଓ: ପ: ବ୍ର: କ:, ପୃଷ୍ଠା ୬୦–୬୭।
(୧୭) ସାବିତ୍ରୀ ବ୍ରତ–ବ୍ରତ ସାହିତ୍ୟ, ପୃଷ୍ଠା ୨୦–୨୨।
(୧୮) ସୋମନାଥ ବ୍ରତ–ତତ୍ରୈବ, ପୃଷ୍ଠା ୪୪–୪୬।
(୧୯) ବଡ଼ ଓଷା–ଓ: ପ: ବ୍ର: ସା:, ପୃଷ୍ଠା ୬୮–୬୩।
(୨୦) ସ୍ୱାମୀ ରକ୍ଷାର ବ୍ରତ–ବ୍ରତ ସାହିତ୍ୟ, ପୃଷ୍ଠା ୨୨୦–୨୨୧।
(୨୧) A study of woman of Bengal, Page 137.
(୨୨) ହଳିଆ ଗୀତ–ପ: ଗୀ: ସଂ (ପ୍ରଥମ ଭାଗ), ପୃଷ୍ଠା ୩୪୫।
(୨୩) ତତ୍ରୈବ, ପୃଷ୍ଠା ୩୪୬।
(୨୪) ଲୋ: ଗା: ସଂ (ଦ୍ୱିତୀୟ ଭାଗ), ପୃଷ୍ଠା ୬୯।
(୨୫) ଲୋ: ଗା: ସଂ (ଦ୍ୱିତୀୟ ଭାଗ), ପୃଷ୍ଠା ୧୬୮।
(୨୬) ରାମ ଢୋଲ କଥା–ଲୋ:ଗ: ସଂ, ପୃଷ୍ଠା ୩୩୮।
(୨୭) ପ: ଗୀ: ସଂ (ପ୍ରଥମ ଭାଗ), ପୃଷ୍ଠା ୫୦।
(୨୮) ରାମ ଢୋଲ କଥା–ଲୋ: ଗ: ସଂ, ପୃଷ୍ଠା ୩୩୮।
(୨୯) ତତ୍ରୈବ, ପୃଷ୍ଠା ୩୩୮।
(୩୦) ଖୁଲଣା ସୁନ୍ଦରୀ–ପ: ଗୀ: ସଂ (ତୃତୀୟ ଭାଗ), ପୃଷ୍ଠା ୫୭।
(୩୧) ହଳିଆ ଗୀତ–ପ: ଗୀ: ସଂ (ପ୍ରଥମ ଭାଗ), ପୃଷ୍ଠା ୩୫୨।
(୩୨) ମାଁ ଓ ସ୍ତ୍ରୀ–ତତ୍ରୈବ, ପୃଷ୍ଠା ୪୧।
(୩୩) ଲୋ: ଗ: ସଂ, ପୃଷ୍ଠା ୩୨୪–୩୩୨।
(୩୪) ତାରିଣୀ ଚରଣ ଗ୍ରନ୍ଥାବଳୀ, ପୃଷ୍ଠା ୨୧୯।
(୩୫) ପ: ଗୀ: ସଂ (ପ୍ରଥମ ଭାଗ), ପୃଷ୍ଠା ୧୨୬।
(୩୬) ସାଧବର ସାନ ପୁଅ–ଲୋ: ଗ: ସଂ, ପୃଷ୍ଠା ୬୦୨।
(୩୭) ମାଈ ଗୁଳିଆ ଟଙ୍କେଲ ସାହୁ–ଓ: ଲ: ଗ୍ର:, ପୃଷ୍ଠା ୨୨୩।
(୩୮) ତତ୍ରୈବ, ପୃଷ୍ଠା ୨୨୩।
(୩୯) ଓ: ଲ: ଗ୍ର:, ପୃଷ୍ଠା ୨୨୪।
(୪୦) ସୁଲୋଚି ଉପଦେଶ–ଲୋ: ଗ: ସଂ, ପୃଷ୍ଠା ୬୦୧–୬୦୩।
(୪୧) ତତ୍ରୈବ, ପୃଷ୍ଠା ୪୯୯–୫୦୦।
(୪୨) ଅନନ୍ତ ବ୍ରତ–ଲୋ: ଗ: ସଂ, ପୃଷ୍ଠା ୪୭୮।
(୪୩) ପ: ଗୀ: ସଂ (ତୃତୀୟ ଭାଗ), ପୃଷ୍ଠା ୦୬।

ଓଡ଼ିଆ ବିଭାଗ,
ମାଁ ମାଜିମା ମହାବିଦ୍ୟାଳୟ,
ବିଷମ କଟକ (କୋରାପୁଟ)।

**"ହେ ମୋର ଚିତ୍ତ ପୁଣ୍ୟ ତୀର୍ଥେ ଜାଗରେ ଧୀରେ
ଏହି ଭାରତର ମହାମାନବର ସାଗର ତୀରେ।"**

● ରବିନ୍ଦ୍ରନାଥ ଠାକୁର

# ନିର୍ବାଚନ ଫଳାଫଳ

# ଓଡ଼ିଶା ବିଧାନସଭା : ୧୯୯୦

## କଟକ

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| ସାଲେପୁର | କାଳନ୍ଦୀ ଚରଣ ବେହେରା | ଜନତା | ୫୬,୦୮୮ | ୪୧,୩୭୭ |
| କିଶନନଗର | ଯୁଧିଷ୍ଠିର ଦାସ | ଜନତା | ୩୭,୧୪୦ | ୧୬,୬୮୮ |
| କଟକ ସଦର | ରାଜେନ୍ଦ୍ର ସିଂହ | ଜନତା | ୫୬,୮୨୪ | ୩୧,୫୫୯ |
| ବରୀ ଡେରାବିସ୍ | କୁଳମଣି ରାଉତ | ଜନତା | ୪୭,୯୬୮ | ୧୭,୭୯୬ |
| ଚୌଦ୍ୱାର | ରାଜ କିଶୋର ରାମ | ଜନତା | ୬୦,୮୬୬ | ୪୧,୨୦୭ |
| ଆଳି | ସୁଶ୍ରୀ ଦେବୀ | ଜନତା | ୫୬,୯୮୬ | ୧୪,୯୧୦ |
| ଆଠଗଡ | ରଣେନ୍ଦ୍ର ପ୍ରତାପ ସ୍ୱାଇଁ | ଜନତା | ୪୭,୨୪୭ | ୨୨,୧୩୫ |
| ମାହାଙ୍ଗା | ଶରତ କୁମାର କର | ଜନତା | ୫୧,୦୮୯ | ୧୪,୮୮୩ |
| ବଡମ୍ବା | ରାଜାସାହେବ ତ୍ରିଲୋଚନ ସିଂହଦେଓ | ଜନତା | ୫୩,୬୭୭ | ୪୫,୦୭୮ |
| ତିର୍ତ୍ତୋଲ | ବସନ୍ତ କୁମାର ବିଶ୍ୱାଳ | କଂଗ୍ରେସ | ୫୩,୩୧୮ | ୧,୫୪୭ |
| ପଟ୍ଟାମୁଣ୍ଡାଇ | ରାଧାକାନ୍ତ ସେଠି | ସି.ପି.ଆଇ.(ଏମ୍) | ୩୫,୮୬୧ | ୧୨,୪୬୬ |
| ସୁକିନ୍ଦା | ପ୍ରଫୁଲ୍ଲ ଚନ୍ଦ୍ର ଘଡେଇ | ଜନତା | ୫୪,୫୩୦ | ୨୮,୯୮୪ |
| ପାଟକୁରା | ବିଜୟ ମହାପାତ୍ର | ଜନତା | ୬୫,୦୮୫ | ୪୬,୫୭୭ |
| ରାଜନଗର | ନଳିନୀକାନ୍ତ ମହାନ୍ତି | ଜନତା | ୫୮,୫୫୩ | ୧୯,୩୦୯ |
| ଏରସମା | ଦାମୋଦର ରାଉତ | ଜନତା | ୮୧,୭୬୧ | ୫୦,୨୯୭ |
| ବାଙ୍କୀ | ଘନଶ୍ୟାମ ସାହୁ | ଜନତା | ୪୬,୭୮୭ | ୧୫,୬୭୫ |
| ଜଗତସିଂହପୁର | ବିଷ୍ଣୁ ଚରଣ ଦାସ | ଜନତା | ୫୯,୯୫୪ | ୨୯,୩୮୪ |
| ବାଲିକୁଦା | ଉମେଶ ସ୍ୱାଇଁ | ଜନତା | ୫୭,୪୩୨ | ୨୩,୫୬୩ |
| ଗୋବିନ୍ଦପୁର | ରବୀନ୍ଦ୍ର କୁମାର ମଲ୍ଲିକ | ସ୍ୱାଧୀନ | ୪୪,୭୫୧ | ୨,୭୮୫ |

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| କୋରାପୁଟ | ହରିଶଚନ୍ଦ୍ର ବକ୍ସିପାତ୍ର | ଜନତା | ୩୧,୮୨୭ | ୧୬,୦୧୭ |
| ପଟ୍ଟାଙ୍ଗୀ | ଜୟରାମ ପାଙ୍ଗୀ | ଜନତା | ୩୬,୮୩୧ | ୨୨,୬୬୬ |
| କୋଟପାଡ଼ | ଶ୍ୟାମଘନ ମାଝି | ଜନତା | ୩୪,୪୦୪ | ୨୧,୬୯ |
| ବିଶମ କଟକ | ସାରଙ୍ଗଧର କାଦ୍ରାକା | ଜନତା | ୩୫,୪୧୯ | ୬,୬୯ |
| ଚିତ୍ରକୋଣ୍ଡା | ପ୍ରହଲ୍ଲାଦ ଦୋରା | ଜନତା | ୨୨,୬୦୫ | ୧୧,୦୩୭ |

## ଗଞ୍ଜାମ

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| ରାମଗିରି | ହଲଧର କାର୍ଯ୍ୟୀ | କଂଗ୍ରେସ | ୨୧,୯୪୦ | ୪,୧୬୯ |
| ମୋହନା | ସୂର୍ଯ୍ୟନାରାୟଣ ପାତ୍ର | ଜନତା | ୩୭,୩୩୪ | ୨୭,୩୬୬ |
| ଚିକିଟି | ଉଷା ଦେବୀ | ଜନତା | ୫୩,୨୨୯ | ୨୦,୫୯ |
| ଖଲ୍ଲିକୋଟ | ଶ୍ରୀ. ସୁଜ୍ଞାନ କୁମାରୀ ଦେଓ | ଜନତା | ୫୧,୨୯୩ | ୧୭,୫୯୪ |
| କବିସୂର୍ଯ୍ୟନଗର | ନିତ୍ୟାନନ୍ଦ ପ୍ରଧାନ | ସି.ପି.ଆଇ. | ୪୨,୧୪୨ | ୧୩,୬୨୪ |
| କୋଦଳା | ରାମକୃଷ୍ଣ ପଟ୍ଟନାୟକ | ଜନତା | ୭୫,୯୫୭ | ୬୯,୮୨୫ |
| ଛତ୍ରପୁର | ପର୍ଶୁରାମ ପଣ୍ଡା | ସି.ପି.ଆଇ. | ୪୭,୩୭୧ | ୨୨,୦୨୩ |
| ଭଞ୍ଜନଗର | ରାମକୃଷ୍ଣ ଗୌଡ | ଜନତା | ୪୭,୬୪୪ | ୨୧,୮୨୭ |
| ଅସିକା | ଦ୍ୟୁତିକୃଷ୍ଣ ପଣ୍ଡା | ସି.ପି.ଆଇ. | ୪୩,୮୧୬ | ୨୦,୯୮୫ |
| ଜଗନ୍ନାଥ ପ୍ରସାଦ | ମାଧବାନନ୍ଦ ବେହେରା | ଜନତା | ୪୭,୧୯ | ୨୨,୪୫୪ |
| ସୁରୁଡା | ଶାନ୍ତି ଦେବୀ | ଜନତା | ୪୫,୨୦୧ | ୧୪,୮୦୬ |
| ବ୍ରହ୍ମପୁର | ବିନାୟକ ମହାପାତ୍ର | ଜନତା | ୪୯,୫୨୬ | ୨୭,୩୫୫ |
| ହିଞ୍ଜିଳି | ହରିହର ସାହୁ | ଜନତା | ୩୨,୮୮୧ | ୫,୧୪୦ |
| ଗୋପାଳପୁର | ରାମଚନ୍ଦ୍ର ସେଠୀ | ଜନତା | ୩୯,୯୪୧ | ୯,୮୦୯ |
| ପାରଳାଖେମୁଣ୍ଡି | ଦରାପୁ ଲଛନା ନାଇଡୁ | ଜନତା | ୫୧,୯୯୨ | ୩୩,୩୪୫ |

## ଢେଙ୍କାନାଳ

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| ଗଣ୍ଡିଆ | ନନ୍ଦିନୀ ଶତପଥୀ | କଂଗ୍ରେସ | ୨୬,୬୨୩ | ୫,୧୪୦ |
| ହିନ୍ଦୋଳ | ତ୍ରିନାଥ ନାୟକ | ଜନତା | ୪୯,୬୧୨ | ୩୬,୪୦୬ |
| କାମାକ୍ଷାନଗର | ପ୍ରସନ୍ନ ପଟ୍ଟନାୟକ | ଜନତା | ୪୨,୬୦୩ | ୫,୬୦୭ |
| ପାଲଲହଡା | ଡଃ ନୃସିଂହ ଚରଣ ସାହୁ | ଜନତା | ୫୫,୦୧୬ | ୪୫,୯୨୪ |
| ଅଠମଲ୍ଲିକ | ନଗେନ୍ଦ୍ର କୁମାର ପ୍ରଧାନ | ଜନତା | ୩୪,୩୪୭ | ୧୧,୬୭୨ |
| ଅନୁଗୁଳ | ଅଦ୍ୱୈତ ପ୍ରସାଦ ସିଂହ | ଜନତା | ୫୨,୬୪୯ | ୩୩,୩୪୨ |
| ଢେଙ୍କାନାଳ | ତଥାଗତ ଶତପଥୀ | ଜନତା | ୨୬,୨୧୪ | ୧୩,୦୦୦ |
| ତାଳଚେର | ବୃନ୍ଦାବନ ବେହେରା | ସ୍ୱାଧୀନ | ୩୭,୧୩୬ | ୧୬,୪୬୬ |

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| **ବାଲେଶ୍ୱର** | | | | |
| ଭୋଗରାଇ | କମଳା ଦାସ | ଜନତା | ୬୧,୬୮୭ | ୨୨,୮୪୨ |
| ଜଳେଶ୍ୱର | ଅଶ୍ୱିନୀ କୁମାର ପାତ୍ର | ଜନତା | ୬୩,୬୪୪ | ୪୪,୦୨୭ |
| ବସ୍ତା | ରଘୁନାଥ ମହାନ୍ତି | ଜନତା | ୪୧,୬୫୪ | ୬,୮୦୨ |
| ବାଲେଶ୍ୱର | ଅରୁଣ ଦେ | ସି.ପି.ଆଇ. | ୭୭,୯୦୪ | ୨୦,୬୯୧ |
| ସୋର | କାର୍ତ୍ତିକ ମହାପାତ୍ର | କଂଗ୍ରେସ | ୪୩,୪୬୦ | ୬,୦୦୨ |
| ଶିମୁଳିଆ | ପର୍ଶୁରାମ ପାଣିଗ୍ରାହୀ | ଜନତା | ୫୨,୦୮୧ | ୨୭,୪୯୨ |
| ନୀଳଗିରି | ଚିତରଞ୍ଜନ ଷଡଙ୍ଗୀ | ସ୍ୱାଧୀନ | ୩୧,୯୭୭ | ୬୦ |
| ଭଣ୍ଡାରିପୋଖରୀ | ଅର୍ଜ୍ଜୁନ ଚରଣ ସେଠୀ | ଜନତା | ୫୬,୩୯୧ | ୩୬,୩୬୪ |
| ଭଦ୍ରକ | ପ୍ରଫୁଲ୍ଲ ସାମଲ | ଜନତା | ୫୩,୦୬୬ | ୧୭,୧୪୬ |
| ଧାମନଗର | ହୃଦାନନ୍ଦ ମଲ୍ଲିକ୍ | ଜନତା | ୫୨,୬୨୦ | ୧୮,୨୩୬ |
| ଚାନ୍ଦବାଲି | ବୈରାଗୀ ଜେନା | ଜନତା | ୫୭,୦୪୦ | ୧୭,୨୬୪ |
| ବାସୁଦେବପୁର | ବିଜୟଶ୍ରୀ ରାଉତରାୟ | ଜନତା | ୫୪,୩୪୦ | ୧୦,୨୧୧ |
| **ମୟୂରଭଞ୍ଜ** | | | | |
| ବାଙ୍ଗିରିପୋଷି | ସୁଦାମ ଚରଣ ମାରାଣ୍ଡି | ସ୍ୱାଧୀନ | ୧୪,୬୩୩ | ୩,୬୪୫ |
| ଖୁଣ୍ଟା | ବୀରଭଦ୍ର ସିଂହ | ଜନତା | ୩୫,୩୮୭ | ୧୪,୮୬୮ |
| ଉଦଳା | ରୋହିଦାସ ସୋରେନ | ଜନତା | ୨୬,୮୨୮ | ୧୨,୫୧୧ |
| କୁଳିଅଣା | କାହ୍ନୁ ସୋରେନ | ଜନତା | ୨୦,୭୨୦ | ୩,୯୪୬ |
| କରଞ୍ଜିଆ | ରଘୁନାଥ ହେମ୍ବ୍ରମ୍ | ଜନତା | ୩୦,୧୪୩ | ୧୩,୪୨୨ |
| ବହଳଦା | ଖେଳାରାମ ମହାଲି | ସ୍ୱାଧୀନ | ୨୦,୦୭୩ | ୧,୪୭୬ |
| ରାଇରଙ୍ଗପୁର | ଚୈତନ୍ୟ ପ୍ରସାଦ ମାଝି | ଜନତା | ୨୪,୦୧୧ | ୪,୯୦୬ |
| ବାରିପଦା | ଛତିଶ ଚନ୍ଦ୍ର ଧଳ | ଜନତା | ୩୧,୧୧୪ | ୫,୭୭୯ |
| ବୈଶିଙ୍ଗା | ଅନନ୍ତ ଚରଣ ମାଝି | ଜନତା | ୩୦,୪୩୪ | ୫,୭୮୧ |
| ଯଶିପୁର | ମଙ୍ଗଳ ସିଂ ମୁଦୀ | ଜନତା | ୧୯,୪୩୮ | ୪,୫୪୭ |
| **ସମ୍ବଲପୁର** | | | | |
| ସମ୍ବଲପୁର | ଦୁର୍ଗା ଶଙ୍କର ପଟ୍ଟନାୟକ | କଂଗ୍ରେସ | ୪୦,୧୧୨ | ୫,୮୩୩ |
| ରେଢାଖୋଲ | ବସନ୍ତ କୁମାର ମହାନନ୍ଦ | ଜନତା | ୩୫,୭୨୧ | ୧୫,୬୨୦ |
| ମେଲଛାମୁଣ୍ଡା | ମୁରାରୀ ପ୍ରସାଦ ମିଶ୍ର | ଜନତା | ୪୬,୮୧୦ | ୨୧,୮୭୭ |
| ଦେବଗଡ଼ | ପ୍ରଦୀପ୍ତ ଗଙ୍ଗଦେବ | ଜନତା | ୪୨,୦୪୭ | ୩୨,୬୪୬ |
| ବ୍ରଜରାଜନଗର | ପ୍ରସନ୍ନ କୁମାର ପଣ୍ଡା | ସି.ପି.ଆଇ. | ୪୪,୧୦୧ | ୨୫,୦୯୫ |
| ପଦ୍ମପୁର | ବିଜୟ ରଞ୍ଜନ ସିଂହ ବରିହା | ଜନତା | ୪୮,୨୧୭ | ୩୦,୪୧୦ |
| ଝାରସୁଗୁଡା | କିଶୋର କୁମାର ମହାନ୍ତି | ଜନତା | ୨୯,୨୦୨ | ୨,୨୯୫ |

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|

## ପୁରୀ

| | | | | |
|---|---|---|---|---|
| ପୁରୀ | ବ୍ରଜ କିଶୋର ତ୍ରିପାଠୀ | ଜନତା | ୬୪,୭୭୭ | ୪୯,୮୨୩ |
| ନିମାପଡା | ବେଣୁଧର ସେଠୀ | ଜନତା | ୫୮,୫୪୦ | ୩୪,୩୬୬ |
| ଭୁବନେଶ୍ୱର | ବିଜୁ ପଟ୍ଟନାୟକ | ଜନତା | ୭୬,୦୨୨ | ୬୧,୮୩୬ |
| ସତ୍ୟବାଦୀ | ଚନ୍ଦ୍ର ମାଧବ ମିଶ୍ର | ଜନତା | ୩୯,୦୨୩ | ୧୧,୮୬୯ |
| ବାଲିପାଟଣା | ହୃଷୀକେଶ ନାୟକ | ଜନତା | ୪୨,୭୭୯ | ୨୨,୫୧୧ |
| ଖଣ୍ଡପଡା | ଅରୁଣ କୁମାର ପଟ୍ଟନାୟକ | ଜନତା | ୪୭,୯୦୪ | ୨୪,୩୫୩ |
| ଚିଲିକା | ବିଶ୍ୱଭୂଷଣ ହରିଚନ୍ଦନ | ଜନତା | ୬୩,୬୦୬ | ୩୯,୪୮୬ |
| ଖୋର୍ଦ୍ଧା | ପ୍ରସନ୍ନ କୁମାର ପାଟଶାଣି | ଜନତା | ୫୩,୦୩୦ | ୩୬,୧୩୩ |
| ପିପିଲି | ପ୍ରଦୀପ କୁମାର ମହାରଥି | ଜନତା | ୫୪,୩୯୭ | ୩୦,୩୫୧ |
| ନୟାଗଡ | ଭାଗବତ ବେହେରା | ଜନତା | ୫୮,୪୩୪ | ୩୯,୨୧୯ |
| ବେଗୁନିଆ | ସୁରେନ୍ଦ୍ର ନାଥ ମିଶ୍ର | ଜନତା | ୫୧,୬୦୭ | ୧୯,୭୧୮ |
| ଦଶପଲ୍ଲା | ରୁଦ୍ର ମାଧବ ରାୟ | ଜନତା | ୫୦,୧୬୫ | ୨୨,୮୮୨ |
| କାକଟପୁର | ସୁରେନ୍ଦ୍ର ନାଥ ନାୟକ | ଜନତା | ୫୮,୩୪୪ | ୧୭,୨୩୮ |
| ଜଟଣୀ | ଶରତ ଚନ୍ଦ୍ର ପାଇକରାୟ | ଜନତା | ୪୫,୫୬୦ | ୯,୭୭୦ |
| ରଣପୁର | ଶରତ ଚନ୍ଦ୍ର ମିଶ୍ର | ଜନତା | ୪୭,୨୯୧ | ୧୧,୮୬୭ |
| ବ୍ରହ୍ମଗିରି | ଅଜୟ କୁମାର ଜେନା | ଜନତା | ୪୭,୯୧୭ | ୧୯,୬୮୨ |

## ଫୁଲବାଣୀ

| | | | | |
|---|---|---|---|---|
| ବଉଦ | ସଚ୍ଚିଦାନନ୍ଦ ଦଲାଲ | ଜନତା | ୩୯,୮୧୫ | ୧୫,୬୭୨ |
| ବାଲିଗୁଡା | ଭଗବାନ କହଁର | ଜନତା | ୩୩,୬୮୬ | ୧୧,୪୯୩ |
| ଉଦୟଗିରି | ନାଗାର୍ଜୁନ ପ୍ରଧାନ | କଂଗ୍ରେସ | ୩୮,୯୩୭ | ୧୨,୯୬୫ |
| ଫୁଲବାଣୀ | ପଦ୍ମନାଭ ବେହେରା | ଜନତା | ୪୨,୧୧୫ | ୨୦,୧୨୫ |

## ବଲାଙ୍ଗୀର

| | | | | |
|---|---|---|---|---|
| ବଲାଙ୍ଗୀର | ଅନଙ୍ଗଉଦୟ ସିଂହଦେଓ | ଜନତା | ୪୧,୪୦୬ | ୧୯,୦୯୨ |
| ଲୋଇସିଂଘା | ନରସିଂହ ମିଶ୍ର | ଜନତା | ୫୩,୪୧୭ | ୩୮,୩୨୬ |
| ପାଟଣାଗଡ | ବିବେକାନନ୍ଦ ମେହେର | ଜନତା | ୨୭,୯୭୩ | ୧,୯୨୫ |
| ବିନ୍କା | ପଞ୍ଚାନନ ମିଶ୍ର | ସ୍ୱାଧୀନ | ୩୫,୦୬୨ | ୯,୬୦୨ |
| ଟିଟିଲାଗଡ | ଯୋଗେନ୍ଦ୍ର ବେହେରା | ଜନତା | ୨୯,୭୭୨ | ୧୪,୧୬୫ |
| ସଇଁତଳା | ପଦ୍ମେଶ୍ୱର ବାରୁ | ଜନତା | ୩୦,୬୬୯ | ୧୩,୧୧୪ |
| କଣ୍ଟାବାଞ୍ଜି | ପ୍ରସନ୍ନ ପାଲ | ଜନତା | ୨୪,୮୫୭ | ୧୩,୬୩୬ |
| ସୋନପୁର | କୁନ୍ଦୁ କୁନ୍ଦୁ | ଜନତା | ୩୦,୧୧୨ | ୧୫,୮୫୬ |
| ବୀରମହାରାଜପୁର | ରବିନାରାୟଣ ପାଣିଗ୍ରାହୀ | ଜନତା | ୪୭,୬୪୫ | ୩୫,୦୭୨ |



# ସାର୍ଥକ ସ୍ୱପ୍ନ

## ଶ୍ରମରେ ଶ୍ରମରେ ହସେ ସୁନାର ଫସଲ

ପର୍ବତ ଘେର ମଧ୍ୟରେ ଅବସ୍ଥିତ ଖୁଲୁଡି ଗ୍ରାମ । ଏହା ଖାଇବେଡା ପଞ୍ଚାୟତର ଅନ୍ତର୍ଗତ । ପଞ୍ଚାୟତ ମହକୁମାଠାରୁ ଚାରି କିଲୋମିଟର ଦୂରରେ ଏହି ଗ୍ରାମ ଅବସ୍ଥିତ । ଉକ୍ତ ଗ୍ରାମର ୪୫ ବର୍ଷ ବୟସ୍କ ଶୁକୁରୁ ଦେହୁରୀ ଭୂୟାଁ ସମ୍ପ୍ରଦାୟର ଲୋକ । ସ୍ତ୍ରୀ, ଛୋଟ ପୁଅ, ଝିଅ, ମା ଓ ୧୫ ବର୍ଷର ଭଉଣୀକୁ ନେଇ ଛୋଟ ସଂସାର । ବାପାଙ୍କ ଅର୍ଜିତ ସମ୍ପତ୍ତିରୁ ଶୁକୁରୁର ମାତ୍ର ତିନି ଏକର ବିପ ଜମି । ଉକ୍ତ ଜମିରେ କେବଳ ବର୍ଷକେ ଥରେ ଧାନଚାଷ ହୁଏ ଓ ତାହା ଶୁକୁରର୍ ପରିବାର ପ୍ରତି ସମୁଦ୍ରକୁ ଶଙ୍ଖେ ପାଣି ଭଳି । ମାତ୍ର ୩ କୁଇଣ୍ଟାଲ ଧାନ ତାକୁ ସେଥିରୁ ମିଳେ । ଏଣୁ ବାଧ୍ୟ ହୋଇ ସ୍ୱାମୀ-ସ୍ତ୍ରୀ ଦୁହେଁ ମୂଲ ଲାଗି ପରିବାର ପୋଷଣ କରନ୍ତି । ବହୁ ସମୟରେ ମଧ୍ୟ ଉପବାସରେ ରହିବାକୁ ପଡେ । ଦିନେ ସେହି ଗ୍ରାମକୁ ଜଣେ ସରକାରୀ କର୍ମଚାରୀ ଆସି ଲୋକଙ୍କର ଭଲମନ୍ଦ କଥା ପଚାରି ସରକାରଙ୍କର ବିଭିନ୍ନ ଉନ୍ନୟନମୂଳକ ଯୋଜନା ସମ୍ପର୍କରେ ଆଲୋଚନା କଲେ । ସେ ଶୁକୁରୁକୁ ଦରଖାସ୍ତ ଦେବାକୁ ପରାମର୍ଶ ଦେଇଥିଲେ । ଏଣୁ ଶୁକୁରୁ ବ୍ଲକ୍‌କୁ ଆସି ବଳଦ ଓ ଲଙ୍ଗଳ ଋଣ ନେବାକୁ ଦରଖାସ୍ତ କଲା । ୧୯୮୮ ମସିହାରେ ଶୁକୁରୁକୁ ତିନିହଜାର ଟଙ୍କା ମୂଲ୍ୟର ବଳଦ ହଳକନ୍ଧିଲା ନିଭ ବ୍ୟାଙ୍କ୍ ମାଧ୍ୟମରେ ଯୋଗାଇ ଦିଆଗଲା । ଉକ୍ତ ଋଣ ବାବଦକୁ ଶୁକୁରୁକୁ ତିନି ଭାଗ ଛାଡ ଦିଆଯାଇଥିଲା । ଆଗରୁ ଶୁକୁରୁର ବଳଦ ନଥିଲା ଓ ସମୟ ସମୟରେ ମଧ୍ୟ ଚାଷ କରି ପାରୁନଥିଲା ।

ହଳ ଋଣ, ବଳଦ ଋଣ ମିଳିବା ପରେ ଶୁକୁରୁର ଆନନ୍ଦ କହିଲେ ନସରେ । ଏବେ ସେ ତା'ର ଜମିକୁ ଭଲ ଭାବରେ ହଳ କରି ଚାଷ କରୁଛି । ଏବେ ନିଜର କାମ ନଥିବା ସମୟରେ ଅନ୍ୟର ଜମି ଚାଷ କରି ଭଲରେ ଦୁଇ ପଇସା ରୋଜଗାର କରି ପାରୁଛି । ଆଉ କିଛି ଜମି ଭାଗ ନେଇ ଚାଷ କରୁଛି । ଏଥିରୁ ତା'ର ବର୍ଷକର ଖାଦ୍ୟ ମିଳୁଛି । ଧାନ ଫସଲ ପରେ ସେ ମଧ୍ୟ ପନିପରିବା ଓ ରବି ଫସଲ କରୁଛି । ବର୍ତ୍ତମାନ ଶୁକୁରୁର ଆଉ ଅଭାବ ନାହିଁ କହିଲେ ଚଳେ । ଭଉଣୀକୁ ବିବାହ ଦେବା ପାଇଁ ଆବଶ୍ୟକୀୟ ଜିନିଷପତ୍ର ମଧ୍ୟ ଧୀରେଧୀରେ ସଂଗ୍ରହ କରୁଛି । ତା'ର ପୁଅଟିଏ ଓ ଝିଅଟିଏ । ଅଧିକ ସନ୍ତାନ ପାଇଁ ଶୁକୁରୁ ଆଦୌ ଆଗ୍ରହୀ ନୁହେଁ । ଏଣୁ ସେ ମଧ୍ୟ ସରକାରଙ୍କର ଯୋଜନା ମୁତାବକ ସବୁଜ ପତ୍ରର ଅଧିକାରୀ ହେବାକୁ ଚାହୁଁଛି । ଏଣୁ ତା'ର ସ୍ତ୍ରୀକୁ ସ୍ଥାନୀୟ ଡାକ୍ତରଖାନାରେ ଅପରେସନ୍ କରିବାକୁ ମନସ୍ଥ କରିଛି ।

ଶୁକୁରୁ କହେ ପବନ ହେଲେ ପତ୍ର ଓଲଟିଲା ଭଳି ସରକାରଙ୍କ ଯୋଜନା ଦ୍ୱାରା ତା'ର ଭାଗ୍ୟର ପରିବର୍ତ୍ତନ ହୋଇପାରିଛି । ଯଦି ଋଣ ଗ୍ରହୀତାମାନେ ଠିକ୍ ଭାବରେ ଋଣକୁ କାର୍ଯ୍ୟରେ ବିନିଯୋଗ କରିବେ, ତେବେ ନିଶ୍ଚିତ ଭାବେ ସମାଜର ଆର୍ଥିକ ମାନଦଣ୍ଡ ମଜଭୁତ ହେବ ।

ଶ୍ରୀ ନରେନ୍ଦ୍ର ନାଥ ନାୟକ
ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ ଅଧିକାରୀ,
ପାଲଲହଡା ।

## ତୋଳିଲେ ପକ୍କାର ଖମାର

ଦ୍ୱିଜବର ସ୍ୱାଇଁ, ଲକ୍ଷ୍ମୀନାରାୟଣପୁର ଗ୍ରାମର ଜଣେ କ୍ଷୁଦ୍ର ଚାଷୀ । ଚାଷଜମି ଦୁଇ ଏକରରୁ କମ୍ । ଏହି ଗ୍ରାମଟି ଭୁବନେଶ୍ୱର-ପୁରୀ ରାସ୍ତାରୁ ପ୍ରାୟ ୧୭ କି.ମି. ଦୂରରେ ଅବସ୍ଥିତ । ଗ୍ରାମର ଅଧିକାଂଶ ଗ୍ରାମବାସୀ ସମ୍ପୂର୍ଣ୍ଣ ଭାବେ ଚାଷ ଉପରେ ନିର୍ଭର କରନ୍ତି । ଜଳସେଚନର ସୁବିଧା ଥିବାରୁ ବର୍ଷରେ ଦୁଇଥର ଫସଲ ହୁଏ । ଧାନ, ମୁଗ, ବିରି ସାଙ୍ଗକୁ ନାନା ପ୍ରକାର ପରିବା ପତ୍ର ମଧ୍ୟ ଚାଷ ହୁଏ । ପ୍ରାୟ ଦଶବର୍ଷ ତଳେ ଦ୍ୱିଜବର ଅନ୍ତର ସହିତ ପାରମ୍ପରିକ ପ୍ରଣାଳୀରେ ଚାଷ କରି ଦୁଇ ଏକର ଜମିରୁ ଫସଲ ଫଳାଇ ପରିବାର ପ୍ରତିପୋଷଣ କରୁଥିଲେ । ବୟସ ପ୍ରାୟ ୭୦ ବର୍ଷ । ନୂତନ

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| ଲାଇକେରା | ହେମାନନ୍ଦ ବିଶ୍ୱାଳ | କଂଗ୍ରେସ | ୩୧,୧୭୭ | ୧,୬୩୭ |
| ଭଟ୍ଲି | କୁମାର ବେହେରା | ଜନତା | ୩୫,୬୧୬ | ୯,୧୮୦ |
| ବରଗଡ | ପ୍ରସନ୍ନ ଆଚାର୍ଯ୍ୟ | ଜନତା | ୬୩,୯୯୦ | ୩୧,୦୩୫ |
| କୁଚିଣ୍ଡା | ବୃନ୍ଦାବନ ମାଝି | ଜନତା | ୩୬,୦୪୫ | ୧୬,୩୧୨ |
| ବିଜେପୁର | ନିକୁଞ୍ଜ ବିହାରୀ ସିଂ | ଜନତା | ୪୮,୯୩୪ | ୨୬,୮୮୫ |

## ସୁନ୍ଦରଗଡ

| ନିର୍ବାଚନ ମଣ୍ଡଳୀ | ପ୍ରାର୍ଥୀଙ୍କ ନାମ | ଦଳ | କେତେ ଭୋଟ ପାଇଛନ୍ତି | କେତେ ଅଧିକ ଭୋଟରେ ଜିତିଛନ୍ତି |
|---|---|---|---|---|
| ତଳସରା | ରଣଜିତ୍ ଭିତ୍ରିଆ | ଜନତା | ୨୯,୯୨୫ | ୧୪,୪୬୮ |
| ସୁନ୍ଦରଗଡ | ଭରତେନ୍ଦୁ ଶେଖର ଦେଓ | ଜନତା | ୫୧,୦୯୧ | ୨୬,୫୮୦ |
| ରାଜଗାଙ୍ଗପୁର | ମଙ୍ଗଳ କିଶାନ | ଜନତା | ୪୦,୬୭୪ | ୨୫,୮୨୪ |
| ବୀରମିତ୍ରପୁର | ସତ୍ୟନାରାୟଣ ପ୍ରଧାନ | ଜନତା | ୨୧,୯୦୧ | ୮,୧୫୪ |
| ବଣାଇ | କୁଆଁଲ ଓରାମ | ବି.ଜେ.ପି. | ୨୫,୯୨୧ | ୧,୯୩୨ |
| ରଘୁନାଥପାଲି | ରବି ଦେହୁରି | ଜନତା | ୩୫,୬୧୧ | ୧୦,୧୭୯ |
| ରାଉରକେଲା | ଦିଲ୍ଲୀପ୍ କୁମାର ରାୟ | ଜନତା | ୭୬,୫୭୦ | ୫୮,୦୧୩ |

## (ଜିଲ୍ଲା ଭିତ୍ତିରେ ଦଳୀୟ ସ୍ଥିତି)

| ଜିଲ୍ଲା | ଜନତା | କଂଗ୍ରେସ | ସି.ପି.ଆଇ. | ସି.ପି.ଆଇ.(ଏମ୍) | ବି.ଜେ.ପି. | ସ୍ୱାଧୀନ |
|---|---|---|---|---|---|---|
| କଟକ | ୨୩ | ୧ | .. | ୧ | .. | ୧ |
| କଳାହାଣ୍ଡି | ୭ | .. | .. | .. | ୧ | .. |
| କେନ୍ଦୁଝର | ୬ | .. | .. | .. | .. | .. |
| କୋରାପୁଟ | ୧୧ | ୩ | .. | .. | .. | .. |
| ଗଞ୍ଜାମ | ୧୧ | ୧ | ୩ | .. | .. | .. |
| ପୁରୀ | ୧୬ | .. | .. | .. | .. | .. |
| ବଲାଙ୍ଗୀର | ୮ | .. | .. | .. | .. | ୧ |
| ସୁନ୍ଦରଗଡ | ୬ | .. | .. | .. | ୧ | .. |
| ଫୁଲବାଣୀ | ୩ | ୧ | .. | .. | .. | .. |
| ମୟୂରଭଞ୍ଜ | ୮ | .. | .. | .. | .. | ୨ |
| ସମ୍ବଲପୁର | ୯ | ୨ | ୧ | .. | .. | .. |
| ଢେଙ୍କାନାଳ | ୬ | ୧ | .. | .. | .. | ୧ |
| ବାଲେଶ୍ୱର | ୯ | ୧ | ୧ | .. | .. | ୧ |
| ମୋଟ | ୧୨୩ | ୧୦ | ୫ | ୧ | ୨ | ୬ |



**ଶ୍ରୀ ବିଜୁ ପଟ୍ଟନାୟକ**—ମୁଖ୍ୟମନ୍ତ୍ରୀ – ସାଧାରଣ ପ୍ରଶାସନ, ସ୍ୱରାଷ୍ଟ୍ର, ଯୋଜନା ଓ ସମନ୍ୱୟ, ଶିଳ୍ପ, ସେଚ ଓ ଶକ୍ତି (ଶକ୍ତି), ବିଜ୍ଞାନ କାରିଗରୀ କୌଶଳ ଓ ପରିବେଶ (ବିଜ୍ଞାନ ଓ କାରିଗରୀ କୌଶଳ), ବାଣିଜ୍ୟ ଓ ପରିବହନ, ଖଣି ଓ ଭୂତତ୍ତ୍ୱ, ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ, ହରିଜନ ଓ ଆଦିବାସୀ ମଙ୍ଗଳ, ପର୍ଯ୍ୟଟନ, କ୍ରୀଡା ଓ ସଂସ୍କୃତି, ଖାଦ୍ୟ ଓ ଯୋଗାଣ, ଶ୍ରମ ଓ ନିଯୁକ୍ତି, ସୂଚନା ଓ ଲୋକସମ୍ପର୍କ, ଶିକ୍ଷା ଓ ଯୁବକଲ୍ୟାଣ (ଯୁବକଲ୍ୟାଣ), ଜଙ୍ଗଲ, ମତ୍ସ୍ୟ ଓ ପଶୁପାଳନ (ମତ୍ସ୍ୟ ଓ ପଶୁପାଳନ) ଏବଂ ନିର୍ଦ୍ଦିଷ୍ଟ ଭାବେ ବଣ୍ଟନ କରାଯାଇ ନ ଥିବା ଅନ୍ୟାନ୍ୟ ବିଭାଗ ।

ପ୍ରଣାଳୀରେ ଚାଷବାସ କରିବାକୁ ତାଙ୍କ ପକ୍ଷେ ସହଜ ନୁହେଁ । ମାତ୍ର ଶ୍ରମ ନ କଲେ ସଂସାର ନିର୍ବାହ ସମ୍ଭବ ନୁହେଁ । ଏ ଯୁଗରେ ପାରିବାରିକ ଚାହିଦା ମଧ୍ୟ ଉଣା ନୁହେଁ । ଟି.ଭି., ରେଡିଓ ତ ଏବେ ଆମର ନିତ୍ୟ ସାଥି ।

ପୁଅ ଲକ୍ଷ୍ମୀଧର ସ୍ବାଇଁ ଜଣେ ରୁଚିସମ୍ପନ୍ନ ଯୁବକ । ପାଖ ପଡୋଶୀଙ୍କଠାରୁ ପ୍ରେରଣା ପାଇ ସେ ଉନ୍ନତ ପ୍ରଣାଳୀରେ ଚାଷ କରିବାରୁ ଭଲ ଫସଲ ଅମଳ ହେଲା । ନିଜ ଜମି ଦୁଇ ଏକରକୁ ଛାଡି ଆଉ ଦୁଇ ଏକର ମଧ୍ୟ ଭାଗଚାଷ କଲା । ବର୍ଷକୁ ହାରାହାରି ୪୦ରୁ ୫୦ ବସ୍ତା ଧାନ ମିଳିଲା । ମାତ୍ର ଧାନକୁ ସାଇତି ରଖିବ କେମିତି ? ଝାଟିମାଟି ଘର, ବସ୍ତା ଓ ଓଳିଆରେ ଧାନ ରହିଲେ ପ୍ରାୟ ୫/୧୦ ବସ୍ତା ଧାନ ପୋକ, ମୂଷା, ଫିମ୍ପି ମାରିବା ଯୋଗୁଁ ନଷ୍ଟ ହୋଇଯାଏ । ତେଣୁ କଷ୍ଟରେ ବର୍ଦ୍ଧିତ ପରିବାରକୁ ପ୍ରତିପୋଷଣ କରିବା ଦୁଃସାଧ୍ୟ ହୁଏ ।

କେନ୍ଦ୍ର ସରକାରଙ୍କ ଭୁବନେଶ୍ବରସ୍ଥିତ "ଶସ୍ୟ ସଂରକ୍ଷଣ ଅଭିଯାନ" ଲକ୍ଷ୍ମୀନାରାୟଣପୁରକୁ ଏକ ଆଦର୍ଶ ଗ୍ରାମ କରିବା ପାଇଁ ନିଷ୍ପତ୍ତି ନେଲେ । ୧୯୮୧ରେ ଗୋଟିଏ ୨୧ ଦିନିଆ ଲାଭପ୍ରଦ ତାଲିମ ଶିବିର ଆୟୋଜନ କରାଗଲା । ସେଥିରେ ଗ୍ରାମର ୨୧ ଜଣ ଚାଷୀ ତାଲିମ ନେଲେ । ସେମାନଙ୍କ ସହିତ ଦ୍ବିଜବରଙ୍କ ପୁଅ ଲକ୍ଷ୍ମୀଧର ତାଲିମ ନେଲା । ତାଲିମ ସମୟରେ ଲକ୍ଷ୍ମୀଧର ଶସ୍ୟାଧାରରୁ, ଅର୍ଥାତ୍ ଧାନବସ୍ତା ଓ ଡୋଲିରେ ସଂରକ୍ଷିତ ଶସ୍ୟରୁ ପୋକ ମାରିବା ପାଇଁ ଇ.ଡି.ବି. ବ୍ୟବହାର ଓ ମୂଷା ମାରିବା ପାଇଁ ଅଗ୍ନିକୋଆଗୁଲାଣ୍ଟ ଔଷଧର ବ୍ୟବହାର କଲାବେଳେ ପ୍ରଥମେ ଦ୍ବିଜବର ସ୍ବାଇଁ ରାଗରେ ଗରଗର ହେଲା । କଥାରେ ଅଛି ଚଷା, ଲକ୍ଷେ ଜୀବ ପୋଷା । ସେମାନେ କୁଆଡେ ଲକ୍ଷ୍ମୀଙ୍କ ବାହନ । ଗଣେଶଙ୍କ ବାହନ । ତାକୁ ମାରିଲେ ପାପ । ଲକ୍ଷ୍ମୀଧର ବାପାଙ୍କୁ ଜବାବ୍ ନ ଦେଲେ ବି ଔଷଧ ପ୍ରୟୋଗ କରି କ୍ଷତିକାରକ ଜୀବଙ୍କୁ ନିପାତ କଲା । ଶସ୍ୟ ସଂରକ୍ଷଣ ଅଭିଯାନର କର୍ମକର୍ତ୍ତାଙ୍କଠାରୁ ପ୍ରେରଣା ପାଇ ଲକ୍ଷ୍ମୀଧର ୩୦ ବସ୍ତା ଧାନ ରହିବା ଭଳି ଦୁଇ କୋଠରୀ ପକ୍କା କୋଠି ତିଆରି କଲା । ଏଥିପାଇଁ ତାକୁ ସରକାରୀ ରିହାତି ମିଳିଲା । ପକ୍କାକୋଠିର ଉପକରଣ ମଧ୍ୟ ମାଗଣାରେ ମିଳିଥିଲା । ଗ୍ରାମର ଆଉ ୧୫ ଗୋଟି ପକ୍କା କୋଠି ତା' ପ୍ରେରଣାରେ ତିଆରି ହେଲା ।

ସେହି ଗ୍ରାମରେ ୧୯୯୦ ମସିହା ଜାନୁଆରୀ ମାସରେ ଆମେ ପାଇ ପହଞ୍ଚିବାରୁ ଦ୍ବିଜବର ଆମକୁ ଚିହ୍ନି ପାରି କହିଲା, "ଆପଣମାନେ ସେତେବେଳେ ଯେଉଁ କଥା ବୁଝାଉଥିଲେ ଆଜି ଆମେ ସେ ସବୁ ଅନୁଭବ କଲୁ । ଖାଦ୍ୟ ଶସ୍ୟ ହେଉଛି ଘରର ଲକ୍ଷ୍ମୀ । ଉପଯୁକ୍ତ ସେବା ଓ ଯତ୍ନ ଦ୍ବାରା ଲକ୍ଷ୍ମୀ ସର୍ବଦା ବିରାଜମାନ କରନ୍ତି । ପକ୍କାକୋଠିରେ ଶସ୍ୟ ସଂରକ୍ଷଣ ଯଥେଷ୍ଟ ସୁବିଧାଜନକ ।" ପଚାରିବାରୁ ବୁଝାଗଲା ବୁଢା ଇ.ଡି.ବି., ଜିଙ୍କ୍ ଫସଫାଇଡ୍ ନିଜେ ବଜାରରୁ କିଣି ଆଣି ପ୍ରୟୋଗ କରୁଛି । ଧାନ ବସ୍ତାକୁ ଉନ୍ନତ ଭାବରେ ସଜେଇ ରଖୁଛି । ଶସ୍ୟ ରଖିବା ଜାଗାକୁ ମଧ୍ୟ ପରିଷ୍କାର ପରିଚ୍ଛନ୍ନ ରଖୁଛି । ଆମେ ପଚାରିଲୁ, "ବସ୍ତା କୋଠି କିପରି କାମରେ ଲାଗୁଛି ?" ବୁଢା କହିଲା ଚାଉଳ ୩ କୁଇଣ୍ଟାଲ ରଖି ଦେଲେ ବର୍ଷସାରା ଆଉ ଚିନ୍ତା ନାହିଁ । ଆଗରୁ ବେଶୀ ଦିନ ରଖିଲେ ପୋକ ଲାଗୁ ଥିବାରୁ ବର୍ଷା ଦିନେ ଧାନ ଉଷେଇଁ ଚାଉଳ କରିବା ପାଇଁ ବହୁତ କଷ୍ଟ ହେଉଥିଲା । କିନ୍ତୁ ନଷ୍ଟ ମଧ୍ୟ ହେଉଥିଲା । ମାତ୍ର ବର୍ତ୍ତମାନ ସେ ସବୁ ଚିନ୍ତା ନାହିଁ ।" ଉତ୍ପାଦିତ ଶସ୍ୟକୁ ଉନ୍ନତ ବୈଜ୍ଞାନିକ ପ୍ରଣାଳୀରେ ସାଇତି ରଖିବା କ୍ରମବର୍ଦ୍ଧିଷ୍ଣୁ ସମାଜ ପାଇଁ ଏକାନ୍ତ ଜରୁରୀ । ତେଣୁ "ଗୋଟିଏ ଶସ୍ୟଦାନା ବଞ୍ଚାଇବାର ଗୋଟିଏ ଶସ୍ୟଦାନା ଫଳାଇବା ସହିତ ସମାନ" । ଏହି ଉକ୍ତିର ସାର୍ଥକତା ବୁଝି ପ୍ରତ୍ୟେକ ଚାଷୀ ସଂରକ୍ଷଣ ବ୍ରତୀ ହେବା ଉଚିତ ।

ଡକ୍ଟର ଏସ୍. କେ. ଘୋଷ
ବି. ଏନ୍. ମହାରଣା
ମିନିଷ୍ଟ୍ରି ଅଫ୍ ଫୁଡ୍ ଏଣ୍ଡ ସିଭିଲ୍ ସପ୍ଲାଇଜ୍,
479, ଶହୀଦ ନଗର—751 007





ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ – ଜଙ୍ଗଲ, ମତ୍ସ୍ୟ ଓ ପଶୁପାଳନ (ଜଙ୍ଗଲ) ଏବଂ ବିଜ୍ଞାନ, କାରିଗରୀ କୌଶଳ ଓ ପରିବେଶ (ପରିବେଶ)

ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ – ଶିକ୍ଷା ଓ ଯୁବକଲ୍ୟାଣ (ଶିକ୍ଷା)





## କ୍ୟାବିନେଟ ମନ୍ତ୍ରୀ

ଶ୍ରୀ ରାମକୃଷ୍ଣ ପଟ୍ଟନାୟକ – ଅର୍ଥ

ଶ୍ରୀ ବିଜୟ ମହାପାତ୍ର – ଜଳସେଚନ ଓ ଶକ୍ତି (ଜଳସେଚନ) ଏବ
ସାଧାରଣ ପ୍ରଶାସନ (ସଂସଦୀୟ ବ୍ୟାପାର)





ଶ୍ରୀ ଜଗନ୍ନାଥ ମଲ୍ଲିକ – କୃଷି ଓ ସମବାୟ

ଶ୍ରୀ ନରସିଂହ ମିଶ୍ର – ଆଇନ





ଶ୍ରୀ ଘାସିରାମ ମାଝୀ – ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

ଶ୍ରୀ ନଳିନୀ କାନ୍ତ ମହାନ୍ତି – ପୂର୍ତ୍ତ, ଗୃହ ନିର୍ମାଣ ଓ ନଗର ଉନ୍ନୟନ





ଶ୍ରୀ ଦିଲ୍ଲୀପ ରାୟ – ଶିଳ୍ପ

ଶ୍ରୀ ଯାଦବ ମାଝୀ – ଯୋଜନା ଓ ସମନ୍ୱୟ





ଶ୍ରୀ ସୁରେନ୍ଦ୍ର ନାଥ ନାୟକ – ରାଜସ୍ୱ ଓ ଅବକାରୀ

## ରାଷ୍ଟ୍ରମନ୍ତ୍ରୀ

ଶ୍ରୀ ଛୋଟରାୟ ମାଝୀ – ହରିଜନ ଓ ଆଦିବାସୀ କଲ୍ୟାଣ



# ସମ୍ବାଦ ପରିକ୍ରମା

## ବାଳାଶ୍ରମ ଉଦ୍‌ଘାଟିତ

ଭୁବନେଶ୍ୱର ଷ୍ଟେସନ୍ ନିକଟରେ ରୁଚିକା ସ୍କୁଲ ସମାଜ ସେବା ଶାଖା ପରିଚାଳିତ ବାଳାଶ୍ରମ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗତ ମାର୍ଚ୍ଚ ୭ ତାରିଖରେ ଉଦ୍‌ଘାଟନ କରିଛନ୍ତି । ଯେଉଁ ଅବହେଳିତ ପିଲାମାନେ ଆର୍ଥିକ ଅନଟନ ଓ ସାମାଜିକ ନିରାପତ୍ତା ଅଭାବରୁ ଧରାବନ୍ଧା ସ୍କୁଲ ଶିକ୍ଷାରୁ ବଞ୍ଚିତ ହେଉଛନ୍ତି ଏବଂ ଅପରାଧ ଦସ୍ତା, ଭିକ୍ଷା ଏବଂ କୁସଂସର୍ଗରେ ଜଡ଼ିତ ଅପକର୍ମ ପାଇଁ ପ୍ରୋତ୍ସାହିତ ହେଉଛନ୍ତି, ଏହି ଯୋଜନାଟି ବିଶେଷ ଭାବରେ ସେହିମାନଙ୍କ ଲାଗି ପରିକଳ୍ପିତ ।

ରାଜ୍ୟପାଳ ତାଙ୍କର ଅଭିଭାଷଣରେ ଏହି ମହାନ ପରିକଳ୍ପନା ନିମନ୍ତେ ରୁଚିକା ସ୍କୁଲର ନିର୍ଦ୍ଦେଶିକା ଓ ଶାଖାର ସମ୍ପାଦିକା ଶ୍ରୀମତୀ ଇନ୍ଦରଜିତ୍ ଖୁରାନାଙ୍କୁ ଅଭିନନ୍ଦନ ଓ ଧନ୍ୟବାଦ ଜଣାଇଥିଲେ । ଶ୍ରୀ ଶର୍ମା କହିଥିଲେ ଯେ ଆଜି ନୁହେଁ, ଅନେକ ବର୍ଷ ତଳେ ଲାଲା ଲଜପତ୍ ରାୟ ପ୍ରମୁଖ ଶିଶୁମାନଙ୍କର ଥଇଥାନ ଲାଗି ଅନାଥାଶ୍ରମ ଇତ୍ୟାଦି ଖୋଲିଥିଲେ । ବିଶ୍ୱରେ ଯେ କୌଣସି ସମୟରେ ଭୂମିକମ୍ପ, ଯୁଦ୍ଧ ଇତ୍ୟାଦି ଭଳି ବିପର୍ଯ୍ୟୟ ବେଳେ ଶିଶୁମାନଙ୍କ ରକ୍ଷଣାବେକ୍ଷଣ ଲାଗି ପ୍ରଥମେ ଧ୍ୟାନ ଦିଆଯାଉଥିଲା । ସେ ଏହି ପରିପ୍ରେକ୍ଷୀରେ ରାଜ୍ୟପାଳ ଦ୍ୱିତୀୟ ମହାଯୁଦ୍ଧ ବେଳେ ଓ ଭିଏତ୍‌ନାମ୍ ଯୁଦ୍ଧ ବେଳେ ଯଥାକ୍ରମେ ଲଣ୍ଡନ୍ ଓ ଭିଏତ୍‌ନାମ୍‌ର ଶିଶୁମାନଙ୍କୁ କିପରି ଅନ୍ତର୍ଗ୍ରାଉଣ୍ଡ ଭିତରେ ସୁରକ୍ଷିତ ଭାବରେ ରଖାଯାଇ ଶିକ୍ଷାଦାନ ଇତ୍ୟାଦିର ସୁବନ୍ଦୋବସ୍ତ କରାଯାଇଥିଲା ତାହା ଉଲ୍ଲେଖ କରିଥିଲେ । ରାଜ୍ୟପାଳ ଶ୍ରୀ ଶର୍ମା କହିଲେ ଯେ ଶିଶୁମାନେ ହେଉଛନ୍ତି ଈଶ୍ୱରଙ୍କର ବରଦାନ ଓ ଦେଶର ଭବିଷ୍ୟତ । ସେମାନଙ୍କ ସାବଲୀଳ ବିକାଶକୁ ପ୍ରୋତ୍ସାହନ ମିଳିବା ନିତାନ୍ତ ଆବଶ୍ୟକ । ସେମାନେ ଆମ ଦେଶ ବଗିଚାର ଚାରା ସଦୃଶ । ଚାରା ନଷ୍ଟ ହୋଇଗଲେ ବଗିଚାକୁ ରକ୍ଷା କରିବାର ପ୍ରଶ୍ନ ନାହିଁ । ଏହି ମହାନ କାର୍ଯ୍ୟ ଲାଗି ସମାଜର ସେବାପ୍ରାଣ ବ୍ୟକ୍ତିମାନଙ୍କର ସାହାଯ୍ୟ ସହଯୋଗ କାମନା କରିବା ସହିତ ଶ୍ରୀ ଶର୍ମା ନିଜକୁ ଏହି ମହାନ କାର୍ଯ୍ୟରେ ସାମିଲ କରାଇବେ ବୋଲି ତାଙ୍କର ଆନ୍ତରିକ ଇଚ୍ଛା ବ୍ୟକ୍ତ କରିଥିଲେ ଓ ଅନୁଷ୍ଠାନର କଲ୍ୟାଣ ଲାଗି ନିଜ ହାତରୁ ୧,୦୦୦ ଟଙ୍କା ପ୍ରଦାନ କରିଥିଲେ ।

୧୯୮୫ ଅପ୍ରେଲ୍ ମାସରେ ଏହି ଅନୁଷ୍ଠାନର ପରିକଳ୍ପନା ଭୁବନେଶ୍ୱର ଷ୍ଟେସନ୍‌ର ଏକ ନମ୍ବର ପ୍ଲାଟଫର୍ମରେ ଆରମ୍ଭ କରାଯାଇ ଜନ ସହଯୋଗ ଓ ଉତ୍ସାହୀ ଅନୁଷ୍ଠାନର କର୍ମୀ ଏବଂ ଅର୍ଥ ସାହାଯ୍ୟରେ ପରିଚାଳିତ ହୋଇ ବର୍ତ୍ତମାନ ଭୁବନେଶ୍ୱର ରାଜଧାନୀର ବସ୍ତି ଅଞ୍ଚଳରେ ୩୭ଟି କେନ୍ଦ୍ର ଖୋଲାଯାଇଛି । ସେଥି ମଧ୍ୟରୁ ଦଶୋଟି କେନ୍ଦ୍ରରେ ଉପାର୍ଜନକ୍ଷମ ପିଲାମାନଙ୍କୁ ଓ ତିନିଟି କେନ୍ଦ୍ରରେ ବାଳିକାମାନଙ୍କୁ ଆଶ୍ରୟ ଦିଆଯିବା ସଙ୍ଗେ ସଙ୍ଗେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ସାଧାରଣ ଓ ବୈଷୟିକ ଶିକ୍ଷା ଦିଆଯାଉଛି ।

ନିର୍ଦ୍ଦେଶିକା ଶ୍ରୀମତୀ ଖୁରାନା ଏହି କାର୍ଯ୍ୟକ୍ରମରେ ସଭାପତିତ୍ୱ କରି ପିଲାମାନଙ୍କୁ ଥଇଥାନ କରିବାକୁ ଜନ ସହଯୋଗ ଓ ସରକାରଙ୍କ କୃପା ଭିକ୍ଷା କରିଥିଲେ । ଉତ୍ସବ ଶେଷରେ ଶିଶୁମାନଙ୍କ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## ଜବାହର ରୋଜଗାର ଯୋଜନାର ଅଗ୍ରଗତି

ଜିବାହର ରୋଜଗାର ଯୋଜନାରେ ୧୯୮୯-୯୦ ଆର୍ଥିକ ବର୍ଷରେ ଫେବ୍ରୁୟାରୀ ମାସ ଶେଷ ସୁଦ୍ଧା ୬,୨୫୦ ଲକ୍ଷ ୩୮ ହଜାର ଟଙ୍କା ବ୍ୟୟରେ ୩୧୪ ଲକ୍ଷ ୨୮ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି । ଏହି କାର୍ଯ୍ୟକ୍ରମରେ ଆଦିବାସୀ ଓ ହରିଜନ ଶ୍ରମିକମାନେ ଯଥାକ୍ରମେ ୧୨୭ ଲକ୍ଷ ୨୬ ହଜାର ଓ ୯୫ ଲକ୍ଷ ୮୬ ହଜାର ଶ୍ରମ ଦିବସ ପାଇ ପାରିଛନ୍ତି । ମଜୁରୀ ବାବଦରେ ୩,୬୨୧ ଲକ୍ଷ ୯୬ ହଜାର ଟଙ୍କା ଖର୍ଚ୍ଚ ହୋଇଛି । ସେଥି ମଧ୍ୟରୁ ୧୪୫ ଲକ୍ଷ ୩୩ ହଜାର ଟଙ୍କା ବ୍ୟୟରେ ୩,୯୦୪ ମେଟ୍ରିକ୍ ଟନ୍ ଗୁଡ଼ାଳ ଓ ୨,୮୨୫ ମେଟ୍ରିକ୍ ଟନ୍ ଗହମ ଶ୍ରମିକମାନଙ୍କୁ ମଜୁରୀର ଅଂଶ ସ୍ୱରୂପ ଦିଆଯାଇଛି ।

ଗତ ଫେବ୍ରୁୟାରୀ ମାସରେ ୯୫୦ ଲକ୍ଷ ୬୧ ହଜାର ଟଙ୍କା ଖର୍ଚ୍ଚରେ ୫୦ ଲକ୍ଷ ୩୨ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ଏଥିରେ ଆଦିବାସୀ ଓ ହରିଜନ ଶ୍ରମିକ ଯଥାକ୍ରମେ ୨୩ ଲକ୍ଷ ୩ ହଜାର ଓ ୧୫ ଲକ୍ଷ ୪୪ ହଜାର ଶ୍ରମ ଦିବସ ପାଇ ପାରିଛନ୍ତି । ମଜୁରୀ ବାବଦ ମୋଟ୍



ଶ୍ରୀ ପ୍ରଫୁଲ୍ଲ ସାମଲ
ଶ୍ରମ ଓ ନିଯୁକ୍ତି



ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ
ଖାଦ୍ୟ ଓ ଯୋଗାଣ



ଉପମନ୍ତ୍ରୀ

ଶ୍ରୀ ପଦ୍ମନାଭ ବେହେରା
କ୍ରୀଡା, ସଂସ୍କୃତି ଓ ପର୍ଯ୍ୟଟନ

ଚଳିତ ଆର୍ଥିକ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୧୨୪·୬୦ ଭାଗ ସଫଳତା ହାସଲ କରାଯାଇଛି ।

ଭୂ-ସଂସ୍କାର କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୯-୯୦ ଆର୍ଥିକ ବର୍ଷର ଗତ ଜାନୁଆରୀ ଶେଷ ସୁଦ୍ଧା ମୋଟ୍ ୧,୨୩୫ ଏକର ଉଦ୍‌ବୃତ୍ତ ଜମି ଭୂମିହୀନଙ୍କ ମଧ୍ୟରେ ବଣ୍ଟାଯାଇ ଚଳିତ ବର୍ଷ ଏଥିପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୮୨·୩୩ ଭାଗ ସଫଳତା ହାସଲ କରାଯାଇଛି ।

ବସ୍ତି ଉନ୍ନୟନ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷର ଅପ୍ରେଲ୍ ମାସରୁ ଜାନୁଆରୀ ମାସ ଶେଷ ସୁଦ୍ଧା ୮ ହଜାର ୨୨୫ ଜଣ ବସ୍ତି ବାସିନ୍ଦା ପରିବେଶ ଉନ୍ନୟନ କାର୍ଯ୍ୟକ୍ରମରେ ଉପକୃତ ହୋଇଛନ୍ତି ବୋଲି ଜଣାପଡ଼ିଛି ଏବଂ ଏ କ୍ଷେତ୍ରରେ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୮୨·୧୫ ଭାଗ ସଫଳତା ହାସଲ ହୋଇଛି ।

## ହରିଜନ ଓ ଆଦିବାସୀ ପୋଷ୍ଟମାଟ୍ରିକ୍ ଛାତ୍ରବୃତ୍ତି ବୃଦ୍ଧି

ଭାରତ ସରକାରଙ୍କ ୧୯୮୧ ବିନିୟମ (ରେଗୁଲେସନ) ଅନୁଯାୟୀ ସ୍ୱୀକୃତିପ୍ରାପ୍ତ ମାଟ୍ରିକ୍ ପରବର୍ତ୍ତୀ ଶିକ୍ଷାନୁଷ୍ଠାନଗୁଡ଼ିକରେ ଅଧ୍ୟୟନ କରୁଥିବା ହରିଜନ ଓ ଆଦିବାସୀ ଛାତ୍ରବୃତ୍ତିର ହାର ବୃଦ୍ଧି କରାଯାଇଛି । ଏହା ୧୯୮୯ ଜୁଲାଇ ଏକ ତାରିଖଠାରୁ ଲାଗୁ କରାଯାଇଛି ।

ଏହା ଫଳରେ ମେଡ଼ିକାଲ, ଇଞ୍ଜିନିୟରିଂ, ବି: ଏସ୍: ସି: (କୃଷି), ବି: ଭି: ଏସ୍: ସି:, ବି: ଏଫ୍: ସି: (ମତ୍ସ୍ୟ ପାଳନ) ଏବଂ କୃଷି ଓ ପଶୁ ପାଳନ ବିଜ୍ଞାନରେ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ଅନ୍ତେବାସୀ ଛାତ୍ର ଛାତ୍ରୀ ୨୮୦ ଟଙ୍କା ଓ ଦିବାଧ୍ୟାୟୀ ଛାତ୍ର ଛାତ୍ରୀମାନେ ୧୨୫ ଟଙ୍କା ହାରରେ ବୃତ୍ତି ପାଇବେ । ସେହିପରି ଭାରତୀୟ ଭେଷଜ ବିଜ୍ଞାନ, ଆୟୁର୍ବେଦିକ୍ ଓ ଇଞ୍ଜିନିୟରିଂ ଇତ୍ୟାଦିରେ ସ୍ନାତକ ଏବଂ ଡିପ୍ଲୋମା ପାଠ୍ୟକ୍ରମରେ ଅଧ୍ୟୟନ କରୁଥିବା ଅନ୍ତେବାସୀ ଛାତ୍ର ଛାତ୍ରୀମାନେ ୧୯୦ ଟଙ୍କା ଏବଂ ଦିବାଧ୍ୟାୟୀ ଭାବେ ଅଧ୍ୟୟନ କରୁଥିବା ଛାତ୍ର ଛାତ୍ରୀମାନେ ୮୫ ଟଙ୍କା ବୃତ୍ତି ପାଇବେ । ସାଧାରଣ ପାଠ୍ୟକ୍ରମର ଦ୍ୱିତୀୟ ବର୍ଷଠାରୁ ସ୍ନାତକ ସ୍ତର ପର୍ଯ୍ୟନ୍ତ ଅଧ୍ୟୟନ କରୁଥିବା ଅନ୍ତେବାସୀ ଛାତ୍ର ଛାତ୍ରୀମାନଙ୍କ ବୃତ୍ତିକୁ ୧୩୫ ଟଙ୍କା ଏବଂ ଦିବାଧ୍ୟାୟୀ ଛାତ୍ରବୃତ୍ତିକୁ ୯୦ ଟଙ୍କାକୁ ବୃଦ୍ଧି କରାଯାଇଛି । +୨ ପାଠ୍ୟକ୍ରମର ଏକାଦଶ ଓ ଦ୍ୱାଦଶ ଶ୍ରେଣୀ, ଇଣ୍ଟରମିଡ଼ିଏଟ୍ ଓ ସାଧାରଣ ପାଠ୍ୟକ୍ରମର ପ୍ରଥମ, ଦ୍ୱିତୀୟ ବର୍ଷରେ ଅଧ୍ୟୟନ କରୁଥିବା ଅନ୍ତେବାସୀ ଏବଂ ଦିବାଧ୍ୟାୟୀ ଛାତ୍ର ଛାତ୍ରୀମାନେ ଯଥାକ୍ରମେ ୧୧୫ ଟଙ୍କା ଏବଂ ୬୫ ଟଙ୍କା ହାରରେ ବୃତ୍ତି ପାଇବେ । ଏହି ଶ୍ରେଣୀଭୁକ୍ତ ଦୃଷ୍ଟିହୀନ ଛାତ୍ର ଛାତ୍ରୀମାନଙ୍କର ପାଠକଙ୍କ ପ୍ରାପ୍ୟରେ ମଧ୍ୟ ୨୫ ଟଙ୍କାଠାରୁ ୩୫ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରାଯାଇଛି ।

ମାଟ୍ରିକ୍ ପରବର୍ତ୍ତୀ ବୃତ୍ତି ପାଇବା ପାଇଁ ହରିଜନ ଓ ଆଦିବାସୀ ଛାତ୍ର ଛାତ୍ରୀମାନଙ୍କର ପିତା ମାତା/ଅଭିଭାବକମାନଙ୍କର ମାସିକ ଆୟର ସର୍ବୋଚ୍ଚ ଆୟରେ ମଧ୍ୟ କୋହଳ କରାଯାଇଛି । ଏଥିପାଇଁ ପୂର୍ବରୁ ବିଭିନ୍ନ ପାଠ୍ୟକ୍ରମ ଲାଗି ୬୫୦ ଟଙ୍କାରୁ ସର୍ବାଧିକ ୧,୦୦୦ ଟଙ୍କା ସୀମା ଧାର୍ଯ୍ୟ କରାଯାଇଥିବା ସ୍ଥଳେ ତାହାକୁ ମାସିକ ୧,୫୦୦ ଟଙ୍କାରୁ ୨,୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଯେଉଁ ଛାତ୍ର ଛାତ୍ରୀମାନଙ୍କର ପିତା/ଅଭିଭାବକଙ୍କ ମାସିକ ସର୍ବମୋଟ୍ ଆୟ ୨,୦୦୦ ଟଙ୍କାରୁ ଅଧିକ, ସେମାନେ ଉକ୍ତ ବୃତ୍ତି ପାଇବେ ନାହିଁ । ଯେଉଁ ଛାତ୍ର ଛାତ୍ରୀମାନେ ପୂର୍ଣ୍ଣ ଭାବେ ଅନ୍ୟ କାର୍ଯ୍ୟରେ ନିଯୁକ୍ତି ପାଇଥିବେ, ସେମାନେ ମଧ୍ୟ ଏହି ବୃତ୍ତି ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ ନାହିଁ ।

ଉଲ୍ଲିଖିତ ଛାତ୍ରବୃତ୍ତି ବୃଦ୍ଧି ସମ୍ପର୍କରେ କେନ୍ଦ୍ର ସରକାରଙ୍କ ନିୟମାବଳୀର ନକଲ ରାଜ୍ୟ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଦ୍ୱାରା ମାଟ୍ରିକ୍ ପରବର୍ତ୍ତୀ ସମସ୍ତ ଶିକ୍ଷାନୁଷ୍ଠାନକୁ ଜଣାଇ ଦିଆଯାଇଛି ।

## ବୃକ୍ଷ ରୋପଣରେ ସଫଳତା

ରାଜ୍ୟରେ କାର୍ଯ୍ୟକାରୀ କରାଯାଉଥିବା କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ "ବନୀକରଣ ପାଇଁ ନୂତନ ଉଦ୍ୟମ" ଯୋଜନାରେ ଚଳିତ ଆର୍ଥିକ ବର୍ଷରେ ବିଭିନ୍ନ କାର୍ଯ୍ୟକ୍ରମରେ ୧୬ କୋଟି ବୃକ୍ଷ ରୋପଣ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଚଳିତ ଆର୍ଥିକ ବର୍ଷର ଗତ ଜାନୁଆରୀ ଶେଷ ସୁଦ୍ଧା ପ୍ରାୟ ୧୫ କୋଟି ୯୫ ଲକ୍ଷ ୬୦ ହଜାର ବୃକ୍ଷ ରୋପଣ କରାଯାଇ ଏ କ୍ଷେତ୍ରରେ ଶତକଡ଼ା ୯୯·୭୩ ଭାଗ ସଫଳତା ହାସଲ କରାଯାଇଛି ବୋଲି କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ପ୍ରକାଶ ।

## ଗୋବର ଗ୍ୟାସ୍ ପ୍ଲାଣ୍ଟ

କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମରେ "ଗ୍ରାମଗୁଡ଼ିକ ପାଇଁ ବିଭିନ୍ନ ଶକ୍ତି ପ୍ରକଳ୍ପ" କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ଗତ ଜାନୁଆରୀ ଶେଷ ସୁଦ୍ଧା ୬୬୮ଟି ଗ୍ରାମରେ ବିଦ୍ୟୁତ୍‌କରଣ, କୃଷି ପାଇଁ ଜଳସେଚନ ନିମନ୍ତେ ବ୍ୟବହୃତ ୩,୯୫୭ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ, ୩୬ ହଜାର ୩୬୮ଟି ଉନ୍ନତ ଚୁଲ୍ଲୀ ଯୋଗାଣ ଓ ୭,୩୯୯ଟି ଗୋବର ଗ୍ୟାସ ପ୍ଲାଣ୍ଟ ସ୍ଥାପନ କରାଯାଇଛି । ଗୋବର ଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କ୍ଷେତ୍ରରେ ଧାର୍ଯ୍ୟ ଲକ୍ଷ୍ୟକୁ ଟପିଯାଇ ଶତକଡ଼ା ୧୩୩·୯୮ ଭାଗ ସଫଳତା ହାସଲ କରାଯାଇଛି ବୋଲି କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ଜାନୁଆରୀ ମାସ ବିବରଣୀରୁ ପ୍ରକାଶ ।



ଭଦ୍ରକ କଲେଜର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ.....

୧୦୨ ଲକ୍ଷ ୪୯ ହଜାର ଟଙ୍କା ଖର୍ଚ୍ଚ ମଧ୍ୟରୁ ୪୧ ଲକ୍ଷ ୯୯ ହଜାର ଟଙ୍କା ନଗଦ ୧,୨୬୬ ମେଟ୍ରିକ ଟନ୍ ଗହମ ଓ ୨୮୫ ମେଟ୍ରିକ୍ ଟନ୍ ଚାଉଳ ଶ୍ରମିକମାନଙ୍କୁ ମଜୁରୀର ଅଂଶ ସ୍ୱରୂପ ଦିଆଯାଇଛି ।

## ଗୋଟି ଶ୍ରମିକ ଥଇଥାନ

ଗତ ଫେବ୍ରୁଆରୀ ମାସରେ ରାଜ୍ୟରେ ୫୫ ଜଣ ହରିଜନ ଓ ୨୩୮ ଜଣ ଆଦିବାସୀଙ୍କ ସମେତ ୩୯୩ ଜଣ ଗୋଟି ଶ୍ରମିକଙ୍କୁ ଥଇଥାନ କରାଯାଇଛି । ୧୯୮୯-୯୦ ଆର୍ଥିକ ବର୍ଷରେ ଫେବ୍ରୁଆରୀ ମାସ ଶେଷ ସୁଦ୍ଧା ୨୫୦ ଜଣ ହରିଜନ ଓ ୪୯୦ ଜଣ ଆଦିବାସୀଙ୍କ ସମେତ ୯୫୦ ଜଣ ଗୋଟି ଶ୍ରମିକଙ୍କୁ ଥଇଥାନ କରାଯାଇଛି ।

## ଦଶ ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଛାଡ଼

କୃଷକ, ଗ୍ରାମ୍ୟ କାରିଗର ଓ ଭୂମିହୀନ ଶ୍ରମିକମାନଙ୍କୁ ସେମାନଙ୍କ ଉପରେ ୦୨/୩/୯୦ରିଖ ସୁଦ୍ଧା ବାକି ଥିବା ଋଣ ମଧ୍ୟରୁ ସର୍ବାଧିକ ଦଶ ହଜାର ଟଙ୍କା ପର୍ଯ୍ୟନ୍ତ କେନ୍ଦ୍ର ସରକାରଙ୍କ ଦ୍ୱାରା ଧାର୍ଯ୍ୟ ପଦ୍ଧତି ଅନୁଯାୟୀ ଋଣ ଛାଡ଼ କରିବାକୁ ରାଜ୍ୟ ସରକାର ଆଜି ନିର୍ଦ୍ଦେଶ ଦେଇଛନ୍ତି । ଜନତା ଦଳର ନିର୍ବାଚନ ପ୍ରତିଶ୍ରୁତି ଅନୁଯାୟୀ ଏଭଳି ନିର୍ଦ୍ଦେଶ ଦିଆଯାଇଛି ।

ରାଜ୍ୟ କୃଷି ଓ ସମବାୟ ବିଭାଗ ପକ୍ଷରୁ ପଠାଯାଇଥିବା ଏକ ନିର୍ଦ୍ଦେଶନାମାରେ ଦର୍ଶାଯାଇଛି ଯେ ସମସ୍ତ ଋଣଦାତା ସଂସ୍ଥା ଯଥା–ସମବାୟ ଓ ବ୍ୟବସାୟିକ ବ୍ୟାଙ୍କ୍ ଉପରୋକ୍ତ ଶ୍ରେଣୀର ପ୍ରତ୍ୟେକ ଋଣ ଗ୍ରହୀତାଙ୍କ ଉପରେ ସେମାନଙ୍କ ଖାତାରେ ଲିଖିତ ଥିବା ଋଣର ପରିମାଣ ଜେଣ ଓ ସୁଧ ସ୍ୱତନ୍ତ୍ର ଭାବେ ଦର୍ଶାଇ ସମୀକ୍ଷୀୟ ବିବରଣୀ ରାଜ୍ୟ ସରକାରଙ୍କୁ ତୁରନ୍ତ ଜଣାଇବେ ।

ଇତିମଧ୍ୟରେ ଉପରୋକ୍ତ ଶ୍ରେଣୀର ଋଣ ଗ୍ରହୀତାମାନଙ୍କଠାରୁ ଋଣ ଅାଦାୟ ସ୍ଥଗିତ ରଖିବାକୁ ପରାମର୍ଶ ଦିଆଯାଇଛି । କେଉଁ ଋଣ ଗ୍ରହୀତାଙ୍କଠାରୁ କେତେ ପରିମାଣର ଋଣ ଛାଡ଼ କରାଯିବ ଓ କେଉଁ ପଦ୍ଧତି ଅନୁସରଣ କରାଯିବ ସେ ସମ୍ପର୍କରେ ବିସ୍ତୃତ ନିର୍ଦ୍ଦେଶନାମା ପଠାଯିବ । ନାବାର୍ଡ, ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍, କେନ୍ଦ୍ରୀୟ ସମବାୟ ବ୍ୟାଙ୍କ୍, ପ୍ରାଇମେରୀ କୃଷି ସମବାୟ ସଂସ୍ଥା, ବାଣିଜ୍ୟିକ ବ୍ୟାଙ୍କ୍ ଓ ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କଗୁଡ଼ିକରୁ ଦିଆଯାଇଥିବା ଋଣ ଛାଡ଼ କରିବା ପାଇଁ କି ପଦ୍ଧତି ଅନୁସରଣ କରାଯିବ, ତାହା ମଧ୍ୟ ସେମାନଙ୍କୁ ଜଣାଇ ଦିଆଯିବ ।

## ପ୍ରହ୍ଲାଦ ମଲ୍ଲିକଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି

### ଆଇନ ମନ୍ତ୍ରୀ ଶ୍ରୀ ନରସିଂହ ମିଶ୍ର ପୂର୍ବତନ ଯୋଜନା ବୋର୍ଡ଼ ସଦସ୍ୟ ତଥା ମନ୍ତ୍ରୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ବିୟୋଗରେ ନିମ୍ନୋକ୍ତ ଶୋକବାର୍ତ୍ତା ପ୍ରଦାନ କରିଛନ୍ତି :

"ପୂର୍ବତନ ଯୋଜନା ବୋର୍ଡ଼ ସଦସ୍ୟ ତଥା ମନ୍ତ୍ରୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ମର୍ମାହତ ।

"ଶ୍ରୀ ମଲ୍ଲିକ ପଟ୍ଟାମୁଣ୍ଡାଇ ବିଧାନ ସଭା ନିର୍ବାଚନ ମଣ୍ଡଳୀରୁ ୧୯୬୭ ମସିହାରେ ନିର୍ବାଚିତ ହୋଇଥିଲେ । ତାଙ୍କର ବଳିଷ୍ଠ ନେତୃତ୍ୱ ଓ ଲୋକପ୍ରିୟତା ଯୋଗୁଁ ସେ ପାଞ୍ଚଥର ନିର୍ବାଚନରେ ଉଦ୍ଦୀପ୍ତ ହୋଇ ବିଭିନ୍ନ ସମୟରେ ମନ୍ତ୍ରୀ ଭାବେ ରାଜ୍ୟର ଜଳସେଚନ ଯୋଜନା ବିଭାଗ ଦାୟିତ୍ୱରେ ରହିଥିଲେ ।

"ଶ୍ରୀ ମଲ୍ଲିକଙ୍କ ବିୟୋଗରେ ଓଡ଼ିଶା ଜଣେ ଉତ୍ସର୍ଗୀକୃତ ଜନ ସେବକଙ୍କୁ ହରାଇଲା ।

"ମୁଁ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରୁଛି ।"

### ରାଜସ୍ୱ ଓ ଅବକାରୀ ବିଭାଗ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକଙ୍କ ଶୋକବାର୍ତ୍ତା :

"ପୂର୍ବତନ ମନ୍ତ୍ରୀ ତଥା ଯୋଜନା ବୋର୍ଡ଼ ସଦସ୍ୟ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ସମ୍ବାଦ ପାଇ ମୁଁ ବିଶେଷ ଭାବେ ମର୍ମାହତ ।

"ଶ୍ରୀ ମଲ୍ଲିକ ପ୍ରଥମେ ୧୯୬୭ ମସିହାରେ ପଟ୍ଟାମୁଣ୍ଡାଇ ନିର୍ବାଚନ ମଣ୍ଡଳୀରୁ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ସେ ଜଣେ ଜନପ୍ରିୟ ନେତା ଭାବେ ସୁପରିଚିତ ଥିଲେ ଓ ରାଜ୍ୟ ବିଧାନ ସଭାକୁ ପାଞ୍ଚଥର ନିର୍ବାଚିତ ହୋଇ ବିଭିନ୍ନ ସମୟରେ ମନ୍ତ୍ରୀ ଦାୟିତ୍ୱରେ ଦକ୍ଷ ପ୍ରଶାସକ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ରାଜ୍ୟରେ ଜଳସେଚନ ଯୋଜନା ପ୍ରସାର ଦିଗରେ ସେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ।

"ମୁଁ ସ୍ୱର୍ଗତ ଆତ୍ମାର ଶାନ୍ତି କାମନା କରିବା ସଙ୍ଗେ ସଙ୍ଗେ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରୁଛି ।"

### ହରିଜନ ଓ ଆଦିବାସୀ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀଙ୍କ ଶୋକବାର୍ତ୍ତା :

"ଯୋଜନା ବୋର୍ଡ଼ର ସଦସ୍ୟ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ମୃତ୍ୟୁରେ ମୁଁ ଅତ୍ୟନ୍ତ ମର୍ମାହତ । ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ଶ୍ରୀ ମଲ୍ଲିକ ଦଳିତ ଓ ନିପୀଡ଼ିତଙ୍କ ଉନ୍ନତି ନିମନ୍ତେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ ମୃତ୍ୟୁରେ ଓଡ଼ିଶା ଜଣେ ନିଷ୍ଠାପର ଜନସେବୀଙ୍କୁ ହରାଇଲା ।

"ମୁଁ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛି ।"

## ଆଇ: ଆର୍: ଡି: ପି:ର ସାଫଲ୍ୟ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (ଆଇ: ଆର୍: ଡି: ପି:)ରେ ମୋଟ୍ ୧ ଲକ୍ଷ ୪୦ ହଜାର ୩୪୩ ପରିବାରଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଜାନୁଆରୀ ମାସ ଶେଷ ସୁଦ୍ଧା ୧ ଲକ୍ଷ ୯୧ ହଜାର ପରିବାର ଏଥିରେ ଉପକୃତ ହୋଇଛନ୍ତି । ଧାର୍ଯ୍ୟ ଲକ୍ଷ୍ୟର ଏହା ହେଉଛି ଶତକଡ଼ା ୭୯.୧୧ ଭାଗ ବୋଲି ଜାନୁଆରୀ ମାସରେ ପ୍ରକାଶିତ ଏକ ସମୀକ୍ଷୀୟ ବିବରଣୀରୁ ଜଣାପଡ଼ିଛି ।

ଜବାହର ରୋଜଗାର ଯୋଜନା ଅନୁଯାୟୀ ରାଜ୍ୟର ଗ୍ରାମାଞ୍ଚଳରେ ଯେଉଁସବୁ ଶ୍ରମନିବିଡ଼ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି, ତଦନୁସାରେ ଚଳିତ ବର୍ଷ ୪ କୋଟି ୬୬ ଲକ୍ଷ ୭୮ ହଜାର ଶ୍ରମ ଦିବସ ସୃଷ୍ଟି କରିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଜାନୁଆରୀ ଶେଷ ସୁଦ୍ଧା ଏହି କାର୍ଯ୍ୟକ୍ରମରେ ୨ କୋଟି ୬୩ ଲକ୍ଷ ୯୬ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଗ୍ରାମାଞ୍ଚଳ ଲୋକମାନଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଛି ବୋଲି ଉକ୍ତ ବିବରଣୀରୁ ପ୍ରକାଶ ।

## ବାସହୀନଙ୍କୁ ଘରଡିହ ଯୋଗାଣ

ଚଳିତ ଆର୍ଥିକ ବର୍ଷ ଗତ ଜାନୁଆରୀ ଶେଷ ସୁଦ୍ଧା ୧୭ ହଜାର ୯୧୦ ଜଣ ବାସହୀନ ବ୍ୟକ୍ତିଙ୍କୁ ଘରଡିହ ଯୋଗାଇ ଦିଆଯାଇଛି । ଏ କ୍ଷେତ୍ରରେ

# ଐତିହାସିକ ଦୁର୍ଗ ରାଇବଣିଆ

ଡକ୍ଟର୍ ଶୈଳେନ୍ଦ୍ର ଲେଙ୍କା

ଇତିହାସ କେବଳ ରାଜନୈତିକ ଘଟଣାର ସମାହାର ନୁହେଁ କିମ୍ବା ସାମ୍ରାଜ୍ୟ ଉତ୍ଥାନ–ପତନର ଏକ ଅଭିଲେଖ ନୁହେଁ । ଏହା ଜାତିର ଜୀବନ ଗୀତି, ତାହାର ସାଧନା ଓ ସିଦ୍ଧିର ବାଣୀ, ମାନବିକ ବିବର୍ତ୍ତନର ଏକ ରହସ୍ୟ ବିଜଡ଼ିତ କାହାଣୀ । ସଭ୍ୟତାର ରାଜ ରାସ୍ତାରେ ମାନବର ଜୀବନ ଯାତ୍ରା କାହାଣୀ; ଯୁଗ ଯୁଗ ଧରି ପ୍ରଶାସନର କାହାଣୀ — ଏଥିରେ ସନ୍ନିବେଶିତ । ଅତୀତର ସଭ୍ୟତା ପ୍ରାୟତଃ ରାଜବଂଶକୁ କେନ୍ଦ୍ର କରି ଗଢ଼ି ଉଠିଛି ।

ଓଡ଼ିଶା ପରମ୍ପରା ଇତିହାସର ଗୋଟିଏ ପର୍ବ । ଯଦିଚ ମୋଗଲ–– ମରହଟ୍ଟା ଶାସନ କାଳରେ ଓଡ଼ିଶାର ସାମନ୍ତବାଦୀ ରାଜତନ୍ତ୍ର ଜାତୀୟ ଗୌରବ ପ୍ରତି କେବେ କେବେ ଉଦାସୀନ ରହି କେବଳ ଆପ ସ୍ୱାର୍ଥ ସାଧନରେ ବ୍ୟସ୍ତ ତଥାପି ସେତେବେଳର ସାହିତ୍ୟ ରାଜବଂଶର କିମ୍ବଦନ୍ତୀ ଓ ଇତିହାସ ଏ ଦେଶର ସୁପ୍ତ ଜୀବନକୁ ଜାଗ୍ରତ କରିଥିଲା । ପ୍ରାଚୀନ ମଧ୍ୟ ଓ ଆଧୁନିକ ଯୁଗର ବହୁ ଘଟଣା ଏବେ ମଧ୍ୟ ଇତିହାସର ଅନ୍ଧାର ଗୋହିରୀରେ ପଡ଼ି ରହିଛି । ଉତ୍କଳର ଐତିହ୍ୟ ତୁଳନାରେ ଇତିହାସ ପ୍ରଣୟନ ବିଶେଷ ଉତ୍ସାହପ୍ରଦ ହୋଇପାରି ନାହିଁ ।

ଇତିହାସ ବିସ୍ମୃତ "ରାଇବଣିଆ" ଗଡ଼ — ବହିର୍ଭାଗର ଭାସ୍କର୍ଯ୍ୟ ଓ କାରୁକାର୍ଯ୍ୟ ଓଡ଼ିଶାର ପ୍ରାଥମିକ ମଧ୍ୟଯୁଗୀୟ କଳାର ନିଦର୍ଶନ । ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଯେଉଁ ସବୁ ତଥ୍ୟମାନ ସଂଗୃହୀତ ତାହା ଗବେଷଣା ପାଇଁ ଯଥେଷ୍ଟ ନୁହେଁ । ଜନ୍ ବୀମସ ସାହେବ ରାଇବଣିଆ ଗଡ଼ ଉପରେ ପ୍ରଥମେ ଆଲୋକପାତ କରିଥିଲେ । ପରବର୍ତ୍ତୀ କାଳରେ ଡକ୍ଟର୍ ମହତାବ ରାଇବଣିଆ ଦୁର୍ଗକୁ ପାଠକର ଦୃଷ୍ଟିକୁ ଆଣି, ଅତୀତର ଗୌରବମୟ ସଭ୍ୟତାର ବିପର୍ଯ୍ୟୟକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶିକ୍ଷିତ ଯୁବ ମାନସରେ ଗଭୀର ଆଲୋଡ଼ନ ସୃଷ୍ଟି କଲେ । ଜନ୍ ବୀମ୍ସଙ୍କ ରଚନାରୁ ରାଇବଣିଆ ଗଡ଼ର ପ୍ରାଚୀନ ତତ୍ତ୍ୱ ସମ୍ପର୍କରେ କେତେକ ତଥ୍ୟ ମିଳିଥାଏ । ଅତୀତରେ ରାଇବଣିଆ ଗୁଡ଼ିଏ ବିଶାଳ ଦୁର୍ଗରେ ବିଭକ୍ତ ଥିଲା । କାଳକ୍ରମେ "ଫୁଲତା" ଗ୍ରାମ ନିକଟରେ ଥିବା ଦୁର୍ଗ ଦୁଇଟି ସମ୍ପୂର୍ଣ୍ଣ ଭାବରେ ନିଶ୍ଚିହ୍ନ ହୋଇଯାଇଥିଲେ ମଧ୍ୟ ରାଇବଣିଆ ଗ୍ରାମର ସନ୍ନିକଟ ବିଶାଳଗଡ଼ ଦୁଇଟିର ଭଗ୍ନୋନ୍ମୁଖ ଅବଶେଷ ରହିଛି ।

ରାଇବଣିଆ ଗଡ଼ ଏକ ସୁବିସ୍ତୃତ ପଥର ଭୂମି ଉପରେ ଗଢ଼ି ଉଠିଛି । ଗଡ଼ର କାନ୍ଥ ଓ ପ୍ରାଚୀରମାନ ମାଙ୍କଡ଼ା ପଥର ଦ୍ୱାରା ସୁଦୃଢ଼ ଭାବେ ନିର୍ମିତ । କାଳକ୍ରମେ ଏହି ବନବେଷ୍ଟିତ ପରିବେଶ ବନ୍ୟ ଜନ୍ତୁର କ୍ରୀଡ଼ାସ୍ଥଳ ହୋଇଛି । ଗଡ଼ର ପୂର୍ବ ପାର୍ଶ୍ୱ ୧,୬୫୦ ଗଜ ଓ ଦକ୍ଷିଣ ପାର୍ଶ୍ୱ ୮୮୦ ଗଜ । ଗଡ଼ର ଉତ୍ତର ଏବଂ ଦକ୍ଷିଣ ପାର୍ଶ୍ୱ ବନ ବେଷ୍ଟିତ । ଜନ୍ ବୀମସ୍ ସାହେବଙ୍କର ପ୍ରଥମ ବର୍ଣ୍ଣନାରୁ ଅନୁମିତ ହୁଏ ଯେ ଅତି କୌତୁହଳପୂର୍ଣ୍ଣ ଭାବେ ଗଡ଼ର କାନ୍ଥ ନିର୍ମିତ । ଗଡ଼ କାନ୍ଥର ମୂଳ ପତ୍ତନ ୧୧୨ ଫୁଟ୍; ପ୍ରସ୍ଥ ଏବଂ ଉଚ୍ଚତା ପ୍ରାୟ ୫୦ ଫୁଟ । କାନ୍ଥ ଉପର ଚାରି ଫୁଟ ମାଟି ଦ୍ୱାରା ଆଚ୍ଛାଦିତ ଓ ଆବରଣଯୁକ୍ତ । ଏହାର ଚତୁପାର୍ଶ୍ୱରେ ସୁଗଭୀର ତିନୋଟି ପରିଖା ରହିଛି । ବହିଃଶତ୍ରୁ ଆକ୍ରମଣରୁ ଗଡ଼କୁ ରକ୍ଷା କରିବା ପାଇଁ ଏ ସବୁ ଜାଗ୍ରତ ପ୍ରହରୀ ରୂପେ ରହିଥିଲା । ସମ୍ପ୍ରତି ତାହା ଅର୍ଦ୍ଧ ଲୁଣ୍ଠିତ ଅବସ୍ଥାରେ ମାଟିରେ ମିଶିଯିବା ଉପରେ । ଗଡ଼ର ମଧ୍ୟ ଭାଗରେ ଥିବା ବିଶାଳ ସମତଳ ଭୂମିରେ ଗୃହ ସବୁର ଭଗ୍ନାବଶେଷ ରହିଛି । ପୋତି ହୋଇଯାଇଥିବା ପୋଖରୀ ତଥା କଣ୍ଟାଘେରା ଜଙ୍ଗଲ ମଧ୍ୟ ଅଛି । କେତେକ କିମ୍ବଦନ୍ତୀରୁ ଜଣାଯାଏ ଯେ ଉତ୍ତର–ପଶ୍ଚିମ କୋଣର ରାଜପ୍ରାସାଦ ଭିତରେ ଅତୀତର କୀର୍ତ୍ତିରାଜି ରହିଅଛି । ଗଡ଼ ମଧ୍ୟରେ "ଜୟଚଣ୍ଡୀ" ବନ ସେ କାଳର ଧର୍ମ ବିଶ୍ୱାସର ସ୍ମାରକୀ । ଅନେକ ଦେବା ଦେବୀଙ୍କର ଆଶ୍ରୟସ୍ଥଳୀ ଭାବେ ମଧ୍ୟ ଏଇ ବନର ମହତ୍ତ୍ୱ ରହିଛି । ବର୍ତ୍ତମାନ ଦୁଇଟ ଦେବା ଦେବୀ ପାଷାଣ ମୂର୍ତ୍ତିମାନଙ୍କରେ ପୂଜିତ ହେଉଥିବାର ଦେଖିବାକୁ ମିଳେ । ଗଡ଼ ମଧ୍ୟସ୍ଥ "ସାତପୁର" ଅଟ୍ଟାଳିକା ନାମକ ଅନ୍ୟ ଏକ ଗଡ଼ ଅଛି । ଏହାର ପୂର୍ବ ଦ୍ୱାରକୁ ହାତୀ ଦ୍ୱାର କୁହାଯାଏ ।

ରାଇବଣିଆ ଭଳି ଏକ ବିଶାଳ ଗଡ଼ କେଉଁ ଶତାବ୍ଦୀରେ ଗଢ଼ି ଉଠିଥିଲା ଓ କେବେ କାହାଦ୍ୱାରା ପରିତ୍ୟକ୍ତ ହୋଇଥିଲା ତାହା ଇତିହାସରେ ଲିପିବଦ୍ଧ ହୋଇନାହିଁ । ଡକ୍ଟର୍ ମହତାବଙ୍କ ଇତିହାସରେ ଭୁବନେଶ୍ୱର ନିକଟସ୍ଥ "ଆଲାଲପୁର" ଗ୍ରାମରୁ ମିଳିଥିବା ଛଅଟି ଫଳକ ବିଶିଷ୍ଟ ଗୋଟିଏ ତାମ୍ରଲେଖର ପାଠୋଦ୍ଧାରରୁ ତତ୍କାଳୀନ ରାଜପରମ୍ପରା ସମ୍ପର୍କରେ ସୂଚନା ମିଳେ — "ରାଜା ନରସିଂହ ଦେବ ରେମୁଣା କଟକରେ ଅବସ୍ଥାନ କରୁଥିବା କାଳରେ ବିଭିନ୍ନ ସ୍ଥାନମାନଙ୍କର ସମୁଦାୟ ୨୦୦ ବାଟି ଜମି ନିଜର ଆୟୁ, ଐଶ୍ୱର୍ଯ୍ୟ ଓ ସାମ୍ରାଜ୍ୟ ବୃଦ୍ଧି ନିମିତ୍ତ କୋଶାୟୁ, ହଳାୟୁଦ୍ଧ ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।" ଏଥିରୁ ଅନୁମିତ ହୁଏ,

# ବହୁବିଧ ପର୍ଯ୍ୟଟନ ବିଭବର ଗନ୍ତାଘର

# ଓଡ଼ିଶା







- କଳା ଓ ଭାସ୍କର୍ଯ୍ୟରେ ପରିପୂର୍ଣ୍ଣ କୋଣାର୍କ, ଭୁବନେଶ୍ୱର, ପୁରୀ, ଖିଚିଙ୍ଗ, ଖଣ୍ଡଗିରି, ଉଦୟଗିରି, ରାଣୀପୁର-ଝରିଆଲ ଇତ୍ୟାଦି
- ଧଉଳି, ରତ୍ନଗିରି, ଲଳିତଗିରି ଓ ଉଦୟଗିରିର ବୌଦ୍ଧକୀର୍ତ୍ତି
- ପୁରୀ, କୋଣାର୍କ, ଚାନ୍ଦିପୁର, ଗୋପାଳପୁର ଓ ଚନ୍ଦନେଶ୍ୱରର ତରଙ୍ଗାୟିତ ବେଳାଭୂମି
- ଶିମିଳିପାଳ, ଟିକରପଡ଼ା, ଉଷାକୋଠି ଓ ଭିତର-କନିକାର ଅଭୟାରଣ୍ୟ
- ନୌକାବିହାର ଓ ବିଭିନ୍ନ ଜାତିର ପକ୍ଷୀଦର୍ଶନ ପାଇଁ ଉପଯୁକ୍ତ ଚିଲିକାହ୍ରଦ
- ଚିରସ୍ରୋତା ଝରଣାର କୁଳୁକୁଳୁ ନାଦରେ ଝଙ୍କୃତ ନୃସିଂହନାଥ, ହରିଶଙ୍କର, ପୋରଣ୍ଡା, ବରେହିପାଣି, ଖଣ୍ଡାଧାର, ବାଗ୍ରା ଓ ପ୍ରଧାନ ପାଟ
- ଅତ୍ରି, ତପ୍ତପାଣି ଓ ଦେଉଳଝରିର ଉଷ୍ଣପ୍ରସ୍ରବଣ

ଏହିପରି ଆହୁରି ଅନେକ

ନିଜର କର୍ମମୟ ଜୀବନରୁ କିଛି ସମୟ ନେଇ ଆନନ୍ଦ ଉପଭୋଗ କରିବାର ସୁବର୍ଣ୍ଣ ସୁଯୋଗ ହରାନ୍ତୁ ନାହିଁ ।

ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମଙ୍କ ଦ୍ୱାରା ପରିଚାଳିତ ପାନ୍ଥନିବାସ ଓ ସଂପ୍ରଦର୍ଶିତ ଭ୍ରମଣ ବ୍ୟବସ୍ଥା କେବଳ ଆପଣମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ ।
ସବିଶେଷ ବିବରଣୀ ପାଇଁ ପ୍ରତ୍ୟେକ ଜିଲ୍ଲା ଓ ଦିଲ୍ଲୀ, କଲିକତା ଓ ମାନ୍ଦ୍ରାଜଠାରେ ଥିବା ପର୍ଯ୍ୟଟନ କାର୍ଯ୍ୟାଳୟ ସହ ଯୋଗାଯୋଗ କରନ୍ତୁ ।

ପର୍ଯ୍ୟଟନ ବିଭାଗ
ଓଡ଼ିଶା ସରକାର
ଭୁବନେଶ୍ୱର - ୭୫୧୦୦୧

ମାଦଳାପାଞ୍ଜିରେ ଏହି ଦୁର୍ଗଗୁଡ଼ିକର ନାମ ସ୍ପଷ୍ଟ ଭାବେ ଉଲ୍ଲିଖିତ। ସୁବର୍ଣ୍ଣରେଖା କୂଳ ଥିଲା ରକ୍ତ-ରଞ୍ଜିତ ପୀଠସ୍ଥଳୀ। ୧୫୬୮ ଖ୍ରୀ: ଅ:ରେ ଜଲେଶ୍ୱର ଓ ଉତ୍କଳ ମୋଗଲମାନଙ୍କ ଅଧିକାରଠାରୁ ୧୭୦୫ ଖ୍ରୀ: ଅ: ପର୍ଯ୍ୟନ୍ତ ରକ୍ତାକ୍ତ ରଣସ୍ଥଳୀରେ ପରିଣତ ହୋଇଥିଲା। ଏପରି ସଙ୍କଟାପନ୍ନ ସମୟରେ ଇତିହାସ ମଧ୍ୟ ସମ୍ପୂର୍ଣ୍ଣ ନୀରବ। କାରଣ ଜୀବନ ରକ୍ଷା ପାଇଁ ସ୍ଥାନୀୟ ଅଧିବାସୀମାନେ ଗାଁ ଛାଡ଼ି ପଳାଇବାକୁ ବାଧ୍ୟ ହୋଇଥିଲେ। ପରବର୍ତ୍ତୀ କାଳରେ ମୁସଲମାନମାନଙ୍କ ଆଗମନରେ ଜଲେଶ୍ୱର ଏକ ପ୍ରଶାସନ କ୍ଷେତ୍ର ରୂପେ ଗୃହୀତ ହେଲା। ଫଳରେ ମୁସଲମାନ କବଳିତ ହୋଇ ଅନେକ ପରମ୍ପରାର ହିନ୍ଦୁ ପ୍ରାସାଦ ସବୁ ଧ୍ୱଂସ ସାଧିତ ହୋଇଥିଲା।

ରାଇବଣିଆ ଗଡ଼ର ଏକ ଇତିହାସ ସୁଦୀର୍ଘ ଏହାର ବିଶାଳତା ଓ ପ୍ରାଚୀନତା ସମ୍ବନ୍ଧରେ ଅନୁମାନ କରିହୁଏ। ଫକୀରମୋହନଙ୍କ "ଲଛମା"ରେ ଏହାର ବର୍ଣ୍ଣନା ରହିଛି : "ରାଇବଣିଆ ଦୁର୍ଗ ସମ୍ପ୍ରତି ସମ୍ପୂର୍ଣ୍ଣ ରୂପେ ମହାରାଷ୍ଟ୍ର କରାୟତ୍ତ। ସମସ୍ତ ସମ୍ପତ୍ତି ଅପହୃତ ହୋଇଅଛି। ଦୁର୍ଗ ମଧ୍ୟରେ ଜୀବିତ ପ୍ରାଣୀ ମାତ୍ରକ ଅଭାବ। ଦୁର୍ଗର ଅଭ୍ୟନ୍ତର ଏବଂ ଚତୁର୍ଦ୍ଦିଗ ବହିର୍ଭାଗ ସହସ୍ର ସହସ୍ର ଶିବଗାଛରେ ପରିପୂର୍ଣ୍ଣ। ପ୍ରତିଗନ୍ଧ ତଥା ଶ୍ୱାପଦ ପଶୁ-ପକ୍ଷୀମାନଙ୍କ ବିକଟ ଚିତ୍କାରରେ ଭୟଙ୍କର କେବଳ ପ୍ରତୀୟମାନ ହେଉଅଛି (ପୃଷ୍ଠା-୬୭, ବିଜୁଳି ଓ ପ୍ରାଣଦଣ୍ଡ, ଲଛମା)"। ଏଥିରୁ ସମ୍ପ୍ରତି ଗଡ଼ ସମ୍ପର୍କରେ ସ୍ପଷ୍ଟ ସତ୍ୟ ବାରି ହୁଏ: "ଗଡ଼ଖାଇ" ଗୁଡ଼ିକର ଗଭୀରତା ଓ ଦୀର୍ଘତା ମଧ୍ୟ ଗଡ଼ର ଏକ ବିପଦସଙ୍କୁଳ ବତୀଘର ଭଳି।

ଉତ୍କଳର ଏକ ବିଶାଳ ପ୍ରାଚୀନ ଗଡ଼ର ଲୁପ୍ତ ଐତିହାସିକ ଘଟଣା ପଶ୍ଚାତ ତଥ୍ୟ ଯେତେ ଶୀଘ୍ର ପ୍ରକାଶ ହୋଇପାରିବ ଭବିଷ୍ୟତ ଇତିହାସ ରଚନା ପାଇଁ ସେ ସବୁ ବହୁ ପ୍ରୟୋଜନରେ ଆସିବ। ଏ ସବୁ ଦୃଷ୍ଟିକୋଣରୁ ରାଇବଣିଆ ଗଡ଼ର ଇତିହାସ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ।

ଗ୍ରାମ : କାକୁଡ଼ିଆ,
ପୋଷ୍ଟ : ସାରୁଗାଁ,
ଭାୟା : ଔପଦା,
ଜିଲ୍ଲା : ବାଲେଶ୍ୱର-୭୫୬ ୦୪୯।



ବିଧାନସଭା ବଜେଟ୍ ଅଧିବେଶନରେ ଅଭିଭାଷଣ ଦେବା ନିମନ୍ତେ ବାଚସ୍ପତିଙ୍କ ଗହଣରେ ମାନ୍ୟବର ରାଜ୍ୟପାଳ

ରେମୁଣା-କଟକ ରାଇବଣିଆ ଗଡ଼ ଦ୍ୱାରା ସଂରକ୍ଷିତ ଥିଲା। ରାଇବଣିଆ ଦୁର୍ଗ ସମଗ୍ର ଓଡ଼ିଶାର ଏକ ବିଶାଳ ଦୁର୍ଗ ବାରବାଟୀ ଦୁର୍ଗଠାରୁ ଏହା ବହୁ ଗୁଣରେ ବଡ଼। ରାଇବଣିଆ ପରି ଏକ ଐତିହ୍ୟ ସମ୍ପନ୍ନ ଦୁର୍ଗର ସଠିକ ଇତିହାସ ନମିଳିବା ଅତ୍ୟନ୍ତ ପରିତାପର ବିଷୟ।

ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶା ତା'ର ସ୍ୱାଧୀନତା ହରାଇଲା (୧୫୬୮ ଖ୍ରୀ: ଅ:)। ଏ କଥା ହରେକୃଷ୍ଣ ମହତାବ ମନ୍ତବ୍ୟ କରନ୍ତି, ଓଡ଼ିଶାରେ ସାମନ୍ତବାଦୀ ରାଜତନ୍ତ୍ର ଆତ୍ମସ୍ୱାର୍ଥ ସାଧନରେ ବ୍ୟସ୍ତ ଥିବା ସମୟରେ ଏହି ଗଡ଼ ପରିତ୍ୟକ୍ତ ହୋଇଥିଲା। ଔପନ୍ୟାସିକ ଫକୀର ମୋହନ "ଲଛମା"ରେ ରାଇବଣିଆ ଦୁର୍ଗର ଏକ କାଳ୍ପନିକ ଛବି ଅଙ୍କନ କରିଛନ୍ତି। ପ୍ରଥମରେ ରାଇବଣିଆର ସିଂଙ୍କ ନାମରୁ "ରାଇବଣିଆ" ନାମର ଉତ୍ପତ୍ତି। ତେଣୁ ମରହଟ୍ଟାମାନଙ୍କ ଶାସନ କାଳରେ ଏହାର ସୃଷ୍ଟି। ଜନ ମୁଖରୁ ଶୁଣାଯାଏ ରାଣୀଙ୍କ ନାମ "ରାଇବଣୀ" ଥିବାରୁ ଦୁର୍ଗନାମ ରାଇବଣିଆ ହୋଇଛି। ମାତ୍ର ଗଡ଼ଟି ମରହଟ୍ଟାମାନଙ୍କ ଦ୍ୱାରା କିଭଳି ଭାବେ ପରିତ୍ୟକ୍ତ ହୋଇଛି, ତାହା "ଲଛମା"ରୁ ଅନୁମାନ କରିହୁଏ ନାହିଁ। ପ୍ରତ୍ନତତ୍ତ୍ୱ ଅନୁସନ୍ଧାନରୁ ରାଇବଣିଆର ଭୌଗୋଳିକ ସ୍ଥିତି ଜୟଚଣ୍ଡୀ ମନ୍ଦିର ନିକଟରୁ ଅନୁମାନ କରିହୁଏ। ଏହା ମରହଟ୍ଟା ସମୟର ଦୁର୍ଗ ବୋଲି ପ୍ରତ୍ନକୀର୍ତ୍ତିର ଉପାଦାନରୁ ଅନୁମିତ।

ଇତିହାସ ମଧ୍ୟ କିମ୍ବଦନ୍ତୀମୂଳକ ଉପାଦାନ ସଂଗ୍ରହ କରି ଇତିହାସ ପ୍ରକାଶ କରେ ବଳିଷ୍ଠ ସତ୍ୟ। ତେଣୁ ରାଇବଣିଆ ଇତିହାସର ସତ୍ୟତା, ଲୋକକଥା, କିମ୍ବଦନ୍ତୀ ତଥା ଅର୍ଦ୍ଧଭଗ୍ନ ଗଡ଼କୁ ଦେଖିଲେ ସହଜରେ ଜାଣିହୁଏ। ରାଇବଣିଆ ପାଖାପାଖି ବାସ କରୁଥିବା ଲୋକେ ଏହି ଗଡ଼କୁ "ବିରାଟ" ଗଡ଼ ବୋଲି କହିଥାନ୍ତି। ଏହା ମୂଳରେ ସ୍ୱତନ୍ତ୍ର ସତ୍ୟ ମଧ୍ୟ ବିଦ୍ୟମାନ। ପ୍ରାଚୀନ ପ୍ରସିଦ୍ଧ ମହାଭାରତ ବିରାଟ ରାଜ୍ୟର ଗୋ-ଗୋଷ୍ଠ ହିଁ ଏହି ଗଡ଼ର ଖ୍ୟାତି ବହନ କରିଛି।

ସଭ୍ୟତା ଓ ସଂସ୍କୃତିର ବିକାଶ ପାଇଁ ନଦୀକୂଳ ହିଁ ଉପଯୁକ୍ତ କ୍ଷେତ୍ର। ରାଇବଣିଆ ଗଡ଼ର ଉତ୍ତର ପୂର୍ବ ଓ ଦକ୍ଷିଣ ଦିଗରେ ସୁବର୍ଣ୍ଣରେଖା ନଦୀ ବହିଯାଇଛି। ଏହା ବିରାଟ ଦୁର୍ଗରେ ଗୋଗ୍ରହଣ ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଥିଲା ବେଳେ ପଶ୍ଚିମରେ ଥିବା ଆଧୁନିକ ମୟୂରଭଞ୍ଜର ପ୍ରଶସ୍ତତା ଏଥିପାଇଁ ଉପଯୁକ୍ତ ଥିଲା। ଗୋ-ଶାଳା, ପାରମ୍ପରିକ ଗୋ-ରକ୍ଷକ ଓ ସୈନ୍ୟ ଛାଉଣୀ ପ୍ରଭୃତିର ଏହା ସାକ୍ଷ୍ୟ ଦେଇଥାଏ। ବାସ୍ତବରେ ରାଇବଣିଆ କୁରୁକ୍ଷେତ୍ର ପରି ବିଶାଳ।

ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅନୁମାନକୁ ଇତିହାସ ଅମାନ୍ୟ କରେ। କାରଣ ମରହଟ୍ଟାମାନେ ଥିଲେ ଲୁଣ୍ଠନପ୍ରିୟ। ନିଜ ସାମ୍ରାଜ୍ୟଠାରୁ ଏତେ ଦୂରରେ ଏତେ ବଡ଼ ଗଡ଼ର ଅଧିକାରକୁ ସେମାନେ ଅପସନ୍ଦ କରିଥିବେ। ଏହି ଗଡ଼ର ନାମକରଣ ଓ ପ୍ରଖ୍ୟାତି ହିଁ ଜଣେ ରାଜପୁରୁଷଙ୍କ ନାମ ସହିତ ସମ୍ପର୍କ ଏହାର ପ୍ରମାଣ ହରେକୃଷ୍ଣ ମହତାବଙ୍କ ଇତିହାସ ଅନୁସରଣରେ ବିଶ୍ୱାସ୍ୟ। ଏଥିରେ ମୟୂରଭଞ୍ଜର କୋଇଁଶାଳୀଠାରୁ ନୀଳଗିରି ପର୍ଯ୍ୟନ୍ତ ଅଞ୍ଚଳ ବିରାଟ ରାଜ୍ୟମାନଙ୍କ ଶାସନଭୁକ୍ତ ଥିଲା ବୋଲି ଉଲ୍ଲେଖ ଅଛି। ଭବିଷ୍ୟତ ଐତିହାସିକମାନଙ୍କ ପାଇଁ ଏହି ସବୁ ଉପାଦାନ ସ୍ମୃତିର ସାମଗ୍ରୀ।

ମହାଭାରତ ପୃଷ୍ଠାରେ କଳିଙ୍ଗ ରାଜ୍ୟ ଓ ବିରାଟ ରାଜା କୁରୁକ୍ଷେତ୍ର ଯୁଦ୍ଧରେ ଯୋଗ ଦେଇଥିବାର ସ୍ପଷ୍ଟ ଚିତ୍ର ଦେଖିବାକୁ ମିଳେ। ମହାଭାରତର କୀଚକବଧ ଘଟଣାରୁ ବିରାଟ ରାଜାଙ୍କ ପ୍ରଶାସନିକ କୀର୍ତ୍ତି ସମ୍ପର୍କରେ ସୂଚନା ମିଳେ। ଏହି କ୍ରମରେ ହୁଏତ ଅନ୍ୟାନ୍ୟ [illegible] ଏଠାକୁ ଅଧିକାର କରି ଗଡ଼ରେ ରାଜତ୍ୱ ଆରମ୍ଭ କରିଥାଇ [illegible]। ସମ୍ପ୍ରତି ଜଳେଶ୍ୱର ନିକଟସ୍ଥ "ବଶିଦା" ଗ୍ରାମରେ ବାସ [illegible] ମଜୁମଦାରଙ୍କ ସଙ୍କଳିତ କନିଂହାମ୍ ସାହେବଙ୍କର "Ancient Geography of India" ପୁସ୍ତକରୁ ଅନୁମିତ ହୁଏ।

ଭଦ୍ରକ ଓ କଳିଙ୍ଗ ମଧ୍ୟରେ ଉତ୍କଳ ରାଜ୍ୟ ରହିଥିଲା। ଏହି ରାଜ୍ୟର ବୈତରଣୀ ନଦୀଠାରୁ ମେଦିନୀପୁର, କପିଶା ବା କାସାଇ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା। ଏହା ବାଲେଶ୍ୱରଠାରୁ କୋହାରଡ଼ା (ରାଞ୍ଚି ନିକଟବର୍ତ୍ତୀ) ଓ ସରଗୁଜା (ମଧ୍ୟପ୍ରଦେଶ ପର୍ଯ୍ୟନ୍ତ) ଲୟିଥିଲା। ଏ ସବୁ କଥା ବସ୍ତୁରୁ ସ୍ପଷ୍ଟ ଜାଣିହୁଏ ରାଇବଣିଆ ଥିଲା ପ୍ରାଚୀନ ଉତ୍କଳର ରାଜଧାନୀ।

ମୋଗଲ ରାଜତ୍ୱ କାଳରେ ବାଲେଶ୍ୱର ଗଢ଼ି ଉଠିଥିଲା। ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସ କହେ ଆକବରଙ୍କ ରାଜତ୍ୱ କାଳରେ ପାଞ୍ଚଟି ସରକାର ଥିଲା – ଜଳେଶ୍ୱର, ଭଦ୍ରକ, କଟକ ଓ ପୁରୀ, କଳିଙ୍ଗ ଦଣ୍ଡପାଟ, ରାଜମହେନ୍ଦ୍ରୀ। ପଞ୍ଚଦଶ ଶତାବ୍ଦୀ ବେଳକୁ ଜଳେଶ୍ୱର ଏକ ଖ୍ୟାତି ସମ୍ପନ୍ନ ସହରରେ ପରିଣତ ହୋଇ ସାରିଥିଲା। କିନ୍ତୁ ଏହି ଶତାବ୍ଦୀର ବହୁ ପୂର୍ବରୁ ରାଇବଣିଆ ଗଡ଼ ଦୁର୍ଜ୍ଜେୟ ବୋଲି ପରିତ୍ୟକ୍ତ ହୋଇଥିଲା। ଏ ସବୁ ପୌନଃପୁନିକ ସତ୍ୟର ଅନୁବର୍ତ୍ତନ ଏକାନ୍ତ ଅପରିହାର୍ଯ୍ୟ।

ଗଡ଼ ମଧ୍ୟସ୍ଥ ଯେଉଁ ଅଟ୍ଟାଳିକାଟି ଭଗ୍ନ ଅବସ୍ଥାରେ ପଡ଼ି ରହିଛି ତାହାର ନିର୍ମାଣ କଳା-କୌଶଳ ସହଜବୋଧ୍ୟ। ମାତ୍ର ରାଣୀ ହଂସପୁର ଅଟ୍ଟାଳିକାର ଅନତିଦୂରରେ ଭୂଗର୍ଭରେ କେତୋଟି ଗୃହ ଅଛି ବୋଲି ବାସିନ୍ଦାମାନେ ବିଶ୍ୱାସ କରନ୍ତି। ଏହାର ପ୍ରବେଶ ଦ୍ୱାର ପାଇଁ ମଧ୍ୟ କେତେକ ମୃଦଙ୍ଗ ପଥର ସନ୍ଧାନ ମିଳିଛି। ସେତେବେଳର ଜୟଚଣ୍ଡୀ ବନ ବର୍ତ୍ତମାନ ଉଙ୍କୀହାଣ୍ଡି ଓ ମାଠିଆ ଗଦାର ଭଗ୍ନ ପାହାଡ଼। ବଣରେ ପୂଜିତ ଅନେକ ଦେବ ଦେବୀ ସମ୍ପ୍ରତି ପ୍ରତିବେଶୀ ଗାଁମାନଙ୍କରେ ଉପାସିତ। ଜୟଚଣ୍ଡୀ ବଣର ଦେବୀଙ୍କଠାରେ ପୁରୀ ଭଳି ମହାପ୍ରସାଦ ସେବନର ବ୍ୟବସ୍ଥା ଥିଲା ବୋଲି ଜଣାଯାଏ।

ରାଇବଣିଆ ଏକଦା ଥିଲା ବିଶାଳ ରାଜ୍ୟର ରାଜଧାନୀ ଓ ଉତ୍କଳୀୟ ବନ୍ଦରମାନଙ୍କର ପଣ୍ୟ ପେଣ୍ଠସ୍ଥଳୀ। ଏହାର ନିର୍ମାଣ କୌଶଳର ବିଶାଳତା ଓ ଏହା ମଧ୍ୟସ୍ଥ ଥିବା ସୁବିଶାଳ ଶତାଧିକ ପୁଷ୍କରିଣୀ ମାଟିତଳେ ପୋତି ହୋଇଯାଉଥିଲେ ବି, ଲୋକ ମୁଖରେ ଏ ସବୁର ନାମ ଏବେ ବି ମୁଖରିତ। ରୂପାଦୀଘି, ରାଣୀ ସାଗର ସରୋବର, ହାରା ସାଗରର ପ୍ରସିଦ୍ଧି ରହିଛି। ଯେଉଁ କେତେକ ପଥର ମୂର୍ତ୍ତି ଦୃଷ୍ଟିଗୋଚର ହୁଏ, ତାହା ପୁରୀ, କୋଣାର୍କ ଭୁବନେଶ୍ୱରରେ ନିର୍ମିତ ମୂର୍ତ୍ତିଠାରୁ ଅନୁନ୍ନତ କଳାର ପରିଚୟ ବହନ କରିଥାଏ। ଏଗୁଡ଼ିକ ଦଶମ ଶତାବ୍ଦୀର କିମ୍ବା ତା'ପୂର୍ବର ବୋଲି ଅନୁମାନ କରାଯାଇପାରେ। କଳାପାହାଡ଼ ଆକ୍ରମଣରେ (୧୫୬୮ ଖ୍ରୀ: ଅ:) ଏ ସବୁର ସମ୍ପୂର୍ଣ୍ଣ ଧ୍ୱଂସ ସାଧିତ ହୋଇଥିବାର ଜନଶ୍ରୁତି ରହିଛି। ଏଠାରୁ ଉଦ୍ଧାର କରାଯାଇଥିବା କୀଚକେଶ୍ୱର ସମ୍ପ୍ରତି ବାରିପଦାରେ ପ୍ରତିଷ୍ଠିତ ଓ ଶ୍ୟାମା ଠାକୁରାଣୀ ଲକ୍ଷ୍ମଣନାଥର ଜମିଦାର ରାସ୍ ମହାଶୟଙ୍କ ଦ୍ୱାରା ପୂଜିତା। କଳା ସୌକୁମାର୍ଯ୍ୟର ସ୍ୱାକ୍ଷର ଏ ସବୁ ମୂର୍ତ୍ତି ନିପୁଣ ଭାବେ ବହନ କରିଛି। ଏପରିକି ଗଡ଼ ସମ୍ମୁଖରେ ଥିବା ଗଡ଼ଚଣ୍ଡୀଙ୍କର ଗଠନ କୌଶଳ ଅତି ପ୍ରାଚୀନ ଓ ଶ୍ରେଷ୍ଠ ଭାସ୍କର୍ଯ୍ୟର ନିଦର୍ଶନ।

ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ୧୫୬୭ ଖ୍ରୀ: ଅ: ରେ ବାଲେଶ୍ୱର ଜିଲ୍ଲାର ଧାମନଗର ଥାନା ଅନ୍ତର୍ଗତ ଗୋହିରାଟିକିରିଠାରେ ହୋଇଥିବାର ଜନଶ୍ରୁତି କହେ। ସୁକବି ବଦିବର ରାଧାନାଥଙ୍କ ଲେଖାରୁ ମଧ୍ୟ ଏହା ପ୍ରମାଣିତ। ମାତ୍ର ରାଇବଣିଆ ଗଡ଼ର ପଶ୍ଚିମ ପାର୍ଶ୍ୱରେ ବହି ଆସିଥିବା ଗୋହିରା ଝରଣା କୂଳରେ ମୁକୁନ୍ଦଦେବ ନିଜର ସେନାପତି ଦ୍ୱାରା ନିହତ ହୋଇଥିଲେ। ସେହି ସମୟ ରାଇବଣିଆ ଗଡ଼ର ସମ୍ପୂର୍ଣ୍ଣ ପତନ ହୋଇଥିବାର ଶୁଣାଯାଏ।

ରାଇବଣିଆ ଓ ଜଳେଶ୍ୱରର ମଧ୍ୟବର୍ତ୍ତୀ "ଗୋପ" ଗ୍ରାମରେ ପୋଖରୀ ଖୋଳୁ ଖୋଳୁ କେତେକ ଘରର ସନ୍ଧାନ ମିଳିଥିଲା। ଏତଦ୍‌ବ୍ୟତୀତ ଜଳେଶ୍ୱର ଆଖପାଖରେ ଅନେକ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ (ସେନା ଛାଉଣୀ) ଥିବାର ଅନୁମିତ ହୁଏ। ଏ ସବୁ ପରିତ୍ୟକ୍ତ ହେଲେ ମଧ

ଭାକ୍ରାନଙ୍ଗଲ୍ ପାୱାର ହାଉସରୁ ବାହାରି ଯାଇଛି । ଜଳର ଅସଲ ଶକ୍ତି ହେଉଛି ସିଏ, ସେ ଶକ୍ତି ଯଦି ଜଳରୁ ବାହାରିଗଲା ଆଉ ଜଳରେ କ'ଣ ରହିଲା ଯେ ସେ ଜଳ ଗୁଣରେ ସାହାଯ୍ୟ କରିବ !

ଏହା ବୈଜ୍ଞାନିକ ମନୋବୃତ୍ତିର ବିରୋଧୀ, ଆମ ଲୋକଙ୍କର ବୈଜ୍ଞାନିକ ମନୋବୃତ୍ତି ନଥିବାରୁ ସେମାନେ ଏମିତି କହି ବୁଲିଲେ । ଯେଉଁମାନେ ସେମାନଙ୍କ କଥାକୁ ଶୁଣିଲେ ସେମାନେ ପାଣି ମଡ଼ାଇଲେ ନାହିଁ । ସରକାରୀ ଲୋକେ ଯାଇ ଏହା ବିରୁଦ୍ଧରେ ଲୋକଙ୍କୁ ବୁଝାଇଲେ । ଖାଲି ବୁଝାଇଲେ ନାହିଁ, ଶୁଷ୍କ ଜମିରେ ସେ ପାଣିକୁ ମଡ଼ାଇ ଅଧିକ ଫସଲ ଉପୁଜାଇ ଲୋକଙ୍କୁ ଦେଖାଇ ଦେଲେ । ଲୋକେ ଦେଖିଲେ ଏ ପାଣିରେ ତ ଭଲ ଫସଲ ହେଉଛି, ଜମିରେ ନ ମଡ଼ାଇବେ କାହିଁକି ? ପରୀକ୍ଷା କରି ଦେଖାଇ ଦେବାରୁ ଲୋକଙ୍କ ମନରେ ବିଶ୍ୱାସ ଆସିଲା, ସେମାନେ ବୁଝିଲେ ଦଳେ ଲୋକ ଯାହା ପ୍ରଚାର କରୁଥିଲେ ତାହା ମିଛ କଥା । ଜଳର ଗତିଶୀଳ ଶକ୍ତିରୁ ବିଜୁଳି ଶକ୍ତି ଉତ୍ପାଦିତ ହୁଏ । ଏହା କିଛି ଜଳର ସାର ଅଂଶ କାଢ଼ି ନେଇ ବିଜୁଳି ଉତ୍ପାଦନ କରେ । ବିଜୁଳି ଶକ୍ତି ଉତ୍ପାଦନ ସହିତ ଜଳର ଉପକାରୀତା ଗୁଣର କିଛି ସମ୍ପର୍କ ନାହିଁ । ଆମର ଯଦି ମୂଳରୁ ବୈଜ୍ଞାନିକ ମନୋବୃତ୍ତି ଥାଆନ୍ତା, ତେବେ କଥା ଏତେ ଦୂରକୁ ଯାଇ ନଥାନ୍ତା, ତେଣୁ ଆମେ ଆମ ପିଲାଙ୍କ ମନରେ କେମିତି ବୈଜ୍ଞାନିକ ମନୋବୃତ୍ତି ଜାଗରଣ ହେବ, ସେଥିପ୍ରତି ଚେଷ୍ଟା କରିବା ଉଚିତ । ବୈଜ୍ଞାନିକ ମନୋବୃତ୍ତି ଜାଗ୍ରତ ହେଲେ ଅନ୍ଧ ବିଶ୍ୱାସ ମନରୁ ମନ ଲୋପ ପାଇବ ।

ଆମେ ଭୂତ, ପ୍ରେତ, ଡାହାଣୀ ସମ୍ବନ୍ଧରେ ନାନା ଗପ ଶୁଣୁ । କେତେ ଲୋକ ନିଜେ ଭୂତ ଦେଖିଥିବା କଥା କହନ୍ତି । କେତେକଙ୍କୁ ରାତିରେ ଭୂତ ଡାକି ନେଇଥାଏ, କେତେ ଲୋକଙ୍କୁ ଡାହାଣୀ ମାଡ଼ି ବସିଥାଏ । କେତେ ଲୋକ ଚର ଡାହାଣୀକୁ ଘୁଅ ପଡ଼ିଆରୁ ସକାଳେ ଆସୁଥିବାର ସତ କାହାଣୀ ବଖାଣନ୍ତି । ସେମାନଙ୍କ ଦେହ ଗନ୍ଧାଉଥାଏ । ଏଥିରୁ ଅନେକଙ୍କ ଧାରଣା ହୁଏ, ଭୂତ ପ୍ରେତ, ଚର ଡାହାଣୀ ପ୍ରକୃତରେ ସତ । କିନ୍ତୁ ଲୋକେ ବେଳେ ବେଳେ ଏମିତି ଭୂତ ସ୍ୱପ୍ନ ଦେଖି ଗାଢ଼ ନିଦ ଥିବା ଅବସ୍ଥାରେ ବିଛଣାରୁ ଉଠି ରାତିରେ ଘରୁ ବାହାରି ପଡ଼ନ୍ତି । ସେମାନେ ଜାଣି ପାରନ୍ତିନି, କେଉଁଆଡ଼େ ଯାଉଛନ୍ତି । ସେମାନଙ୍କ ଆଖି ବନ୍ଦ ଥାଏ । ସେମାନଙ୍କ ସ୍ୱପ୍ନରେ ଆଗେ ଆଗେ ଭୂତ ଚାଲିଥାଏ । ପଛେ ପଛେ ଯାଉଁ ଯାଉଁ ସେମାନେ ହାବୁଡ଼ି ପଡ଼ନ୍ତି । ସେଠି ନିଦ ଭାଙ୍ଗିଯାଏ । ଭୂତ ସ୍ୱପ୍ନ କେଉଁଆଡ଼େ ଚାଲିଯାଏ । ତା'ପରେ ସେମାନେ ଭାବନ୍ତି ସେଠାକୁ ଆସିଲେ କେମିତି ? ସେହି ସ୍ୱପ୍ନକୁ ସତ ବୋଲି ମଣି ଭୂତ ସେମାନଙ୍କୁ ଡାକି ନେଇଥିଲେ ବୋଲି ପ୍ରଚାର କରନ୍ତି । ତା'ପରେ ଏମିତି ମନଗଢ଼ା କଥା କହନ୍ତି ଯେ ଯେଉଁଲି ଲୋକ ତାକୁ ସତ ବୋଲି ବିଶ୍ୱାସ କରିବ । ସେହିଭଳି ଡାହାଣୀ ମାଡ଼ି ବସିବା ଏକ ପ୍ରକାର ରୋଗ । ଚର ଡାହାଣୀ ରାତିରେ ସ୍ୱପ୍ନ ଦେଖେ ସେ ଝାଡ଼ା ପଡ଼ିଆକୁ ଯାଉଛି ବୋଲି । ସେହି ସ୍ୱପ୍ନରେ ଗାଢ଼ ନିଦ ଥିବା ଅବସ୍ଥାରେ ସେ ଉଠି ସ୍ଥଳେ ପୁରୀଷ ପଡ଼ିଆକୁ, ଯେଉଁଠି ସେ ଯାଉଁ ଯାଉଁ ହାବୁଡ଼ି ପଡ଼େ ସେଠି ତା ନିଦ ଭାଙ୍ଗିଯାଏ । ଘୁଅ ପଡ଼ିଆରେ ସେ ପଡ଼ିଯିବାରୁ ତା ଦେହ ହାତରେ ଘୁଅ ଲାଗିଯାଏ । ସେ ଯେତେବେଳେ ଘରକୁ ଫେରେ, ତାକୁ ଯିଏ ଦେଖିବ, ତାକୁ ତା ଦେହ ଗନ୍ଧାଇବ । ତେଣୁ ସେ ଯାଇ ପ୍ରଚାର କରେ କ'ଣ ନା ଅମୁକେଇ ଲୋକ ଚରା ଡାହାଣୀ । ପୁରାକାଳରେ ଯେତେବେଳେ ବିଜ୍ଞାନ ଆଜିକାଲିକା ଭଳି ଆଗେଇ ନଥିଲା ଲୋକେ ଭୂତ ପ୍ରେତ କ'ଣ ଜାଣି ନପାରି ଭୂତ, ପ୍ରେତ ସମ୍ବନ୍ଧରେ କିମ୍ଭୁତ କିମାକାର ଧାରଣା ସବୁ କରିଥିଲେ କିନ୍ତୁ ଆଜିକାଲି ଆମେ ଜାଣିଲୁଣି ପ୍ରକୃତ କଥା କ'ଣ । ସ୍ତ୍ରୀ ଲୋକମାନଙ୍କୁ ଡାହାଣୀ ଲାଗିବା ସେହିଭଳି ଏକ ପ୍ରକାର ରୋଗ ବୋଲି ଜାଣି ନପାରି ଡାହାଣୀ ଅଛି ବୋଲି ବିଶ୍ୱାସ କରି ଯାଉଥିଲେ । ଆଜିକାଲି ଆମେ ଜାଣିଶୁଣି ଭୂତ ଡାକିବାର କି ଡାହାଣୀ ଲାଗିବାର ଅର୍ଥ କଅଣ, ଚରା ଡାହାଣୀ କେମିତି ହୁଅନ୍ତି, ଡାହାଣୀ ଆଲୁଅ ଯେ ଶ୍ମଶାନରେ ଦିଶେ, ତାର ଅର୍ଥ କଅଣ । ଭୂତ ପ୍ରେତ ଆଦିକୁ ବୈଜ୍ଞାନିକମାନେ ତନ୍ନ ତନ୍ନ କରି ପରୀକ୍ଷା କରି ସେ ସବୁ ପୁରାପୁରି ତାହା ମିଛ କଥା ବୋଲି ପ୍ରମାଣ କରି ସାରିଲେଣି । ଭୂତ ପ୍ରେତ ଡାହାଣୀ ଆଦି ଆମ ଅଜ୍ଞତାର ଫଳ । ଆମେ ଯେତେ ପାଠ ପଢ଼ି ଶିକ୍ଷିତ ହେବା, ଏ ସବୁର ପ୍ରକୃତ କାରଣ ଜାଣି ପାରିବା । ସେହି ଦିନଠାରୁ ଆମ ମନରେ ଆଉ ଭୂତ ପ୍ରେତ କଥା ରହିବ ନାହିଁ । ଆମେ ଯଦି ପିଲାଟି ଦିନରୁ ପିଲାମାନଙ୍କ ମନରେ ଭୂତ ପ୍ରେତ କଥା ନପୂରାଇ ଭୂତ ପ୍ରେତର ଅସଲ କଥା ସେମାନଙ୍କ ମନରେ ପୂରାଉଁ, ତେବେ ସେ ପିଲା ସବୁ ଭବିଷ୍ୟତରେ ଆମର ବର୍ତ୍ତମାନ ପିଲାଙ୍କ ଭଳି ଭୂତ ପ୍ରେତ ପ୍ରତି ଏତେ ଭୟାଳୁ ହେବେନି । ପିଲାମାନଙ୍କୁ ଭୂତ ପ୍ରେତ କାହାଣୀ କହିବା ବା ଅନ୍ଧାରରେ ଭୂତ ଆସୁଛି ବୋଲି କହି ଡରାଇବା ଭଲ ନୁହେଁ । ଏଭଳି କଥା ଶୁଣି ଶୁଣି ପିଲାମାନେ ଅଯଥା ଭୟାଳୁ ହୋଇଯାଆନ୍ତି । ସେମାନେ ସାହସୀ ହୋଇ ପାରନ୍ତିନି । ଭୂତ ନାଆଁ ଶୁଣିଲେ ସେମାନଙ୍କୁ ଡର ମାଡ଼େ ।

ସାପ କାମୁଡ଼ା ଆମ ଦେଶର ଏକ ସାଧାରଣ କଥା । ପ୍ରତିବର୍ଷ ବହୁ ଲୋକ ସାପ କାମୁଡ଼ାରେ ମରନ୍ତି । ସାପର ବିଷ ଯେତେବେଳେ ଆମ ଦେହରେ ଚରେ, ସେହି ବିଷର ପ୍ରଭାବରୁ ମଣିଷ ମୃତ୍ୟୁ ମୁଖରେ ପଡ଼େ । ସବୁ ସାପ କାମୁଡ଼ିଲେ ଲୋକ ମରନ୍ତିନି । ବିଷଧର ସାପ କାମୁଡ଼ିଲେ ହିଁ ଲୋକେ ମରନ୍ତି । ସବୁ ସାପ ବିଷଧର ନୁହଁନ୍ତି । ଢମଣା, ଧଣ୍ଡ, ଅଜଗର ଆଦି ସାପ ବିଷହୀନ । ସେମାନେ ମଣିଷକୁ କାମୁଡ଼ିଲେ ମଣିଷ ମରେ ନାହିଁ । କିନ୍ତୁ ନାଗ, ଗୋଖର, ଚମ୍ପା ଆଦି ସାପ ବିଷଧର । ସେମାନେ କାମୁଡ଼ିଲେ ମଣିଷ ଦେହରେ ବିଷ ଚରିଯାଏ । ଫଳରେ ସେହି ବିଷ ପ୍ରଭାବରୁ ଲୋକେ ମରିଯାଆନ୍ତି ।

ସବୁବେଳେ ବିଷଧର ସାପ କାମୁଡ଼ିଲେ ଲୋକେ ମରନ୍ତି ନାହିଁ । ବିଷଧର ସାପ ଚୋଟ ମାରିବା ପୂର୍ବରୁ ଯଦି ବେଙ୍ଗ କି ମୂଷା ଖାଇଥାଏ, ତେବେ ତା ବିଷ ଦାନ୍ତରେ ଯଥେଷ୍ଟ ବିଷ ନଥାଏ । ଠିକ୍ ଖାଇବା ପରେ ଯଦି କୌଣସି ମଣିଷକୁ ସେ ଚୋଟ ମାରେ, ତେବେ ସେ ଲୋକ ମରି ନପାରେ । ସାପ ମଣିଷକୁ ଚୋଟ ମାରିବା ପୂର୍ବରୁ ଅନ୍ୟ ପାଞ୍ଚ ସାତ ଯାଗାରେ ଯଦି ଖାଲି ଚୋଟ ମାରିଥାଏ, ତେବେ ବିଷ ଦାନ୍ତରୁ ବିଷ ଝରି ଯାଇଥାଏ । ତାହାପରେ ମଣିଷକୁ ଚୋଟ ମାରିଲେ ଯଥେଷ୍ଟ ପରିମାଣରେ ବିଷ ଶରୀର ଭିତରକୁ ଯାଇ ପାରେନି, ଫଳରେ ସେ ଲୋକ ମରେନି । ସାପ ଚୋଟ ମାରିଲା ବେଳେ ଯଦି ମୋଟା ଲୁଗା ଉପରେ ବା ମୋଟା ପ୍ୟାଣ୍ଟ ଉପରେ ମାରିଥାଏ, ତେବେ ଯଥେଷ୍ଟ ପରିମାଣର ବିଷ ଦେହ ଭିତରକୁ ଯାଇପାରି ନଥାଏ । ପ୍ୟାଣ୍ଟରେ ବା ଲୁଗାରେ ରହି ଯାଇଥାଏ । ସେ କ୍ଷେତ୍ରରେ ଲୋକ ନମରି ପାରେ । ହିସାବ କରି ଜାଣା ଯାଇଛି ଯେ ଯେତେ ଲୋକ ସାପ କାମୁଡ଼ାରେ ପଡ଼ନ୍ତି, ସେମାନଙ୍କ ଭିତରୁ ଶତକଡ଼ା ସତୁରୀ ଯାଗାରେ ସେମାନଙ୍କ ଶରୀରକୁ ଯଥେଷ୍ଟ ପରିମାଣର ବିଷ ଯାଇ ନଥାଏ । ତେଣୁ ସେମାନଙ୍କର ମରିବା ସମ୍ଭାବନା କମ୍ । ମାତ୍ର ଶତକଡ଼ା ତିରିଶ ଯାଗାରେ ଯଥେଷ୍ଟ ପରିମାଣର ବିଷ ଲୋକ ଶରୀରକୁ ଯାଉଥିବାରୁ ଲୋକର ମରିବା ସମ୍ଭାବନା ଥାଏ ।

ସାପ ବିଷ ପ୍ରକୃତରେ କଅଣ ? ଏହା ଏକ ପ୍ରକାର ପ୍ରୋଟିନ୍ ଜାତୀୟ ପଦାର୍ଥ । ସାପ ବିଷକୁ ଜଣେ ସୁସ୍ଥ ଲୋକ ଖାଇଦେଇ ହଜମ କରିଦେବ । ସାପ ବିଷକୁ ଖାଇଦେଲେ ଲୋକ ମରିବ ନାହିଁ । ଯଦି ରକ୍ତ ସହିତ ସାପ ବିଷ ମିଶିଯାଏ, ତେବେ ଲୋକ ମରିଯିବାର ସମ୍ଭାବନା । ସେଥିପାଇଁ ସାପ କାମୁଡ଼ିଲେ ଲୋକେ ମରନ୍ତି । ସାପ ଯେତେବେଳେ ଚୋଟ ମାରେ, ସାପ ପାଟିରୁ ବିଷ ଝରି ମଣିଷ ରକ୍ତରେ ମିଶେ । ଏହା ରକ୍ତ ସ୍ରୋତ ସହିତ ହୃଦ୍‌ଯନ୍ତ୍ରକୁ ଯାଇ ସେଠାରୁ ଅନ୍ୟତ୍ର ଯାଏ । ଏହାକୁ ବିଷ ଚରିଯିବା କହନ୍ତି । ସାରା ଶରୀରକୁ ବିଷ ଚରିଗଲେ ଲୋକ ମରିଯାଏ । ସାପ ବିଷକୁ ଖାଇଲେ ଯେ ସବୁବେଳେ କିଛି ହେବନି ତା' ନୁହେଁ । ଶରୀରର ଅନ୍ତନଳୀରେ ଯଦି କ୍ଷତ ଥାଏ କି ଘାଆ ଥାଏ, ତେବେ ସେହି କ୍ଷତବାଟେ ସାପ ବିଷ ରକ୍ତରେ ମିଶିଲେ

# ବିଜ୍ଞାନ ଓ ଅନ୍ଧ ବିଶ୍ୱାସ

*ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ର*

ଅନ୍ଧ ବିଶ୍ୱାସ କ'ଣ ? ଅନ୍ଧ ବିଶ୍ୱାସ କାହାକୁ କହନ୍ତି ? ଏଭଳି ପ୍ରଶ୍ନ ଅନେକଙ୍କ ମନରେ ଆସେ । ପ୍ରକୃତରେ ଅନ୍ଧ ବିଶ୍ୱାସ କହିଲେ ଆମେ କ'ଣ ବୁଝୁ ? ଅନ୍ଧ ବିଶ୍ୱାସ ହେଉଛି କୌଣସି କଥାକୁ ଅନ୍ଧ ଭାବରେ ବା ନବୁଝି ନଶୁଝି ବିଶ୍ୱାସ କରିଯିବା । ଯେଉଁ ବିଶ୍ୱାସକୁ କୌଣସି ପରୀକ୍ଷା କରାନଯାଇ ଏହାର ସତ୍ୟାସତ୍ୟ ନିରୂପଣ କରାନଯାଇଛି । ଆଗ କାଳରୁ ଆମ ପୂର୍ବ ପୁରୁଷମାନଙ୍କଠାରୁ ଶୁଣି ଆମେ ଏହା ସତ୍ୟ ହୋଇଥିବ ବୋଲି ଆମେ ଯେଉଁ ଧାରଣା କରୁଁ ତାହାକୁ ଅନ୍ଧ ବିଶ୍ୱାସ ବ୍ୟତୀତ ଅନ୍ୟ କିଛି କହନ୍ତିନି । ଜଣେ ଲୋକ ଗୋଟିଏ କଥା କହିଲା, ଏହି କଥାଟି କେତେ ଦୂର ସତ୍ୟ, ଆମେ ପରୀକ୍ଷା ନକରି ସେହି କଥାଟି ସତ ବୋଲି ଆମେ ଯେତେବେଳେ ଧରିନେବା, ସେତେବେଳେ ଏହାକୁ କୁହାଯିବ ଅନ୍ଧ ବିଶ୍ୱାସ । ମନେକର, ଆମେ ପିଲାଟି ଦିନରୁ ଶୁଣି ଆସିଛେ ଭୂତ ପ୍ରେତ କଥା, ଡାହାଣୀ ଚିରୁଗୁଣି କଥା । ଆମେ କ'ଣ କେବେ ପରୀକ୍ଷା କରି ଦେଖିଛେ, ପ୍ରକୃତ ଭୂତ ପ୍ରେତ ଅଛନ୍ତି କି ନାହିଁ ! ଭୂତ ପ୍ରେତ ଯଦି ନାହିଁ କ'ଣ ପାଇଁ ଲୋକେ ଏମିତି ଧାରଣା କରିଛନ୍ତି ? ତାହାର କାରଣ କେବେ ବୁଝିଛେ କି ? ଆମେ ଯେ ସବୁ ନବୁଝି ନଶୁଝି ଯଦି ବିଶ୍ୱାସ କରିଲେ ଭୂତ ପ୍ରେତ ଆଦି ଅଛନ୍ତି, ତେବେ ତାକୁ କୁହାଯିବ ଅନ୍ଧ ବିଶ୍ୱାସ । ଅନ୍ଧ ବିଶ୍ୱାସ ଆଧୁନିକ ଯୁଗର ଏକ କଳଙ୍କ । ଏହି ଅନ୍ଧ ବିଶ୍ୱାସ ମାନବ ପ୍ରଗତିର ପ୍ରଧାନ ପ୍ରତିବନ୍ଧକ ।

ଖାଲି ଭୂତ ପ୍ରେତ କଥା ଯେ ଅନ୍ଧ ବିଶ୍ୱାସ ତା'ନୁହେଁ, ସାପ କାମୁଡ଼ିଲେ ଡାକ୍ତରଖାନାକୁ ନଯାଇ ଗୁଣିଆ ଦ୍ୱାରା ଭଲ ହେବା, ବସନ୍ତ ଓଳଉଠା ହେଲେ ପ୍ରତିଷେଧକ ନନେଇ ଠାକୁରାଣୀ ମାନସିକ କରିବା, କଳସୀ ପକାଇବା, ମନସ୍କାମନା ପୂରଣ ପାଇଁ ଦେବ ଦେବୀଙ୍କଠାରେ ବଳି ଦେବା ବା ମନାସିବା, ସ୍ୱପ୍ନ ଦେଖିଲେ ତାହା ନିରାଟ ସତ୍ୟ ବୋଲି ମନେ କରିବା ଓ ସେହି ଅନୁସାରେ କାର୍ଯ୍ୟ କରିବା ଆଦି ବହୁ ଅନ୍ଧ ବିଶ୍ୱାସ ଆମ ସମାଜରେ ଅଛି । ଆଗ ଯୁଗରେ ଯେତେବେଳେ ବିଜ୍ଞାନର ଅଗ୍ରଗତି ହୋଇ ନଥିଲା, ଆମ ଲୋକେ ଏ ସବୁର ପ୍ରକୃତ ତଥ୍ୟ କ'ଣ ଜାଣି ନଥିଲେ । ତେଣୁ ଅଜ୍ଞତା ଯୋଗୁଁ ସେମାନେ ଏହାର ମନଗଢ଼ା କାରଣ ବାହାର କରିଥିଲେ । ସେହି ସବୁ ମନଗଢ଼ା କାରଣ ସତ୍ୟ ବୋଲି ପୁରା କାଳରୁ ଗଢ଼ି ଆସୁଛି । ଆମ ଲୋକଙ୍କର ଆଉ ଏକ ଭୁଲ ଧାରଣା ଯେ ପୁରା କାଳର କଥାଗୁଡ଼ାକ ନିଛକ ସତ, ଅଧିକାଳି ଯେଉଁ ସବୁ ବାଖ୍ୟା ଦିଆଯାଉଛି ସେ ସବୁ ମିଛ । ମାତ୍ର ଏହା ଠିକ୍ ନୁହେଁ । ଏହି ଧାରଣା ଯୋଗୁଁ ପୁରା କାଳର ସେହି ସବୁ ମିଥ୍ୟା, କାଳ୍ପନିକ କଥାଗୁଡ଼ାକ ସତ୍ୟ କଥା ବୋଲି ଲୋକଙ୍କ ମନରେ ଗଢ଼ି ଆସୁଛି । ଆମ ଲୋକେ ସେ ସବୁକୁ ବିଶ୍ୱାସ କରୁଛନ୍ତି ଓ ପିଲାମାନଙ୍କ ମୁଣ୍ଡରେ ସତ ବୋଲି ଭରି ପୁରାଉଛନ୍ତି । ଆମ ସମାଜ ପାଇଁ, ଭାବୀ ବଂଶଧରଙ୍କ ପାଇଁ ଏହା ଏକ ଗର୍ହିତ କାର୍ଯ୍ୟ । ଆମେ ବିଭିନ୍ନ ଅନ୍ଧ ବିଶ୍ୱାସର ସତ୍ୟାସତ୍ୟ ଜାଣିବା ଉଚିତ । ତା'ହେଲେ ଯାଇ ଅନ୍ଧ ବିଶ୍ୱାସଗୁଡ଼ିକୁ ପରିତ୍ୟାଗ କରି ପାରିବୁ । ଆମ ପ୍ରଗତିରେ ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଏକ ପ୍ରତିବନ୍ଧକ । ଆମେ ଓ ଆମ ପିଲାମାନେ ସେ ସବୁରୁ ଯେବେ ଦୂରରେ ରହିବୁ, ଆମର ସେତେ ମଙ୍ଗଳ । ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ଆମେ ଜମିରେ ସାର ଦେଉନାହୁଁ, କାହିଁକି ନା ଜମିରେ ସାର ଦେଲେ ଜମି ନଷ୍ଟ ହୋଇଯିବ । ସମାଜର ମଙ୍ଗଳ ପାଇଁ ଜନ୍ମ ନିୟନ୍ତ୍ରଣ କରିବୁନି, ଭଗବାନଙ୍କ ଆଶୀର୍ବାଦ ବୋଲି କହି ପିଲା ପରେ ପିଲା କରି ଚାଲିଥିବୁ । ଓଳଉଠା, ବସନ୍ତ ନ ଆସିଲେ ଟୀକା ନନେଇ ଠାକୁରାଣୀ ମାନସିକ କରିବୁ ଏ ସବୁ ଆମ ଦେଶର ପ୍ରଗତିରେ ଗୋଟିଏ ଗୋଟିଏ ପ୍ରତିବନ୍ଧକ ହୋଇ ଠିଆ ହେବ । ଆମେ ଯେତେ ଇଚ୍ଛା କଲେ ମଧ୍ୟ ସମାଜ ଠିକ୍ ଭାବରେ ଆଗେଇ ପାରିବନି । ଆଗ ଆମ ମନରୁ, ଆମ ପିଲାମାନଙ୍କ ମନରୁ ଏହି ଅନ୍ଧ ବିଶ୍ୱାସ ଦୂର କରିବାକୁ ପଡ଼ିବ । ତେବେ ଯାଇ ଆମେ ଆଗେଇ ପାରିବା । ଅନ୍ଧ ବିଶ୍ୱାସର ଧ୍ୱଂସ ସମସ୍ତଙ୍କ ଧ୍ୟେୟ ହେବା ଉଚିତ । ଅନ୍ଧ ବିଶ୍ୱାସକୁ ଦୂର କରିବାକୁ ହେଲେ ଆମେ ପିଲାମାନଙ୍କଠାରେ ବୈଜ୍ଞାନିକ ମନୋବୃତ୍ତି ସୃଷ୍ଟି କରିବା ଉଚିତ ।

ବୈଜ୍ଞାନିକ ମନୋବୃତ୍ତି କ'ଣ ? ଆମ ପାଖରେ ଯେ କୌଣସି ବିଷୟ ପହଞ୍ଚିବ, ଆମେ ସେଗୁଡ଼ିକୁ ପରୀକ୍ଷା ନକରି, ଯାଞ୍ଚ ନକରି, ସତ୍ୟାସତ୍ୟ ନିର୍ଣ୍ଣୟ ନକରି ଗ୍ରହଣ କରିବା ବୈଜ୍ଞାନିକ ମନୋବୃତ୍ତି ନୁହେଁ । ଆମକୁ ଯିଏ ଯାହା କହିଦେଲେ ଆମେ ତାକୁ ଗ୍ରହଣ କରିନେବା ଉଚିତ ନୁହେଁ । ତାହାର ସତ୍ୟାସତ୍ୟ ବିଚାର କରି ପ୍ରକୃତ କଥାଟା କ'ଣ ଜାଣି ସାରିଲେ ପରେ ଗ୍ରହଣ କରିବା ଉଚିତ । ଏହା ହିଁ ବୈଜ୍ଞାନିକ ମନୋବୃତ୍ତି । ଯେତେବେଳେ ପଞ୍ଜାବରେ ଭାକ୍ରାନଙ୍ଗଲ୍ ବନ୍ଧ ବିଦ୍ୟୁତ୍ ଉତ୍ପାଦନ ଓ ଜଳସେଚନ ପାଇଁ ପ୍ରତିଷ୍ଠିତ ହେଲା, କେତେ ଲୋକ କହି ବୁଲିଲେ, ନଙ୍ଗଲ୍ କେନାଲର ପାଣି ଶୁଷ୍କ ଜମିରେ ମଡ଼ାଇଲେ କିଛି ଫଳ ନାହିଁ, କାହିଁକି ନା ଏହି ଜଳର ସାର ବିଜୁଳି ଶକ୍ତି ରୂପେ ଯାଇଛି ।

# ଜଗତ ଜନ ସେବା କରିବା ଆସେ

ଶ୍ରୀମତୀ ଉଷାରାଣୀ ପଣ୍ଡା

ସ୍ୱର୍ଗତ ଅନନ୍ତ ପ୍ରସାଦ ପଣ୍ଡାଙ୍କ ଶୋଇବା ଯାଗାରେ ପଡ଼ିଥିବା ସୋଫାରେ ବସି ଭାବୁଥିଲି ସେଇ ସ୍ୱର୍ଗତ ଆତ୍ମାଙ୍କ କଥା । ପାଖରେ ମୋର ବସିଥାଏ ଟିକି ନାତୁଣୀ ସ୍ମୃତି ସୁକନ୍ୟା । ସୁଚିଆଡ଼କୁ ନିରିକ୍ଷଣ କରି ତା'ବଡ଼ ଅଜାଙ୍କ ଶୋଇବା ଘରର ପରିବର୍ତ୍ତନକୁ ବୋଧହୁଏ ଅନୁଭବ କରି ପାରିଲା । ତା'ର କ୍ଷୁଦ୍ର ଅନ୍ତରରେ ବ୍ୟାକୁଳତାର ଅନୁରଣନ । ବଡ଼ ଅଜା ଆଉ ତା'ର ଧୋବ ଫରଫର ସୁନ୍ଦର ଘୋଡ଼େଇ ହୋଇ ଶୋଇ ନାହାନ୍ତି । ତାଙ୍କ ଖଟ ଉପରେ ବି ବସି ନାହାନ୍ତି । ଆରାମ ଚଉକିରେ ନାହାନ୍ତି ? ଆଗରୁ ତା' ଟିକି ହାତ ଧରି ହସି ହସି ହାତ ମିଳାଉଥିଲେ । ଚୁମା ଦେଉଥିଲେ । ଏବେ କେଇଦିନ ହେଲା ସବୁ ଅଲଗା । ଯେତେବେଳେ ଦେଉଳସାହି ଆସିଲେ ଦେଖୁଥିଲା ସେଇ ଦୃଶ୍ୟ । ନକହୁଥିଲେ ବି ଜାବୁଡ଼ି ଧରୁଥିଲେ ତା'ର ଛୁନି ହାତଟିକୁ । ଆଖି ଫିଟେଇ ଚିହ୍ନନ୍ତୁ କି ନଚିହ୍ନନ୍ତୁ 'ବଡ଼ ଅଜା, ବଡ଼ ଅଜା' ବୋଲି ବଡ଼ ପାଟିରେ ଦୁଇ ଗୁରିଥର ଡାକିଲେ, ମୁହଁ ବୁଲାଇ ଅନଉଥିଲେ ଟିକିଏ । କିନ୍ତୁ ଗୋଟିଏ ଦିନ ସେ ଦେଖିଲା ସମସ୍ତଙ୍କ ଆଖିରେ ଲୁହର ବନ୍ୟା ଆଉ ଫୁଲରେ ସଜା ହୋଇଛି କୋକେଇ । ସମସ୍ତଙ୍କ କାନ୍ଧରେ ଖୋଳ କରତାଳି, ବାଜା । ଅଜା ତା'ର ଗ୍ଲଲିଗଲେ ଘର, ବାରଣ୍ଡା, ଦାଣ୍ଡ ଦୁଆର ଆଉ ଫାଟକ ଡେଇଁ ରାସ୍ତା ମଝିକୁ । ସମସ୍ତେ ତ ପୁଣି ଫେରି ଆସିଲେ, କିନ୍ତୁ ବଡ଼ ଅଜା ଆଉ ବାହୁଡ଼ିଲେ ନାହିଁ । ଶିଶୁ ମନର ଏ ପ୍ରଶ୍ନ ଅନୁକ୍ଷଣ ଉତ୍ତର ଖୋଜିଲା । ଘରର କେହି ତାକୁ ହୁଏତ କହିଥିବେ ସେ ପରା ସ୍ୱର୍ଗକୁ ଗ୍ଲଲି ଗଲେଣି । ସେଇ କଥାକୁ ସ୍ମରଣ କରି ବୋଧହୁଏ ନାତୁଣୀ ସୁକନ୍ୟା ମୋତେ ସାହସ ସଞ୍ଚୟ କରି ପଗ୍ଲରିଲା : "ମା', ବଡ଼ ଅଜା କ'ଣ ସବୁଦିନେ ସ୍ୱର୍ଗରେ ରହିବେ ?" ଆବାକ୍ ହେଲି ମୋର ଟିକି ନାତୁଣୀର ପ୍ରଶ୍ନରେ । ସେଇ ଦିନ କିନ୍ତୁ (୧୭/୧୨/୮୯ ଶନିବାର) ଘରକୁ ଫେରିଲା ପରେ କୌତୁହଳୀ ଶିଶୁ ଅନ୍ତର ତା'ର ଜାଣିବାକୁ ଗ୍ଲହିଁଥିଲା କ'ଣ ସବୁ ଦେଉଳସାହିରେ ହୋଇଗଲା ସେ ଦିନ । ସେଇ ଦିନ ସେ ସାହସ କରି ପଗ୍ଲରିଲା, "ମା', ଚଉକିରେ ବସି ଦେଉଳସାହିରେ ତୁମେ କାନ୍ଦୁଥିଲ କାହିଁକି ?" ଏ ପ୍ରଶ୍ନର ଉତ୍ତର ମୁଁ ବା ଦେଇଥାନ୍ତି କ'ଣ ? ମୋ ଅନ୍ତରରେ ଜମାଟ ବାନ୍ଧି ଯାଉଥାଏ ଅସରନ୍ତି ବିଚ୍ଛେଦ, ଦୁଃଖର କୋହ । ହଁ, ବାପା ଆମର ଶଯ୍ୟାଶାୟୀ ହୋଇ ପଡ଼ିଥିଲେ ବହୁତ ଦିନ । ତଥାପି ଥିଲେ ସେ । ଆଜି କିନ୍ତୁ ଆଉ ନାହାନ୍ତି ସେ । ସତରେ ଗ୍ଲଲି ଯାଇଛନ୍ତି । ମୋ ନାତୁଣୀ ମୁହଁର ଗ୍ଲଲୁଗ୍ଲଲୁ କଥାରେ ସେ ଗ୍ଲଲି ଯାଇଛନ୍ତି ଅଦେଖା ସ୍ୱର୍ଗପୁରକୁ । ଏବେ କାଳେ ସବୁଦିନେ ରହିବେ ସେଇଠି । ସେଇ ଶାନ୍ତି ଧାମରେ ଚିର ଶାନ୍ତିରେ ରହୁ ତାଙ୍କର ଅମର ଆତ୍ମା, କିନ୍ତୁ ସେ ତ ନିଜ ହାତର କଲମ ଗାରରେ ଅଭିବ୍ୟକ୍ତ କରି ଯାଇଛନ୍ତି ତାଙ୍କର "ଅନ୍ତିମ ଆଶା" କବିତାରେ — (ଅ: ପ୍ର: ଗ୍ରନ୍ଥାବଳୀ ୨ୟ ଭାଗ) "ନୂଆ ଜନମ ଲଭି ଆତ୍ମା ମୋହର, ମାନବ ସେବା ପାଇଁ ହେବ ବାହାର ।" ତା'ହେଲେ କେଉଁଠୁ ? ତାଙ୍କରି ସମାଧି ଶିଳାରୁ ପ୍ରଭାତିବ ନୂଆ ଛବି, ନୂତନ ସୂର୍ଯ୍ୟର ଦ୍ୟୁତି ।

ବାପା ଥିଲେ ଜଣେ କର୍ମଯୋଗୀ । ସତରେ ଜପ, ତପରେ କେବେ ତାଙ୍କର ମନ ନଥିଲା । ଜନସେବା ଥିଲା ତାଙ୍କର ଶ୍ରେଷ୍ଠ ଧର୍ମ । କର୍ମରେ ହିଁ ସେ ପାଉଥିଲେ ପରମ ଶାନ୍ତି । ସେଥିପାଇଁ ସେ ଗଦ୍‌ଗଦ୍ ହୋଇ ସବୁବେଳେ ଗାଉଥିଲେ ନିଜ ଲେଖା ପ୍ରାର୍ଥନା — "ହେ ମୋର ଭଗବାନ, ବିଶ୍ୱସାରା ବ୍ୟାପ୍ତ ତବ ମହିମା ସୁମହାନ । ବିଶ୍ୱର ସେବା ଧର୍ମ ହିଁ ମୋର, ବିଶ୍ୱ ହିଁ ଭଗବାନ ।" ସାହିତ୍ୟିକ ଅନନ୍ତ ପ୍ରସାଦ ଥିଲେ ଏକା ଧାରରେ କବି, ଦାର୍ଶନିକ ଓ ଜଣେ ଦିବ୍ୟଦ୍ରଷ୍ଟା । ସରକାରୀ ଦାୟିତ୍ୱରୁ ଅବ୍ୟାହତି ନେବା ପରେ ୧୯୬୨ ମସିହାରେ ଭାରତର ରିଜର୍ଭ ବ୍ୟାଙ୍କ୍ ଦ୍ୱାରା ପରିଗ୍ଲଳିତ ଗଞ୍ଜାମ ଜିଲ୍ଲାର ଗୋପାଳପୁର ସମୁଦ୍ର କୂଳରେ ଅବସ୍ଥିତ ବିହାର ଓଡ଼ିଶାର ସର୍ବୋଚ୍ଚ ସମବାୟ ଶିକ୍ଷା କେନ୍ଦ୍ରର ଅଧ୍ୟକ୍ଷ ଭାବରେ ଅବସ୍ଥାନ କରୁଥିବା ସମୟଟି ବୋଧହୁଏ ଥିଲା ତାଙ୍କ ପାଇଁ ସବୁଠାରୁ ସ୍ୱାଚ୍ଛନ୍ଦ୍ୟତର । ସେତିକିବେଳେ ସୁଧାସ୍ରାବୀ ଲେଖନୀ ମୁନରେ ସୃଷ୍ଟି ହୋଇଥିଲା କେତେଗୋଟି ମନୋଜ୍ଞ କବିତା : "ମୋ କବିତା" ।"ଅନ୍ତିମ ଆଶା" କବିତାରେ ସେ ନିଜର ଅନ୍ତିମ ଆଶା ଅଭିବ୍ୟକ୍ତ କରିଛନ୍ତି :

ନିଭିବ ଯେବେ ମୋର ଜୀବନ ଦୀପ,
ରଚି ସମାଧି ମୋର, ପଥ ସମୀପ ।
ଲେଖିବ ତହିଁ ଦୁଇ ଗ୍ଲରି ଅକ୍ଷର,
ଶୋଇଛି ଏଥି ଯେଉଁ ଅଧମ ନର ।

ଲୋକ ମରେ । ଯେ ପର୍ଯ୍ୟନ୍ତ ସାପ ବିଷ ରକ୍ତରେ ନ ମିଶିଛି, ଲୋକ ମରିବ ନାହିଁ । ଆମ ଦେଶରେ ଗୋଟିଏ ପ୍ରଥା ଅଛି । ସାପ ଯଦି କାମୁଡ଼ିଲା, ତେବେ ଗୁଣିଆ ଡାକ । ଗୁଣିଆ ଆସି ମନ୍ତ୍ର ବୋଲି ଝାଡ଼ି ଦେଲେ ସାପ ବିଷ ନଷ୍ଟ ହୋଇଯିବ, ଫଳରେ ଲୋକଟି ଭଲ ହୋଇଯିବ । ଏହା ସମ୍ପୂର୍ଣ୍ଣ ଅନ୍ଧ ବିଶ୍ୱାସ । ମନ୍ତ୍ର ଦ୍ୱାରା ସାପ ବିଷ କେବେ ନଷ୍ଟ ହୁଏ ନାହିଁ । ଯେଉଁ କେତେକ କ୍ଷେତ୍ରରେ ଗୁଣିଆମାନେ କେତେକ ସାପ କାମୁଡ଼ା ରୋଗୀକୁ ଝାଡ଼ି ଫୁଙ୍କି ଭଲ କରନ୍ତି, ସେମାନେ ହେଲେ ଏମିତି ରୋଗୀ ଯେଉଁମାନଙ୍କ ଶରୀରରେ ବିଷ ଚରିନି ବା ଚରିଥିଲେ ଆବଶ୍ୟକ ପରିମାଣରେ ଚରିନି । ସେ କ୍ଷେତ୍ରରେ ସେ ରୋଗୀକୁ ଝଡ଼ା ଫୁଙ୍କା ନ କରିଥିଲେ ମଧ୍ୟ ସେ ଆପେ ଆପେ ଭଲ ହୋଇଥାନ୍ତା ।

ଆଉ କେତେକ ଯାଗାରେ ଲୋକେ କହନ୍ତି, ରୋଗୀକୁ ଗୁଣିଆ ପାଖକୁ ନେବା ଦରକାର ନାହିଁ । ଖାଲି ଗୁଣିଆ ପାଖକୁ ତାରଟିଏ ପଠାଇଦିଅ । ତାରବାର୍ତ୍ତା ଗୁଣିଆ ପାଖରେ ପହଞ୍ଚିଲା କ୍ଷଣି ଏଣେ ରୋଗୀ ଭଲହୋଇ ଉଠି ବସିଥିବ । ଏ ଯୁକ୍ତି ଆବୁରି ତାହା ମିଛ, ଗାଞ୍ଜୁ ଗପ । ଲୋକଙ୍କୁ ଖାଲି ଭଣ୍ଡାଇବା କଥା । ସେପରି କ୍ଷେତ୍ରରେ ଯେଉଁ ରୋଗୀ ସବୁ ଭଲ ହୋଇଛନ୍ତି, ସେମାନେ କିଛି ନ କରିଥିଲେ ବି ଭଲ ହୋଇଥାନ୍ତେ । ଯେଉଁମାନଙ୍କୁ ସାପ କାମୁଡ଼ିବା ଯୋଗୁ ଯଥେଷ୍ଟ ପରିମାଣରେ ବିଷ ସଞ୍ଚାର ହୋଇଛି, ସେମାନେ କେବେ ଗୁଣି ମନ୍ତ୍ର ଦ୍ୱାରା ଭଲ ହୋଇ ନାହାନ୍ତି । ଅନେକେଇ ସାପ କାମୁଡ଼ା ରୋଗୀକୁ ଅନେକେଇ ଗୁଣିଆ ଭଲ କରନ୍ତି ଅର୍ଥ ସେ ରୋଗୀ ବିନା ଗୁଣି ମନ୍ତ୍ରରେ ଭଲ ହେବା କଥା । କାରଣ ତା'ର ଶରୀର ଭିତରକୁ ସାପର ବିଷ ଯଥେଷ୍ଟ ପରିମାଣରେ ପ୍ରବେଶ କରି ନଥାଏ । ଗୋଟିଏ ଖୁବ୍ ବିଷଧର ସାପ ଯଦି ଜଣେ ଲୋକକୁ ନିଖୁଣ ଚୋଟ ମାରିଛି, ତାହା ଦେହକୁ ଯଥେଷ୍ଟ ପରିମାଣରେ ବିଷ ଯାଇଛି, ସେପରି ରୋଗୀକୁ କୌଣସି ଗୁଣିଆ ଭଲକରି ପାରନ୍ତି ନାହିଁ । ସେ ମୃତ୍ୟୁ ମୁଖରେ ପଡ଼େ ।

ଆମେ ସାପ କାମୁଡ଼ା ରୋଗୀ ପାଇଁ ଗୁଣିଆ ପାଖକୁ ନଯାଇ ଯଦି ଡାକ୍ତରଙ୍କ ପାଖକୁ ଯାଉ, ତେବେ ଶହେ ରୋଗୀ ଭିତରୁ ଶହେ ଭଲ ହୋଇଯିବେ । ଡାକ୍ତରଙ୍କ ପାଖକୁ ନେବା ପୂର୍ବରୁ ଯେଉଁଠି ସାପ କାମୁଡ଼ିଥାଏ, ତାର କିଛି ଉପରକୁ ଗୋଟିଏ ଶକ୍ତ ଦୌଡ଼ିରେ ସଙ୍ଗେ ସଙ୍ଗେ ଟାଣକରି ବାନ୍ଧି ଦେବ, ଯେମିତି ବିଷ ମିଶ୍ରିତ ରକ୍ତ ଉପରକୁ ଯାଇ ଦେହର ରକ୍ତ ସ୍ରୋତ ସହ ମିଶିବାର ସୁଯୋଗ ନପାଏ । ସେହି ସ୍ଥାନକୁ ଗୋଟିଏ ଛୁରୀରେ ଚିରି ଭଲ ସାବୁନରେ ଧୋଇ ସଫା କରିଦେବା ଉଚିତ । ସେହି ସ୍ଥାନରେ କିଛି ପଟାସ୍ ପାରମାଙ୍ଗାନେଟ୍ ଗୁଣ୍ଡ ସିଞ୍ଚି ପଟି ବାନ୍ଧିଦେଇ ଡାକ୍ତରଙ୍କ ପାଖକୁ ନେବ । ଡାକ୍ତର ଏଣ୍ଟିଭେନମ୍ (ବିଷନାଶକାରୀ) ଇଞ୍ଜେକ୍ସନ୍ ଦେଲେ ରୋଗୀ ଭଲ ହୋଇଯିବ । ମରିବାର ଆଶଙ୍କା ମୋଟେ ରହିବ ନାହିଁ । ଗୁଣିଆ ସାପ କାମୁଡ଼ା ରୋଗୀକୁ ଭଲ କରି ପାରିବ ଏହା ଏକ ବିରାଟ ଅନ୍ଧ ବିଶ୍ୱାସ । ଏହି ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ବହୁ ଲୋକ ମରିଛନ୍ତି । ତେଣୁ ସେପରି ଅନ୍ଧ ବିଶ୍ୱାସଠାରୁ ଆମେ ଦୂରେଇ ରହିବା ଉଚିତ ।

ଦୋଳମୁଣ୍ଡାଇ,
କଟକ ।



ରବୀନ୍ଦ୍ର ମଣ୍ଡପରେ ଅନୁଷ୍ଠିତ "ପ୍ରୀତିସାଗର ନାଇଟ୍" ମନୋରଞ୍ଜନ କାର୍ଯ୍ୟକ୍ରମ

# ଓଡ଼ିଆ ସଂସ୍କୃତିର ଐତିହ୍ୟ ଓ ଅନ୍ତଃସ୍ୱର

ଡକ୍ଟର୍ ଲକ୍ଷ୍ମୀଧର ଦାସ

ଗୋଟିଏ ଜାତି ବା ଦେଶରେ ପ୍ରଚଳିତ ବିଶ୍ବାସ ଧାରା, ବିଶ୍ୱାସ, ଆଦର୍ଶ, ରୀତିନୀତି, ପ୍ରଥା–ପରମ୍ପରା, କଳା–କାରିଗରୀ ଏବଂ ଅନ୍ୟାନ୍ୟ ମାର୍ଜିତ ଅଭ୍ୟାସର ସମନ୍ୱିତ ରୂପ ସେ ଦେଶର ସଂସ୍କୃତି ନାମରେ ଅଭିହିତ। ବସ୍ତୁତଃ ସଂସ୍କୃତି ଜାତୀୟ ଜୀବନଚର୍ଯ୍ୟା ବା ଜୀବନ ପଦ୍ଧତିକୁ ବୁଝାଏ। ରାଜଗୋପାଳଚାରୀ ଭାରତୀୟ ବିଦ୍ୟା ଭବନରେ ପ୍ରଦତ୍ତ ଭାରତୀୟ ସଂସ୍କୃତି ସମ୍ବନ୍ଧୀୟ ଭାଷଣରେ କହିଥିଲେ, "ଗୋଟିଏ ଜାତିର ବୁଦ୍ଧିଜୀବୀମାନେ ଯେଉଁ ଆଦର୍ଶ ବ୍ୟବହାର ଦେଖାନ୍ତି ଏବଂ ସାଧାରଣ ଲୋକେ ଯାହାକୁ ଦୃଢ଼ ଭାବେ ଅନୁସରଣ କରନ୍ତି, ତାହାହିଁ ଜାତୀୟ ସଂସ୍କୃତି। ସାଧାରଣ ଲୋକଙ୍କର ବ୍ୟବହାର କିମ୍ବା ତହିଁର ଭ୍ରମ ପ୍ରମାଦ ଜାତିର ପ୍ରକୃତ ସଂସ୍କୃତି ନୁହେଁ।" (ଗୋଲକ ବିହାରୀ ଧଳ : ଆମ ସଂସ୍କୃତି, ପୃଷ୍ଠା ୩୦)।

ପୃଥିବୀରେ ଭାରତବର୍ଷ ଏକ ପ୍ରାଚୀନ, ସଭ୍ୟ ଓ ସଂସ୍କୃତି ସମ୍ପନ୍ନ ଦେଶ ରୂପେ ପରିଚିତ। ଉତ୍ଥାନ, ପତନ ମଧ୍ୟରେ ଏହାର ଭୌତିକ ପ୍ରଗତି ବ୍ୟାହତ ହେଲେ ବି ସାଂସ୍କୃତିକ ଜୀବନ ଧାରା ଅବାରିତ ଗତିରେ ପ୍ରବହମାନ। ଭାରତୀୟ ସଂସ୍କୃତିର ସମନ୍ୱୟ ଧର୍ମୀ ସର୍ବଂଗ୍ରାହ୍ୟ ଶକ୍ତି ଦେଶକାଳ ପାତ୍ର ନିର୍ବିଶେଷରେ ବାହ୍ୟ ତଥା ଆଭ୍ୟନ୍ତରୀଣ ପ୍ରଭାବକୁ ଏକାନ୍ୱିତ କରିଛି। ପୁଣି "ଦେଶକେ ଫାର୍କ, ନଈକେ ବାଙ୍କ" ନୀତିରେ ପୃଥିବୀର ସଂକ୍ଷିପ୍ତ ସାର ରୂପୀ ଏହି ଉପମହାଦେଶରେ ଭୂପ୍ରକୃତି ବୈଚିତ୍ର୍ୟ, ଗୋଷ୍ଠୀଗତ ବିଭିନ୍ନତା, ରାଜନୀତିକ ଓ ଆର୍ଥନୀତିକ ପ୍ରଭାବ ଫଳରେ ଆଞ୍ଚଳିକ ଜୀବନ ଧାରାରେ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ। ଏତଦ୍‌ସତ୍ତ୍ୱେ ଅନେକ ମଧ୍ୟରେ ଐକ୍ୟ ସର୍ବତ୍ର ପରିଦୃଷ୍ଟ। ସରଳ ନିରାଡ଼ମ୍ବର ଜୀବନ ଧାରା, ସୁରୁଚି ଓ ସୁନୀତି ବୋଧ, କର୍ମଫଳ ବିଶ୍ୱାସ, ଧର୍ମୀୟ ଚେତନା, ଉଦାର ସାମ୍ୟ ମୈତ୍ରୀ ଭାବାଦି ଭାରତୀୟ ସଂସ୍କୃତିର ଅନ୍ତଃସ୍ରୋତ ରୂପେ ସ୍ୱୀକୃତ।

ଭାରତୀୟ ସଂସ୍କୃତିର ସ୍ୱଚ୍ଛ ରୂପାୟନ ଦିଗରେ ବିଭିନ୍ନ ପ୍ରାନ୍ତର ନ୍ୟୁନାଧିକ ଅବଦାନ ରହିଛି। ଉତ୍କଳୀୟ ସଂସ୍କୃତିର ପ୍ରାଚୀନତା, ଭାରତୀୟ ତଥା ବିଶ୍ୱ ସଂସ୍କୃତିକୁ ଏହାର ଅବଦାନ ଓ ବୈଶିଷ୍ଟ୍ୟର ସୂଚନାତ୍ମକ ବିଶ୍ଳେଷଣ ପ୍ରସ୍ତୁତ ନିବନ୍ଧର ଲକ୍ଷ୍ୟ।

ଆମ ରାଜ୍ୟ ଓଡ଼ିଶା ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟର ମିଳନ ସ୍ଥଳରେ ଅବସ୍ଥିତ। ଏହାର ଓଡ଼ିଶା ନାମ ନବ ଯୁଗର। ପୁରାଣ ଓ ଅନ୍ୟାନ୍ୟ ସଂସ୍କୃତ ଗ୍ରନ୍ଥମାନଙ୍କରେ ଓଡ୍ର, ଔଡ୍ର, କଳିଙ୍ଗ, ପ୍ରଥମ ଶତାବ୍ଦୀର ଗ୍ରୀକ୍ ଭୌଗୋଳିକ ପ୍ଲିନିଙ୍କ ଭାଷାରେ 'Oretes', ଚୀନ୍ ପରିବ୍ରାଜକ ହୁଏନସାଂଙ୍କ ବିବରଣୀରେ 'Ucha' ତିବ୍ବତୀୟ ଗ୍ରନ୍ଥରେ 'ଓଡ଼ିବିଶା', ଆଲବରୁଣିଙ୍କ ବିବରଣୀରେ 'Udravisau' ଆଦି ନାମରେ ଅଭିହିତ। କପିଳେନ୍ଦ୍ରଙ୍କ ଅଭିଲେଖ ତଥା ସାରଳା ମହାଭାରତରେ ଏହାର ନାମ 'ଓଡ଼ରାଷ୍ଟ୍ରମଣ୍ଡଳ' ଓଡ଼ିଶା ରାଜ୍ୟ ବା ଓଡ଼ିଶା ରାଷ୍ଟ୍ର ପରିଲକ୍ଷିତ ହୋଇଥାଏ। ଓଡ଼ିଶାର ଅନ୍ୟ ପ୍ରାଚୀନ ନାମଗୁଡ଼ିକ ହେଉଛି ଉତ୍କଳ, କୋଶଳ, କଙ୍ଗୋଦ, ତ୍ରିକଳିଙ୍ଗ। ଐତିହାସିକ କାଳରେ ଓଡ୍ର ଓ କଳିଙ୍ଗ ନାମ ଓଡ଼ିଶାର ପ୍ରାୟ ସମଗ୍ର ଅଞ୍ଚଳକୁ ବୁଝାଉଥିଲା ବେଳେ ଉତ୍କଳ ମୁଖ୍ୟତଃ ମଧ୍ୟ ଓ ଉତ୍ତର ପଶ୍ଚିମ ପ୍ରାନ୍ତ ଏବଂ କୋଶଳ ବର୍ତ୍ତମାନର ପଶ୍ଚିମ ଓଡ଼ିଶା ସହିତ ମଧ୍ୟପ୍ରଦେଶର ଛତିଶଗଡ଼ ଓ ରାୟପୁର ଅଞ୍ଚଳର ନାମ ଥିଲା। କଙ୍ଗୋଦ (କଳିଙ୍ଗୋଡ଼) ପୁରୀ ଓ ଗଞ୍ଜାମ ଜିଲ୍ଲାକୁ ଏବଂ ତ୍ରିକଳିଙ୍ଗ ଓଡ଼ିଶା ସମେତ ଆନ୍ଧ୍ରର ଉତ୍ତର ପୂର୍ବାଞ୍ଚଳକୁ ବୁଝାଉଥିଲା।

ମହାଭାରତର ବନପର୍ବ ଓ ପ୍ଲିନିଙ୍କ ବର୍ଣ୍ଣନାନୁଯାୟୀ ଗଙ୍ଗାନଦୀର ମୁହାଣ କଳିଙ୍ଗର ଉତ୍ତର ସୀମା ଥିଲା ଏବଂ ଏଠାରୁ ୬୨୦ ମାଇଲ ଦୂରରେ ଅବସ୍ଥିତ ଦନ୍ତପୁର ଏହାର ରାଜଧାନୀ ଥିଲା। ପ୍ଲିନିଙ୍କ ମତରେ କଳିଙ୍ଗର ଦକ୍ଷିଣ ସୀମାର ବ୍ୟାପ୍ତି କଳିଙ୍ଗ ଅନ୍ତରୀପ ପର୍ଯ୍ୟନ୍ତ ବିସ୍ତୃତ ଥିଲା। ରାଜନୀତିକ ପରିବର୍ତ୍ତନ ମଧ୍ୟରେ ଆମ ରାଜ୍ୟର ସୀମା ବାରମ୍ବାର ସଙ୍କୁଚିତ ଓ ପ୍ରସାରିତ ହୋଇଛି। କପିଳେନ୍ଦ୍ର ରାଜତ୍ୱରେ ଓଡ଼ିଶାର ଦକ୍ଷିଣ ସୀମା କାବେରୀ ନଦୀ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥିଲା ବେଳେ ପ୍ରାକ୍ ଗଙ୍ଗ ଶାସନ ବେଳକୁ କଳିଙ୍ଗର ସୀମା ନାଗାବଳୀ ମଧ୍ୟରେ ସୀମିତ ହୋଇ ରହିଥିଲା। ଇଂରାଜ ଶାସନରେ ହିଁ ଓଡ଼ିଶାର ସୀମା ହେଲା ସର୍ବାଧିକ ସଙ୍କୁଚିତ। ସାମୟିକ ହ୍ରାସ ବୃଦ୍ଧିକୁ ବାଦ ଦେଇ ବିଚାର କଲେ, ଗଙ୍ଗାଠାରୁ ଗୋଦାବରୀ ନହେଲେ ବି ଅନ୍ତତଃ ବଂଶଧାରା ନଦୀଯାଏ ମୁଖଲିଙ୍ଗ ସମେତ ଉପକୂଳ ଭୂମି ଥିଲା ଓଡ୍ର ବା କଳିଙ୍ଗର ଦକ୍ଷିଣ ସୀମାନ୍ତ। ପ୍ରାଚୀନ ଓଡ଼ିଶାର ଉତ୍ତର ସୀମାନ୍ତ ଛୋଟନାଗପୁର, ଗୟା ଓ ମେଦିନୀପୁର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା। ଭାଷାବିତ୍ ଗ୍ରୀୟାରସନ୍‌ଙ୍କ ସର୍ଭେ ଏହାକୁ ସମର୍ଥନ କରିଥାଏ। ସେ ଓଡ଼ିଆ

ମହାମନାଙ୍କର ଏ ବିନୟୋକ୍ତି ସ୍ମରଣ କରାଇଦିଏ :

"ନତ୍ୱନ୍ତି ଫଳିନୋ ବୃକ୍ଷାଃ
ନମ୍ରନ୍ତି ଗୁଣୀନୋ ଜନାଃ"

ପରର ଦୁଃଖ କଷ୍ଟ ଦେଖି ସାରା ଜୀବନ ତାଙ୍କ ଆଖିରୁ ଝରିଛି ଲୋତକ :

"ନିଖିଳ ଜନସେବା ବ୍ରତକୁ ଧରି,
କଟୁଥିଲା ତାର ଦିବା ଶର୍ବରୀ ।"

ସେଇ ସର୍ବନିୟନ୍ତା ଅନ୍ତର୍ଯ୍ୟାମୀ, ପରମାତ୍ମା ପରମ ପୁରୁଷଙ୍କଠାରେ ଆତ୍ମ ସମର୍ପଣ କରି କଟିଥିଲା ତାଙ୍କର ସୁଦୀର୍ଘ ଜୀବଦଶା ।

"ସମର୍ପି ମନ ବିଶ୍ୱକର୍ତା ପାଦେ,
କଟାଉଥିଲା ଦିନ ସୁଖ, ବିପଦେ ।"

ଦେଶ କାଳ ପାତ୍ରରେ କୌଣସି ଭେଦଭାବ ନରଖି ଜଗତଜନଙ୍କୁ ସେ ଆପଣାର ମଣୁଥିଲେ । ସେଥିପାଇଁ ସେ ଧରାଧାମରୁ ମୁକ୍ତି ନଲୋଡ଼ି ପୁଣି ସଂସାରରେ ନୂତନ ରୂପରେ ଜନ୍ମିବା ପାଇଁ ଆଶା ପୋଷଣ କରି ଲେଖିଛନ୍ତି :

"ଜଗତ ଜନସେବା କରିବା ଆଶେ,
ମାଗେ ଶକତି ଖାଲି ବିଭୁଙ୍କ ପାଶେ ।
ଧରାଧାମରୁ ମୁକ୍ତି ଲୋଡ଼େ ତ ନାହିଁ,
ମାଗଇ ପୁଣି ଜନ୍ମ ଲଭିବା ପାଇଁ ।"

୧୯୮୯ ମସିହା ପୌଷ ମାସର ଧନୁ ସଂକ୍ରାନ୍ତିର ପବିତ୍ର ବାସର ମଧ୍ୟ ରାତ୍ରରେ ସେହି ମୃତ୍ୟୁଞ୍ଜୟୀ ପୁରୁଷଙ୍କର ଦେହାବସାନ ହୋଇଯାଇଛି । ପଞ୍ଚଭୂତରେ ଲୀନ ହୋଇଯାଇଛି ତାଙ୍କ ମର ଶରୀର । ଲିଭି ଯାଇଛି କର୍ମୋଜ୍ଜ୍ୱଳ ଜୀବନ ଦୀପ । ତାଙ୍କରି ସୁଯୋଗ୍ୟ ଦାୟାଦଙ୍କର କର୍ତ୍ତବ୍ୟ ପାଳନ ପାଇଁ ପ୍ରକୃଷ୍ଟ ସମୟ ଆଜି ଉପଗତ । ତାଙ୍କର ସମାଧି ପୀଠ ଯେପରି ବନ୍ଧୁ ବିନତ ବୃକ୍ଷ ଛାୟା ପରିପୂର୍ଣ୍ଣ ଏକ ମନୋରମ୍ୟ ଉଦ୍ୟାନ । ସେଇ ତୀର୍ଥର ଉତ୍ତରସୂରୀଙ୍କୁ ସମ୍ବୋଧନ କରି ସେ କହିଛନ୍ତି :

"ସେ ପଥେ ଗ୍ଭଲିଯିବ ଯାନବାହାନ,
ଅଥବା ଯିବେ ଗ୍ଭଲି ପଥିକୀ ଜନ ।
ଚରଣ ଧୂଳି ଉଡ଼ି ସମାଧି ପରେ,
ଆଶିଷ କଣା ରୂପେ ପଡ଼ିବ ଥରେ ।
ଶୀତଳ ହିଆ ମୋର ସମାଧି ଗର୍ଭେ,
ନାଚି ଉଠିବ ପୁଣି ନବୀନ ଗର୍ବେ ।"

ସେଇ ହେବ ତାଙ୍କ ପ୍ରତି ତାଙ୍କ ଉତ୍ତର ପୁରୁଷର ସ୍ନେହ ଶ୍ରଦ୍ଧାପୂତ ଭକ୍ତିପ୍ଲୁତ ସମ୍ମାନ । ମନୁଷ୍ୟର ପ୍ରକୃତ ଜୀବନ ହିଁ ଆରମ୍ଭ ହୁଏ ତା'ର ମୃତ୍ୟୁ ପରେପରେ ।

ତାଙ୍କ ସମାଧି ଚତୁଃପାର୍ଶ୍ୱରେ ପରିଶ୍ରାନ୍ତ ପଥିକୀର ତାପ ଅପନୋଦନ ପାଇଁ ଛାୟା ସୁଶୀତଳ ବୃକ୍ଷରାଜି ରୋପିବାକୁ ମଧ୍ୟ ସେ ନିର୍ଦ୍ଦେଶ ଦେଇ ଯାଇଛନ୍ତି ତାଙ୍କ କବିତାରେ । ପର ସୁଖରେ ସେ ଥିଲେ ସର୍ବଦା ସୁଖୀ । ଏଣୁ ସେ କାମନା କରିଥିଲେ :

"ଦୁର୍ବହ ଗୁରୁଭାରେ ହୋଇ ଅସ୍ଥିର,
ବସିବ ତହିଁ ଯଦି ପଥିକୀ ନର ।
ଦୀରିଘ ଶ୍ୱାସ ତା'ର ପଞ୍ଜର ଭେଦି,
ଦଳାଇ ଦେବ ମୋର ଛାଣୁ ସମାଧି ।
ନୟନୁ ନିଗିଡ଼ି ତା ତପତ ଜଳ,
କରିବ ମୋର ତପ୍ତ ହିଆ ଶୀତଳ ।
ନୂତନ ଜନ୍ମ ଲଭି ଆସା ମୋହର,
ମାନବ ସେବା ପାଇଁ ହେବ ବାହାର ।"

ମାର୍ଫତ୍ : ଭିକାରୀ ଚରଣ ପଣ୍ଡା, ଆଡ୍‌ଭୋକେଟ୍,
ମା' କୃପା କୁଟୀର,
ପିଠାପୁର, କଟକ–୧ ।



ରାଜ୍ୟପାଳ ଶ୍ରୀ ଶର୍ମାଙ୍କ କୋଣାର୍କ ନାଟ୍ୟୋତ୍ସବ ଉଦ୍‌ଘାଟନ

ସମସ୍ତ ଧର୍ମ ଦର୍ଶନ, ତନ୍ତ୍ର, ପୂଜା ପଦ୍ଧତି ଓ ଧ୍ୟାନ ଧାରଣାର ସମନ୍ୱୟରେ ପ୍ରତିଷ୍ଠିତ ଉଦାର ସାର୍ବଜନୀନ ଜଗନ୍ନାଥ ଧର୍ମ ଦର୍ଶନ ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ସର୍ବଶ୍ରେଷ୍ଠ ଅବଦାନ ଜଗନ୍ନାଥ ବା ପୁରୁଷୋତ୍ତମ ଉପାସନା ସପ୍ତମ ଶତାବ୍ଦୀର ବହୁ ପୂର୍ବରୁ ପ୍ରଚଳିତ ଥିବାର ଐତିହାସିକ ପ୍ରମାଣ ମିଳିଥାଏ । ଶଙ୍କର, ରାମାନୁଜ, ନିମ୍ବାର୍କ, ଜ୍ଞାନଦେବ, ନାମଦେବ, କବୀର, ନାନକ ଏପରିକି ବହୁ ମୁସଲମାନ ଭକ୍ତ ଶ୍ରୀକ୍ଷେତ୍ରର ଜଗନ୍ନାଥ ତତ୍ତ୍ୱ ଦ୍ୱାରା ପ୍ରଭାବିତ ହୋଇଥିଲେ । ପୁଣି ଓଡ଼ିଶା ଥିଲା, ହୀନଯାନ, ସହଜଯାନ ଦର୍ଶନ, ତନ୍ତ୍ର ଓ ନାଥ ଧର୍ମର ପ୍ରଧାନ ପୀଠ । କିନ୍ତୁ ଓଡ଼ିଶା ଭୂମିରେ ପ୍ରଚଳିତ ଜୈନ ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବାଦି ମୁଖ୍ୟ ଧର୍ମ ଜ୍ଞାନ, କର୍ମ, ସଂଯମ, ସାଧନ ଓ ଯୋଗକୁ ଆଦର୍ଶ ଭାବେ ଗ୍ରହଣ କରି ନେଇଥିଲେ ।

ଧଉଳି, ଜଉଗଡ଼ ଓ ହାତୀ ଗୁମ୍ଫାରେ ଉତ୍କୀର୍ଣ୍ଣ କେତୋଟି ଆଞ୍ଚଳିକ ଶବ୍ଦ ତାତ୍କାଳିକ ଭାଷାର ସୂଚନା ଦିଅନ୍ତି । ପାଳି ବା ଅର୍ଦ୍ଧମାଗଧୀ ପ୍ରାକୃତରୁ ଅପଭ୍ରଂଶ ସ୍ତର ଦେଇ ସମ୍ଭବତଃ ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷାର ସୃଷ୍ଟି । ସପ୍ତମରୁ ଦଶମ ଶତାବ୍ଦୀ ମଧ୍ୟରେ ରଚିତ ଚର୍ଯ୍ୟା ଗୀତିକାଗୁଡ଼ିକ ଅପଭ୍ରଂଶ ସ୍ତରର ଭାଷା । ଏହି ଭାଷା ଆଧୁନିକ ଓଡ଼ିଆ, ବଙ୍ଗଳା, ଆସାମୀୟା, ମୈଥିଳୀ ଭାଷାର ଜନନୀ । ଏହି କାଳରେ ଖୋଦିତ ଧର୍ମରାଜ ସୁମଣ୍ଡଳଙ୍କ ଅଭିଲେଖ (ଖ୍ରୀ: ୫୬୯) ଓ ମାଧବ ବର୍ମାଙ୍କ ନଚୀନା ତାମ୍ର ଶାସନରେ (ଖ୍ରୀ: ୬୧୯) କେତେକ ଓଡ଼ିଆ ଶବ୍ଦର ପ୍ରୟୋଗ ପରିଲକ୍ଷିତ । ତଦାନୀନ୍ତନ ଓଡ଼ିଆ ଭାଷା ଔଡ୍ରୀ ଅପଭ୍ରଂଶ ବା ଔଡ୍ରୀ ବିଭାଷା (ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ର) ରୂପେ ପରିଚିତ । ପୂର୍ବୀ ମାଗଧୀ ସହିତ ଦ୍ରାବିଡ଼ ଓ ଆଦିବାସୀ ଭାଷା ମିଶି ଔଡ୍ରୀ ଅପଭ୍ରଂଶର ସୃଷ୍ଟି ।

ସୋମ ବଂଶୀ କେଶରୀମାନଙ୍କ ରାଜତ୍ୱରେ (୯୩୧ ଖ୍ରୀ: ରୁ ୧୧୧୦ ଖ୍ରୀ:) ଉତ୍କଳ, କଙ୍ଗୋଦ ଓ କୋଶଳ ଏକ ଶାସନାଧୀନ ହେଲା । ଫଳତଃ ଏହି କାଳରେ ଆଞ୍ଚଳିକ ଓଡ଼ିଆ ଭାଷା ଉନ୍ନତି ସଂପାଦିତ ହୋଇଥିବ । କିନ୍ତୁ ଏ ସମୟରେ ଖୋଦିତ ଓଡ଼ିଆ ଅଭିଲେଖ ଅଦ୍ୟାବଧି ଆବିଷ୍କୃତ ହୋଇନାହିଁ । ଗଙ୍ଗ ରାଜତ୍ୱ (୧୧୧୦–୧୪୩୫ ଖ୍ରୀ:)ରେ ଖୋଦିତ ବହୁ ଶିଳାଲେଖ ଏବେ ବିଭିନ୍ନ ସ୍ଥାନରୁ ମିଳୁଛି । ତାଳପତ୍ର ପୋଥିର ସ୍ୱଳ୍ପ ସ୍ଥାୟିତ୍ୱ ହେତୁ ହେଉ ବା ଅନ୍ୟ କାରଣରୁ ହେଉ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଲିଖିତ ଓଡ଼ିଆ ସାହିତ୍ୟ ମିଳେ ନାହିଁ । ସାରଳା ଦାସ ଲୋକମୁଖୀ ଭାଷାକୁ ସାହିତ୍ୟ ରୂପ ଦେଇ ବିପୁଳାକୃତି ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ ରଚନା କଲେ । ସାରଳା ଓଡ଼ିଆ ସାହିତ୍ୟରେ ବ୍ୟାପକବି ଓ ଆଦିକବି ରୂପେ ସମ୍ମାନିତ । ସେହି କାଳରୁ ଓଡ଼ିଆ ସାହିତ୍ୟ ପ୍ରଗତି ପଥରେ ଆଗେଇ ଭାରତୀୟ ତଥା ବିଶ୍ୱ ସାହିତ୍ୟକୁ ଯଥାଶକ୍ତି ଦାନ ଦେଉଛି ।

ପଞ୍ଚମ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ସଂସ୍କୃତ ଓଡ଼ିଶାର ରାଜକୀୟ ତଥା ସାହିତ୍ୟିକ ଭାଷା ରୂପେ ପ୍ରଚଳିତ । ଓଡ଼ିଶାର ବହୁ କବି ଓ ମନୀଷୀ କାବ୍ୟ ଓ ଶାସ୍ତ୍ର ରଚନା କରି ସଂସ୍କୃତ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି । 'ପଞ୍ଚତନ୍ତ୍ର' ରଚୟିତା ବିଷ୍ଣୁ ଶର୍ମା, 'ଅନର୍ଘରାଘବ' ସ୍ରଷ୍ଟା ମୁରାରି ମିଶ୍ର, 'ପ୍ରବୋଧ ଚନ୍ଦ୍ରୋଦୟ' ନାଟ୍ୟକାର କୃଷ୍ଣ ମିଶ୍ର, 'ନୈଷଧୀୟ ଚରିତମ୍'ର କବି ଶ୍ରୀହର୍ଷ, 'ଗୀତ ଗୋବିନ୍ଦ'କାର ଜୟଦେବ, 'ସାହିତ୍ୟ ଦର୍ପଣ' ପ୍ରଣେତା ଆଳଙ୍କାରିକ ବିଶ୍ୱନାଥ ଆଦି ପ୍ରମୁଖ ତଥା ସ୍ମୃତି ଶାସ୍ତ୍ରକାର ରୂପେ ବାଜପେୟୀ ଶମ୍ଭୁକର ମିଶ୍ର, ଦିବାକର ମିଶ୍ର, ଜଗନ୍ନାଥ ମିଶ୍ର, ରାମଚନ୍ଦ୍ର ବାଜପେୟୀ ଭାରତୀୟ ଆସରରେ ବହୁଚର୍ଚ୍ଚିତ । ଉତ୍କଳର ଆୟୁର୍ବେଦ, ଶିଳ୍ପ ଶାସ୍ତ୍ର ଜ୍ୟୋତିଷ, ସଙ୍ଗୀତ, ବ୍ୟାକରଣ ସମ୍ପର୍କରେ ବହୁ ମୂଲ୍ୟବାନ ଗ୍ରନ୍ଥ ରଚିତ ହୋଇଛି । (ପଣ୍ଡିତ ନୀଳମଣି ମିଶ୍ର – ସଂସ୍କୃତ ଭାଷା ଓ ସାହିତ୍ୟକୁ ଓଡ଼ିଶାର ଅବଦାନ) ।

ହାତୀ ଗୁମ୍ଫାରେ ଲିଖିତ ଖାରବେଳଙ୍କ ଗାନ୍ଧର୍ବ ବିଦ୍ୟା ପ୍ରବୀଣତା ଓ ତାଙ୍କ ଖୋଦିତ ରାଣୀ ଗୁମ୍ଫା ରଙ୍ଗମଞ୍ଚ ଆମ ନାଟ୍ୟ ସଙ୍ଗୀତ ଐତିହ୍ୟର ଆଦି ସ୍ମାରକୀ । ମୁଖ୍ୟ ମନ୍ଦିର ସହିତ ନାଟ୍ୟ ମନ୍ଦିରର ସୃଷ୍ଟି, ନଟରାଜ, ନୃତ୍ୟରତ ଗଣେଶ, ନର୍ତ୍ତକୀ ଓ ବାଦକ ମୂର୍ତ୍ତି, ଦେବଦାସୀ ପ୍ରଥାର ପ୍ରଚଳନ ମଧ୍ୟରେ ଏ ପରମ୍ପରା ବ୍ୟକ୍ତିତ । 'ଅଭିନବ ଚନ୍ଦ୍ରିକା' (୧୬ଶ ଶତାବ୍ଦୀ), ନାଟ୍ୟ ମନୋରମା (୧୭ଶ ଶତାବ୍ଦୀ) 'ସଙ୍ଗୀତ ନାରାୟଣ' (୧୮ଶ ଶତାବ୍ଦୀ) ଗ୍ରନ୍ଥରେ ବହୁ ନୃତ୍ୟର ଉଲ୍ଲେଖ ଅଛି । ଓଡ଼ିଶୀ ଓ ଛଉ ନୃତ୍ୟ ଆଜି ସମଗ୍ର ବିଶ୍ୱରେ ଆଦୃତ ଲାଭ କରିଛି ।

ସୂକ୍ଷ୍ମକଳାର ଦେଶ ଉତ୍କଳ ଉଲ୍ଲିଖିତ କଳାକୃତି ବ୍ୟତୀତ ସୁନ୍ଦର ସୂକ୍ଷ୍ମ ବସ୍ତ୍ର, କାଠ ଖୋଦେଇ, ଶିଙ୍ଗ ଓ ପିତଳ କାରିଗରୀ, ରୂପାତାରକସି, ପଟ୍ଟଚିତ୍ର, ତାଳପତ୍ର ଖୋଦେଇ, ପଥର ମୂର୍ତ୍ତି ଆଦି କାରୁକାର୍ଯ୍ୟ ଯୋଗୁଁ ଏବେ ବି ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଛି । ଆମ ସଂସ୍କୃତି କୃଷି ଭିତ୍ତିକ । ଏ ଦେଶର ଧର୍ମପ୍ରାଣ ଜନତା ତାହାର କର୍ମମୁଖର ଜୀବନରେ ଅବସର ବିନୋଦନ ପାଇଁ ବହୁ ପୂଜା ପର୍ବ, ଯାନି–ଯାତ୍ରା ଓ ନୃତ୍ୟ ସଙ୍ଗୀତର ବ୍ୟବସ୍ଥା କରିଛି । ବିଭିନ୍ନ ଋତୁକାଳୀନ ସାମାଜିକ ଉତ୍ସବରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଐତିହ୍ୟବୋଧ ଆଦିର ଅପୂର୍ବ ସମନ୍ୱୟ ଘଟିଛି । କାଳଗତ ବ୍ୟବଧାନ ଓ ଧର୍ମୀୟ ପରିବର୍ତ୍ତନ ମଧ୍ୟରେ ଉତ୍କଳର ବହୁ ପରମ୍ପରା ଦକ୍ଷିଣ ପୂର୍ବ ଏସିଆ ଓ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ଏବେ ବି ଅନୁସୃତ ନମୁନା ରୂପେ ଶ୍ୟାମ ଦେଶରେ ପାଳିତ ଅକ୍ଷୟ ତୃତୀୟା ଓ କାର୍ତ୍ତିକ ପୂର୍ଣ୍ଣିମାର ବୋଇତ ଭସା, ଜାଭା ଓ ବାଲି ଦ୍ୱୀପରେ ପ୍ରଚଳିତ ଚଇତି ଘୋଡ଼ା ଦଣ୍ଡ ଓ ନାଗାନାଚ ବିବାହ ଉତ୍ସବରେ ଢୋଲ ତିଆରି ମୁଦ୍ରିକର ବ୍ୟବହାରକୁ ନିଆଯାଇ ପାରେ । (ଡକ୍ଟର ଆଶୁତୋଷ ପ୍ରସାଦ ପଟ୍ଟନାୟକ – ଦକ୍ଷିଣ ପୂର୍ବ ଏସିଆରେ ସାଂସ୍କୃତିକ ଉପନିବେଶ) ।

ଜାତି ବା ଦେଶ ପାଇଁ ବ୍ୟକ୍ତି ସ୍ୱାର୍ଥକୁ ଜଳାଞ୍ଜଳି ଦେବାର ଆଦର୍ଶ ଯୁଗେ ଯୁଗେ ଉତ୍କଳରେ ସଂଘଟିତ । କଳିଙ୍ଗ ଯୁଦ୍ଧ, ବୀରଭଦ୍ର ଓ ଧର୍ମପଦଙ୍କ ଆତ୍ମାହୂତିକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇ ପାରେ । ସ୍ୱାଧୀନ ହେବାର ଦୁର୍ବାର କାମନା ବୀର ଓଡ଼ିଆ ପ୍ରାଣରେ କାଳେ କାଳେ ରହିଛି । ସିପାହୀ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ଗୃହୀତ । ଏହାର ବହୁ ପୂର୍ବରୁ ଓଡ଼ିଆମାନେ ଇଂରେଜ ବିରୋଧରେ ସଂଗ୍ରାମ ଘୋଷଣା କରିଥିଲେ । ଝାନ୍ସି ରାଣୀ ଲକ୍ଷ୍ମୀବାଈଙ୍କ ପରି ପାରଳା ଗଜପତିଙ୍କ ପଟ୍ଟମହିଷୀ ଏବଂ ଖୋର୍ଦ୍ଧା ରାଜାଙ୍କ ଅନୁଗତ ଜଗବନ୍ଧୁ ବିଦ୍ୟାଧର ବ୍ରିଟିଶ ଶାସନ ବିରୋଧରେ ବିଦ୍ରୋହାଗ୍ନି ଜାଳିଥିଲେ । ପୁଣି ସିପାହୀ ବିଦ୍ରୋହରେ ସୁରେନ୍ଦ୍ର ସାଏ ଓ ବୃନ୍ଦ ସୁଲ୍ତାଇଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମରେ ଉତ୍କଳର ବରପୁତ୍ର ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ଦେଶସେବୀଙ୍କ ଅବଦାନ ପ୍ରଶଂସନୀୟ । ସେହିପରି ଆଦର୍ଶ ଜାତୀୟ ଶିକ୍ଷାର ପରୀକ୍ଷାମୂଳକ ପ୍ରୟୋଗରେ (ସତ୍ୟବାଦୀ ବନ ବିଦ୍ୟାଳୟ) ଓ ଜାତୀୟ ପୁନର୍ଗଠନ ନିମିତ୍ତ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣରେ ଓଡ଼ିଶା ଅଗ୍ରଣୀ ।

ଭାରତୀୟ ସଂସ୍କୃତିର ମୂଳଭିତ୍ତି ସମନ୍ୱୟ । ଏହି ସମନ୍ୱୟୀ ଧର୍ମର ସତ୍ୟ ରୂପ ଉତ୍କଳୀୟ ସଂସ୍କୃତିରେ ରହିଛି । ଉତ୍କଳ ଭୂମି ଯୁଗେ ଯୁଗେ ସମଦର୍ଶୀ ଉଦାରଭାବ ପୋଷଣ କରିଛି । ଏକଦା ସ୍ୱାଧୀନ ଭିନ୍ନ ରାଜ୍ୟ ଭାବେ ଓଡ଼ିଶା ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ଦ୍ୱିତୀୟ ଭାଗ ପର୍ଯ୍ୟନ୍ତ ଭିନ୍ନ ସଂସ୍କୃତିର ସେତୁ ବନ୍ଧ ରୂପେ କାର୍ଯ୍ୟ କରିଛି । ଶ୍ରୀକ୍ଷେତ୍ର ହୋଇଛି ସାଧୁ–ସନ୍ଥ ସନ୍ନ୍ୟାସୀଙ୍କ ଆଶ୍ରୟ ସ୍ଥଳ ବା ପ୍ରେରଣା ଭୂମି ।

ଓଡ଼ିଆ ଜାତିକୁ ଆଦର୍ଶ ବା ଉନ୍ନତ ମନକରେ ତାହାକୁ ଅନୁସରଣରେ ଗ୍ରହଣ କରିନିଅ । ଜେମ୍ସ ପ୍ରିନ୍ସେପ୍, ଦେଖିଲିଆ ଓଡ଼ିଆ । ଆମ ଅନୁକରଣରେ ମଧ୍ୟ ମୌଳିକତାର ସ୍ୱାକ୍ଷର ମୁଦ୍ରିତ । ଓଡ଼ିଆର ଧର୍ମ ଧାରଣା, ଶିଳ୍ପ ସ୍ଥାପତ୍ୟ, ଭାଷା–ସାହିତ୍ୟ, ଖାଦ୍ୟ–ପେୟ,

ଭାଷାଭାଷୀ ଅଞ୍ଚଳର ସୀମା ନିରୂପଣ କରିବାକୁ ଯାଇ କହିଛନ୍ତି – ଓଡ଼ିଆମାନେ ବାସ କରୁଥିବା ଭୂଖଣ୍ଡର ଉତ୍ତର ସୀମା ମେଦିନୀପୁର–ସିଂହଭୂମରୁ ଦକ୍ଷିଣରେ ବିଶାଖାପାଟଣା ଜିଲ୍ଲା ପର୍ଯ୍ୟନ୍ତ: ପଶ୍ଚିମରେ ରାୟପୁର ଓ ସମ୍ବଲପୁରଠାରୁ ପୂର୍ବ ଦିଗକୁ ବଙ୍ଗୋପସାଗର ପର୍ଯ୍ୟନ୍ତ ବ୍ୟାପିଥିଲା ।

ଐତରେୟ ବ୍ରାହ୍ମଣ, ମହାଭାରତ, ରାମାୟଣ, ହରିବଂଶ ଓ ବୌଦ୍ଧ ଜାତକରେ କଳିଙ୍ଗ ଓ ଓଡ୍ର ଦେଶର ଉଲ୍ଲେଖ ଅଛି । ପରବର୍ତ୍ତୀ କାଳରେ ରଚିତ ଶୁଦ୍ଧ ରଘୁବଂଶ ଓ ପୁରାଣମାନଙ୍କରେ ଉତ୍କଳର ନାମ ପରିଲକ୍ଷିତ ହୋଇଥାଏ । କିନ୍ତୁ ଖାରବେଳଙ୍କ ପରବର୍ତ୍ତୀ କାଳ ପର୍ଯ୍ୟନ୍ତ କୌଣସି ଐତିହାସିକ ରେକର୍ଡ଼ରେ ଉତ୍କଳର ନାମ ମିଳି ନଥାଏ । ଓଡ୍ର ନାମଟି କୃଷି (ଧାନ ଗୁଚ୍ଛ) ବା କୃଷକକୁ ପ୍ରତୀକିତ କରୁଥିବା ବେଳେ କଳିଙ୍ଗ ନାମଟି ବନ୍ଧନ ଶିଳ୍ପର ଦ୍ୟୋତକ ବୋଲି ପଣ୍ଡିତମାନଙ୍କ ଅଭିମତ । ବହୁ ପ୍ରାଚୀନ କାଳରୁ ମାନବୀୟ କୃଷି ସଂସ୍କୃତି ଆଦି ଶିଳ୍ପ ଦୁଇଟିରେ ଓଡ଼ିଆମାନେ ଦକ୍ଷତାଲାଭ କରିଥିବା ଓଡ୍ର ଓ କଳିଙ୍ଗ ନାମରୁ ସୂଚିତ । ବୋଧହୁଏ କଳା କ୍ଷେତ୍ରରେ ଉତ୍କର୍ଷଲାଭ କରିବା ପରେ ଏହି ଭୂଖଣ୍ଡର ଅନ୍ୟ ନାମ ଉତ୍କଳ ହୋଇଛି ।

ଆଦି କାଳରେ ପୂର୍ବ ଭାରତ ବ୍ରାତ୍ୟଦେଶ ରୂପେ ପରିଚିତ ଥିଲା ଏବଂ ଏହି ଭୂଖଣ୍ଡରେ ଅଷ୍ଟ୍ରିକ୍ ଉପଜାତିମାନେ ବାସ କରୁଥିଲେ । ସୌରା ଓ ମୁଣ୍ଡାମାନେ ଏ ଅଞ୍ଚଳରେ ବାସ କରୁଥିବାର ସୂଚନା ଗ୍ରୀକ୍ ଐତିହାସିକମାନଙ୍କ ବିବରଣୀରୁ ଜଣାଯାଏ । ଉତ୍ତର ଭାରତରେ ଆର୍ଯ୍ୟମାନେ ପ୍ରତିଷ୍ଠିତ ହେବା ପରେ ସେମାନଙ୍କ ମଧ୍ୟରୁ ଏକ ଶାଖା ଆସି ପୂର୍ବ ଉପକୂଳ ଓ ଗାଙ୍ଗେୟ ଉପତ୍ୟକାରେ ବାସ କଲେ । ଫଳତଃ ଏ ଅଞ୍ଚଳରେ ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ ପ୍ରଭୃତି ରାଜ୍ୟ ସ୍ଥାପିତ ହେଲା । ମହାଭାରତ ଆଦି ପର୍ବରେ ବର୍ଣ୍ଣିତ ଅନ୍ଧ ଋଷି ଦୀର୍ଘତମାଙ୍କ ଔରସରୁ ଅସୁର ରାଜା ବଳିଙ୍କ ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରୁ ଜାତ ପାଞ୍ଚ ପୁତ୍ର ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ ଓ ଓଡ୍ର (ମତାନ୍ତରରେ ଆନ୍ଧ୍ରଙ୍କ ରାଜ୍ୟ ସ୍ଥାପନକୁ ଏ କ୍ଷେତ୍ରରେ ଦୃଷ୍ଟାନ୍ତ ଭାବେ ଗ୍ରହଣ କରାଯାଇ ପାରେ । ଖ୍ରୀ: ପୂ: ଅଷ୍ଟମ ଶତାବ୍ଦୀରୁ ମହାପଦ୍ମନନ୍ଦଙ୍କ କଳିଙ୍ଗ ବିଜୟ ପର୍ଯ୍ୟନ୍ତ (ଖ୍ରୀ: ପୂ: ୩୬୦) ବହୁ ରାଜାଙ୍କ କଳିଙ୍ଗ ଭୂମିରେ ରାଜତ୍ୱ ଏବଂ ଏକ ଯୁଦ୍ଧ ପ୍ରିୟ ବୀର ଜାତି ରୂପେ କଳିଙ୍ଗର ପରିଚୟ ବିଭିନ୍ନ ଜୈନ ଓ ବୌଦ୍ଧ ଗ୍ରନ୍ଥରୁ ମିଳିଥାଏ ।

କଳିଙ୍ଗ ଯୁଦ୍ଧ (ଖ୍ରୀ: ପୂ: ୨୬୧)ର ବହୁ ପୂର୍ବରୁ କଳିଙ୍ଗ ବହିର୍ବାଣିଜ୍ୟ ତଥା ଅନ୍ତର୍ବାଣିଜ୍ୟରେ ପ୍ରତିଷ୍ଠା ଲାଭ କରିଥିଲା । ଏହାର ସୁଦୀର୍ଘ ଉପକୂଳ ରେଖା, ଗଭୀର ନଦୀ ମୁହାଣ କଳିଙ୍ଗବାସୀଙ୍କୁ ଏକ ସାହସୀ ନୌଜାତିରେ ପରିଣତ କରିଥିଲା । ଅଶୋକ ବୋଧହୁଏ ମଗଧ ସାମ୍ରାଜ୍ୟର ସାମୁଦ୍ରିକ ବାଣିଜ୍ୟକୁ ସୁଗମ କରିବା ପାଇଁ କଳିଙ୍ଗ ଆକ୍ରମଣ କରିଥିଲେ । ଅଶୋକଙ୍କ କଳିଙ୍ଗ ବିଜୟର ବହୁ ପୂର୍ବରୁ ଏ ଦେଶର ବଣିକମାନେ ବ୍ରହ୍ମଦେଶର ପେଗୁ ଅଞ୍ଚଳରେ ଉପନିବେଶ ସ୍ଥାପନ କରିଥିଲେ । ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ସିଂହଳ ଓ କଳିଙ୍ଗ ମଧ୍ୟରେ ହାତୀ ବାଣିଜ୍ୟ ଚାଲିଥିଲା । ଚୀନ୍ ସହିତ ଏ ଦେଶର ବାଣିଜ୍ୟ କାରବାର ମଧ୍ୟ ବହୁ ପୂର୍ବରୁ ଚାଲିଥିଲା । ଚୀନ୍ ଦେଶର ଲୋକମାନେ ପ୍ରଥମେ ବାଣିଜ୍ୟ କରୁଥିବା ଭାରତୀୟମାନଙ୍କୁ କ୍ଲିନ୍-କ୍ଲିନ୍ କହୁଥିଲେ । ଏହା କଳିଙ୍ଗର ନାମାନ୍ତର ମାତ୍ର । ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀର ଗ୍ରୀକ୍ ଐତିହାସିକମାନଙ୍କ ବିବରଣୀରୁ ଜଣାଯାଏ ଭାରତରେ ଥିବା ୯ଟି ବନ୍ଦର ମଧ୍ୟରୁ ୬ଟି ବନ୍ଦର କେବଳ କଳିଙ୍ଗରେ ଥିଲା । ପରବର୍ତ୍ତୀ କାଳରେ କଳିଙ୍ଗର ବଣିକମାନେ ଜାଭା, ବୋର୍ଣ୍ଣିଓ, ବାଲି, ମାଳୟ, ସିଙ୍ଗାପୁର, ଶ୍ୟାମ, କାମ୍ବୋଡ଼ିଆ ପ୍ରଭୃତି ଦେଶ ସହିତ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିଥିଲେ । ଏଥି ମଧ୍ୟରୁ କେତେକ ଅଞ୍ଚଳରେ ଉପନିବେଶମାନ ସ୍ଥାପନ କରାଯାଇଥିଲା । ଗଙ୍ଗବଂଶର ରାଜତ୍ୱ ସମୟକୁ କଳିଙ୍ଗର ବହିର୍ବାଣିଜ୍ୟ ଆଫ୍ରିକା ପର୍ଯ୍ୟନ୍ତ ପ୍ରସାର ଲାଭ କରିଥିଲା । କୋଣାର୍କ ଗାତ୍ରରେ ଅଙ୍କିତ ଜିରାଫ୍ ମୂର୍ତ୍ତିକୁ ଏହାର ସଙ୍କେତ ଭାବରେ ଗ୍ରହଣ କରାଯାଇ ପାରେ ।

ଦନ୍ତପୁର, କଳିଙ୍ଗନଗର ଓ ଜେଳିଆଳ ଆଦି ପ୍ରାଚୀନ ନଗରର ଧ୍ୱଂସାବଶେଷ ଏ ଯାବତ୍ ଆବିଷ୍କୃତ ହୋଇ ନଥିବାରୁ ପ୍ରାଚୀନ ଶିଳ୍ପକଳା ସମ୍ପର୍କରେ ସଠିକ ଜ୍ଞାନ ମିଳି ନାହିଁ । ଧଉଳି ଖନନରୁ ମିଳିଥିବା ବିଭିନ୍ନ ମୃତ ପାତ୍ର, ନାଗ ପ୍ରଭାବ ଉପକରଣ ଏପରିକି ପ୍ରାଚୀନ ପ୍ରାଚୀର ଉପରେ ମଗଧ ଶିଳ୍ପକଳାର ପ୍ରଭାବ ସ୍ପଷ୍ଟ । ଶିଶୁପାଳଗଡ଼ ଖୋଦନରୁ ପ୍ରାପ୍ତ ମୃତ ପାତ୍ର ଉପରେ ଉତ୍ତର ଓ ଦକ୍ଷିଣ ପ୍ରଭାବ ପରିଲକ୍ଷିତ ହୋଇଥାଏ । କିନ୍ତୁ ଅଶୋକଙ୍କ ଶାସନ କାଳରେ ନିର୍ମିତ ମୂର୍ତ୍ତି ଯଥା–ଧଉଳି ଶିଳାଲେଖ ନିକଟସ୍ଥ ହାତୀ ବା ମ୍ୟୁଜିୟମ୍‌ରେ ସଂରକ୍ଷିତ ବିରାଟ ନାଗରାଜ ମୂର୍ତ୍ତି ଉପରେ ମଗଧ ପ୍ରଭାବ ପଡ଼ିଛି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରୁ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳର ଶିଳ୍ପ ଇତିହାସ ଅସ୍ପଷ୍ଟ । ଗୁପ୍ତ ଯୁଗରେ ମୂର୍ତ୍ତି ଗଠନରେ ଯେଉଁ ବିସ୍ମୟକର ପରିବର୍ତ୍ତନ ଘଟିଥିଲା ତାହାର ପ୍ରଭାବ ଉତ୍କଳୀୟ ସ୍ଥାପତ୍ୟରେ ଅଙ୍କିତ । ଅନୁରୂପ ଭାବେ ସୀତାବିଞ୍ଜି ଓ ଜୋଗୀମଠର ଚିତ୍ରକଳାରେ ଗୁପ୍ତୀୟ ପ୍ରଭାବ ସ୍ପଷ୍ଟ ।

ପଞ୍ଚମ ଶତାବ୍ଦୀରୁ ମନ୍ଦିର ଯୁଗର ଆରମ୍ଭ । ନବମରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ଏହି ଶିଳ୍ପର କ୍ରମବିକାଶ ସଂସାଧିତ ହୋଇଛି । ଏହି ପରମ୍ପରା ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପରିଦୃଷ୍ଟ ହୋଇଥାଏ । ଉତ୍କଳୀୟମାନେ ଦକ୍ଷିଣ ପୂର୍ବ ଏସିଆରେ ସ୍ୱକୀୟ ଧର୍ମର ପ୍ରସାର ଓ ମନ୍ଦିର ନିର୍ମାଣ କରିଥିଲେ । ଚମ୍ପା ରାଜ୍ୟର (ଭିଏତ୍‌ନାମର ଆନାମ ଅଞ୍ଚଳ) ରାଜା ପ୍ରକାଶଧର୍ମ (୬୫୩ ଖ୍ରୀ: ଅ: ରୁ ୬୮୬ ଖ୍ରୀ: ଅ:) ଅନ୍ୟାନ୍ୟ ମନ୍ଦିର ସହ ତ୍ରୁଓକେମଜଠାରେ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରିଥିଲେ । ପୁରୁଷୋତ୍ତମ (ବିଷ୍ଣୁ)ଙ୍କ ପୂଜା ଚମ୍ପା ରାଜ୍ୟରେ ପ୍ରଚଳନ ହେବା ପୂର୍ବରୁ ପୁରୀ ଧାମରେ ପୁରୁଷୋତ୍ତମ ବା ଜଗନ୍ନାଥଙ୍କ ଉପାସନା ହୋଇ ସାରିଥିବ ବୋଲି ଐତିହାସିକ ଡକ୍ଟର୍ ନବୀନ କୁମାର ସାହୁ ମତବ୍ୟକ୍ତ କରିଛନ୍ତି । ଏହି କାଳରେ ଉକ୍ତ ରାଜ୍ୟରେ ଲକ୍ଷ୍ମୀ ପ୍ରକାର ବହୁକ ପ୍ରଚଳନ ଥିଲା । 'ପୋ' ନଗରଠାରେ ଭଗବତୀଙ୍କର ଏକ ସୁନ୍ଦର ମନ୍ଦିର ନିର୍ମାଣ କରାଯାଇଥିଲା । ଅଷ୍ଟମ ଶତାବ୍ଦୀରେ ଜାଭାରେ ରାଜତ୍ୱ କରୁଥିବା ଶୈଳୋଦ୍ଭବ ବା ଶୈଳେନ୍ଦ୍ରମାନଙ୍କ ଦ୍ୱାରା ନିର୍ମିତ ପ୍ରମ୍ବାନନର ବୃହତ୍ତମ ଶିବ ମନ୍ଦିର ଏ କ୍ଷେତ୍ରରେ ଅନ୍ୟ ଏକ ଦୃଷ୍ଟାନ୍ତ ।

ରାଖାଲଦାସ ବାନାର୍ଜୀଙ୍କ ମତରେ କଳିଙ୍ଗର ଶିଳ୍ପ କଳା ବହିର୍ବାଣିଜ୍ୟ ମାଧ୍ୟମରେ ପେରୁ, ମେକ୍ସିକୋ, ଇଷ୍ଟର ଦ୍ୱୀପ ପର୍ଯ୍ୟନ୍ତ ପ୍ରସାର ଲାଭ କରିଥିଲା । କଳିଙ୍ଗ କଳାର ବିଶ୍ୱ ସଂସ୍କୃତି ଉପରେ ପ୍ରଭାବକୁ ଦକ୍ଷିଣ ପୂର୍ବ ଏସିଆ ଓ ଆମେରିକାର ଐତିହାସିକମାନେ ସ୍ୱୀକାର କରିଛନ୍ତି । (ପଣ୍ଡିତ ନୀଳକଣ୍ଠ ଦାସ – ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଦାନ) ।

ଭାରତୀୟ ଧର୍ମ ଦର୍ଶନ ଏବଂ ଭାଷା ସାହିତ୍ୟର ବିକାଶ ତଥା ଏହାର ସର୍ବତ୍ର ପ୍ରସାର ଓ ପ୍ରଚାରରେ ଉତ୍କଳର ଅବଦାନ ଉଲ୍ଲେଖଯୋଗ୍ୟ । ଶବର, ନାଗ ଓ ଦ୍ରାବିଡ଼ମାନଙ୍କ ଧର୍ମ ଥିଲା ଓଡ଼ିଶାର ଆଦି ଧର୍ମ । ପରବର୍ତ୍ତୀ କାଳରେ ବୈଦିକ ଧର୍ମ ସହିତ ପ୍ରାଚୀନ ଧର୍ମର ସମନ୍ୱୟ ଘଟିଥିଲା । ଖ୍ରୀ: ପୂ: ୫ମ ଓ ୪ର୍ଥ ଶତାବ୍ଦୀ ବେଳକୁ ଜୈନ ଓ ବୌଦ୍ଧ ଧର୍ମ ଏ ଭୂମିରେ ଶ୍ୱେତ ଓ ରାଜ ଧର୍ମରେ ପରିଣତ ହୋଇଥିଲା । ଏହି ପବିତ୍ର ଭୂମିରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେଲେ, କଳିଙ୍ଗର ସମୁଦ୍ର ପଥ ଦେଇ ବୌଦ୍ଧ ଧର୍ମ ଭାରତ ବାହାରେ ପ୍ରସାର ଲାଭ କଲା । ଚେଦି ବଂଶର ରାଜତ୍ୱରେ ଜୈନ ଧର୍ମ, ଗୁପ୍ତ ଯୁଗରେ ହିନ୍ଦୁ ଧର୍ମ ବିଶେଷତଃ ବୈଷ୍ଣବ ଓ ଶୈବ ଧର୍ମ: ଶୈଳୋଦ୍ଭବ, ଭୌମକର ଓ ସୋମ ବଂଶୀ ରାଜତ୍ୱରେ (୬ଷ୍ଠରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ) ଶୈବ ଧର୍ମ ଏବଂ ଏକାଦଶ ଶତାବ୍ଦୀରେ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ପରିଲକ୍ଷିତ ହେଲେ ମଧ୍ୟ ଯୁଗେ ଯୁଗେ ଓଡ଼ିଶାରେ ଧର୍ମୀୟ ଉଦାରତା ମଧ୍ୟରେ ଭାରତୀୟ ସବୁ ଧର୍ମ ସମ୍ପ୍ରଦାୟର ନ୍ୟୁନାଧିକ ପ୍ରଭାବ ଉପଲବ୍ଧ ହୋଇଥାଏ । ଦୁର୍ଗାମାଧବ ଆରାଧନା, ପଞ୍ଚ ଦେବତା ପୂଜା, ହରିହର ଉପାସନା, ବୁଦ୍ଧଙ୍କୁ ଜଗନ୍ନାଥ ବା ବିଷ୍ଣୁଙ୍କର ଅବତାର ଭାବେ ଗ୍ରହଣ, ସତ୍ୟପୀର ବା ସତ୍ୟନାରାୟଣ ପୂଜା ଆଦି ଏହି ଧର୍ମଗତ ସମନ୍ୱୟର ଅମୃତ ଫଳ । ସର୍ବୋପରି ଭାରତରେ

# ଓଡ଼ିଶା ପୁଲିସର ଅତୀତ ଓ ବର୍ତ୍ତମାନ

ଶ୍ରୀ ସଦାନନ୍ଦ ସିହ୍ନା

ଆଜକୁ ଚଉବନ ବର୍ଷ ପୂର୍ବେ "ଓଡିଶା ପୁଲିସ" ବିଧିବଦ୍ଧ ଭାବେ ପ୍ରତିଷ୍ଠା କରାଯାଇଥିଲା, ଠିକ୍ ଯେଉଁ ଦିନ ଜନ୍ମ ନେଇଥିଲା "ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ" । ଇତିହାସ ପର୍ଯ୍ୟାଲୋଚନା କଲେ ଜଣାପଏ ଯେ ମାନବ ସଭ୍ୟତାର ସୃଷ୍ଟିରୁହିଁ ବିଭିନ୍ନ ଅପରାଧ ଦେଖାଦେଇଅଛି ଏବଂ ସେହିସବୁ ଅପରାଧକୁ ନିବାରଣ ସକାଶେ ସୁରକ୍ଷା ସଂସ୍ଥାମାନ ଗଠନ ହୋଇ ଆସିଛି । କାଳକ୍ରମେ ସେହି ସମସ୍ତ ସଂସ୍ଥାହିଁ ଆଜିର ପୁଲିସ ସଂଗଠନରେ ପରିଣତ ହୋଇଅଛି । ବିନା ପୁଲିସରେ କୌଣସି ରାଷ୍ଟ୍ର କେବେ ନିରାପଦ ମନେ କରେନି । ଇଜିପ୍ଟ, ରୋମ୍, ବ୍ରିଟେନ୍ ପ୍ରଭୃତିର ପୁରାତନ ଶାସକମାନେ ମଧ୍ୟ ନିଜ ରାଜତ୍ୱ କାଳରେ ପୁଲିସ ବ୍ୟବହାର କରିଥିବାର ଭୂୟସୀ ଦୃଷ୍ଟାନ୍ତ ରହିଛି । ସେହିଭଳି ଭାରତର ରାଜା, ମହାରାଜାଙ୍କ ରାଜତ୍ୱ କାଳରେ ମଧ୍ୟ 'ପୁଲିସ'ର ପ୍ରଚଳନ ଥିଲା । ମୋଗଲମାନଙ୍କ ଭାରତ ଶାସନ କାଳରେ ଦାରୋଗା, କଟୁଆଳ, ସୁବେଦାର ପ୍ରଭୃତି ପୁଲିସ ପଦବୀମାନ ପ୍ରଚଳିତ ଥିଲା । ୧୮୫୭ର ସିପାହୀ ବିଦ୍ରୋହ ବେଳେ ବ୍ରିଟିଶ ସରକାର ପୁଲିସର ବ୍ୟବହାର ମଧ୍ୟ କରିଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦ ପାଇଁ ଓଡିଶାରେ ଚାଲିଥିବା ମରହଟ୍ଟା ଶାସନ କାଳରେ ମଧ୍ୟ ପୁଲିସର ପ୍ରଚଳନ ଥିଲା । ଅତଏବ ଏହା ପ୍ରମାଣିତ ହୁଏ ଯେ ପୁଲିସ ବିନା ରାଷ୍ଟ୍ର ପରିଚାଳନା କେବେ ସମ୍ଭବ ହୋଇନପାରେ ।

ବ୍ରିଟିଶ ସରକାର ୧୮୦୩ରେ ଓଡିଶାକୁ ଅଧିକାର କରିବାକୁ ଆସି ମରହଟ୍ଟାମାନଙ୍କଠାରୁ ଛଡେଇନେଲେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ଏବଂ ଓଡିଶାର ଦୁର୍ଗ ବାରବାଟୀ । ପରେ ପରେ ବ୍ରିଟିଶ ଶାସକଗଣ ଓଡିଶାର ରାଜନୈତିକ ଏକତ୍ରୀକରଣ ସଙ୍ଗେସଙ୍ଗେ ପୁଲିସ ବ୍ୟବସ୍ଥାର ସୁଦୃଢୀକରଣ ଦିଗରେ ଗୁରୁତ୍ୱ ଆରୋପ କରିଥିଲେ । ୧୭୯୩ ଖ୍ରୀଷ୍ଟାବ୍ଦଠାରୁ ବେଙ୍ଗଲରେ ଲର୍ଡ କର୍ଣ୍ଣୱାଲିସ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ ପୁଲିସ ବ୍ୟବସ୍ଥାରେ କିଛି ଉନ୍ନତି ପରିଲକ୍ଷିତ ହୋଇଥିଲେ ହେଁ ଫଳାଫଳ ବିଶେଷ ସନ୍ତୋଷଜନକ ହୋଇନଥିଲା । ତେଣୁ ତାକୁ ପରୀକ୍ଷା ନିରୀକ୍ଷା କରି ପରିମାର୍ଜିତ କରିବା ଉଦ୍ଦେଶ୍ୟରେ ୧୮୬୦ରେ ମି: କ୍ୱାର୍ଟଙ୍କ ଅଧ୍ୟକ୍ଷତାରେ ଏକ କମିଶନ ତତ୍କାଳୀନ ବ୍ରିଟିଶ ସରକାର ନିଯୁକ୍ତ କରିଥିଲେ । ଉକ୍ତ କମିଶନ ସମସ୍ତ ପୁଲିସ ବ୍ୟବସ୍ଥାର ଅନୁଧ୍ୟାନ କରି ତାକୁ ଉନ୍ନତ ଓ ସୁଦୃଢ କରିବା ପାଇଁ ସୁପାରିଶ କରି, ୧୮୬୧ରେ ଏକ ରିପୋର୍ଟ ଦାଖଲ କଲେ । ସେହି ବର୍ଷହିଁ ଉକ୍ତ ଆକ୍ଟ ଅନୁଯାୟୀ ଭାରତୀୟ ପୁଲିସ ଆଇନ ପ୍ରଣୟନ କରାଗଲା ଏବଂ ପ୍ରଥମ କରି ଆରକ୍ଷୀ ମହାନିରୀକ୍ଷକ ପଦବୀ ମଧ୍ୟ ସୃଷ୍ଟି କରାଯାଇ ପୁଲିସର ପରିଚାଳନା ଭାର ତାଙ୍କୁ ଅର୍ପଣ କରାଯାଇଥିଲା । ଏଥି ପୂର୍ବରୁ ପୁଲିସକୁ ପରିଚାଳିତ କରୁଥିଲେ ମାଜିଷ୍ଟ୍ରେଟ୍, କମିଶନର୍ ଓ ଜିଲ୍ଲା ଜଜ୍ ପ୍ରଭୃତି ପ୍ରଶାସକଗଣ । ପରବର୍ତ୍ତୀ ପର୍ଯ୍ୟାୟରେ ପୁଲିସ ସଙ୍ଗଠନର ପୁନଃମାନ ବୃଦ୍ଧି ଲାଗି ବ୍ରିଟିଶ ସରକାର ୧୯୦୨ ସାଲରେ ପୁଣି ଲର୍ଡ କର୍ଜନଙ୍କ ନେତୃତ୍ୱରେ ଆଉ ଏକ କମିଶନ ନିଯୁକ୍ତ ମଧ୍ୟ କରିଥିଲେ । ଏହିପରି ଭାବେ ଭାରତରେ ପୁଲିସ ସଙ୍ଗଠନର କ୍ରମୋନ୍ନତି ଘଟି ଆସିଛି ।

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଅବ୍ୟବହିତ ପୂର୍ବରୁ ଓଡିଶା, ବିହାର ଓ ବେଙ୍ଗଲ ମିଶି ଯେତେବେଳେ ଏକ ପ୍ରଦେଶ ରୂପେ ବିବେଚିତ ହେଉଥିଲା, ସେତିକିବେଳେ ତାରି ପୁଲିସ ପରିଚାଳନା କରୁଥିଲେ କଲିକତାର ଜଣେ ଆରକ୍ଷୀ ମହାନିରୀକ୍ଷକ । ୧୯୩୬ ସାଲରେ ଏହି ପୁଲିସ ସଙ୍ଗଠନର ବିକେନ୍ଦ୍ରୀକରଣ ଘଟି, ଉକ୍ତ ବର୍ଷ ଏପ୍ରିଲ ପହିଲା ଦିନ ସ୍ୱତନ୍ତ୍ର ଓଡିଶା ପୁଲିସ ଜନ୍ମନେଲା । ୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଜନ୍ମନେଲା । ସେଥିରେ କଟକ, ବାଲେଶ୍ୱର, ପୁରୀ, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଏହି ଛଅଗୋଟି ଜିଲ୍ଲା ମାତ୍ର ଅନ୍ତର୍ଭୁକ୍ତ ଥାଏ । ଓଡିଶାର ପରିସୀମା ଥାଏ ୩୨,୬୯୫ ବର୍ଗ ମାଇଲ ଓ ଲୋକସଂଖ୍ୟା ୮୦,୪୩,୬୮୧ । କାଳକ୍ରମେ ମଧ୍ୟପ୍ରଦେଶ ଓ ମାନ୍ଦ୍ରାସ ଅଞ୍ଚଳରେ ରହିଯାଇଥିବା ଓଡିଆ ଭାଷାଭାଷୀ ଅଞ୍ଚଳଗୁଡିକର ଓଡିଶା ସହିତ ମିଶ୍ରଣ ଘଟି, ଏହାର ଜନସଂଖ୍ୟା ଓ ସୀମା ବୃଦ୍ଧି ଘଟିଥିଲା । ସେତିକି ବେଳର ଆଇନ ଶୃଙ୍ଖଳା ପରିସ୍ଥିତି, ସମାଜର ସୁରକ୍ଷା ଓ ଶାସନର ସୁପରିଚାଳନା ନିମନ୍ତେ ମୋଟ ୩,୯୬୨ ଜଣ ସମସ୍ତ ପଦପଦବୀର ପୁଲିସ କର୍ମଚାରୀଙ୍କୁ ନେଇ ମିଷ୍ଟର୍ ଇ.ଏ.ଓ. ପିରକିନ୍ (Mr. E.A.O. Pearkin) ଓଡିଶାର ପ୍ରଥମ ଆରକ୍ଷୀ

ବେଶ-ପୋଷାକ ଆଦିରେ ଏହା ପରିସ୍ଫୁଟ । ଓଡ଼ିଶାର ମନ୍ଦିର ଶିଳ୍ପ ଅନନ୍ୟ । ଏଠାରେ ରେଖ ଓ ପୀଢ଼ ଦେଉଳ ଦେଖାଯାଏ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ହଠାତ୍ ଅଲାଶିରି ପାଖରେ ମୁଦ ପଡ଼ିବା ଫଳରେ ରେଖ ଦେଉଳ ରୂପେ ଏହାର ସ୍ୱାତନ୍ତ୍ର୍ୟ ପ୍ରକାଶିତ । ପୁରୀ ଓ ରାଜାରାଣୀ ମନ୍ଦିର ପ୍ରଭୃତି ରେଖ ମନ୍ଦିରର ଅନ୍ୟତମ । ଏ ସବୁ ମନ୍ଦିରରେ ପ୍ରାଚୀନ ମଗଧର ମନ୍ଦିର କଳା ସହିତ ଦ୍ରାବିଡ଼ ଗୋପୁରର ବିଶାଳତା ଫୁଟିଛି । ପୀଢ଼ ମନ୍ଦିରଗୁଡ଼ିକ ବଙ୍ଗୀୟ ପୀଢ଼ ମନ୍ଦିରଠାରୁ ପୃଥକ । ସୂକ୍ଷ୍ମ କାରୁକାର୍ଯ୍ୟ ଓ ନିୟମିତ ଧାରାରେ ପାନପତ୍ରୀ ଓଡ଼ିଶାର ରେଖ ମନ୍ଦିରଗୁଡ଼ିକର ବୈଶିଷ୍ଟ୍ୟ ।

ଓଡ଼ିଶୀ ସଙ୍ଗୀତ କର୍ଣ୍ଣାଟକୀ ଓ ହିନ୍ଦୁସ୍ଥାନୀ ସଙ୍ଗୀତର ଏକ ମଧୁର ସମନ୍ୱୟ । ଓଡ଼ିଆ ଭାଷାର ଉଚ୍ଚାରଣ ବଙ୍ଗଳା, ହିନ୍ଦୀ ବା ଅସମୀୟା ପରି ବ୍ୟଞ୍ଜନାନ୍ତ ନୁହେଁ । ଏହା ସ୍ୱରାନ୍ତ ଅଥଚ ଦ୍ରାବିଡ଼ ଭାଷାମାନଙ୍କ ପରି ଦୀର୍ଘ ସ୍ୱରାନ୍ତ ନୁହେଁ । ପୁଣି ବଙ୍ଗ ଓ ଅସମୀୟା ଭାଷା ପରି ଓଡ଼ିଆ ଭାଷା କୋମଳ ନୁହେଁ କି ହିନ୍ଦୀ ଓ ଦ୍ରାବିଡ଼ ଭାଷା ପରି କର୍କଶ ନୁହେଁ । ଓଡ଼ିଆ ଲିପି ଦେବନାଗରୀ ଓ ବ୍ରାହ୍ମୀର ବିବର୍ତ୍ତିତ ରୂପ । କିନ୍ତୁ ଏହାର ଶୀର୍ଷ ଦ୍ରାବିଡ଼ ଲିପି ପରି ବର୍ତ୍ତୁଳାକାର । ଆମେ ଅନ୍ୟାନ୍ୟ ଭାରତୀୟଙ୍କ ପରି ଧୋତି ଓ ଶାଢ଼ୀ ପିନ୍ଧୁ କିନ୍ତୁ ଆମ ପିନ୍ଧା ଢଙ୍ଗ ଅଲଗା । ଆମ କୁଳ ବା କଳରେ ପତାକା ଉଡ଼େ ନାହିଁ । ଖଟା ଆମ ପାଇଁ ଅରୁଚିକର ନୁହେଁ । କିନ୍ତୁ ତାହା ଶୁକୁପାଣି ନୁହେଁ, ଆମିଳ ବା କାଞ୍ଜି ।

ଓଡ଼ିଆ ଶିଳ୍ପି ପୂର୍ଣ୍ଣତାର ସନ୍ଧାନୀ । ସାରଳା ମହାଭାରତରେ କୃଷ୍ଣ କେବଳ ଯୋଗେଶ୍ୱର ନୁହନ୍ତି; ସେ ସୁଚତୁର ନାଗର । ଦାଣ୍ଡି ରାମାୟଣରେ ଶ୍ରୀରାମ 'ରାମ ଚରିତ ମାନସ' ଅନୁରୂପ ପରଂବ୍ରହ୍ମ ନୁହନ୍ତି, ସେ ନର ନାରାୟଣ । ଜଗନ୍ନାଥ ଦାସଙ୍କ ଭାଗବତରେ ପ୍ରଖ୍ୟାପିତ ସୁସ୍ଥ ସାମାଜିକ ଜୀବନ ପ୍ରତି ସନ୍ଦେଶ, ପାରଲୌକିକ ସନ୍ଦେଶଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ । ମଧ୍ୟ ଯୁଗୀୟ ରୀତି କବିମାନେ ପ୍ରେମ ଓ ଧର୍ମ ମଧ୍ୟରେ ସମନ୍ୱୟ ଆଣିଛନ୍ତି । ଓଡ଼ିଶାର ମନ୍ଦିର ଗାତ୍ରରେ 'ସ୍ୱର୍ଗ ମର୍ତ୍ତ୍ୟ ଅପୃଥକ' । 'ଏଥିରେ ଗୁହ୍ୟ ମନନ ଗୋପନୀୟ ଓ ଅପୋଷଣୀୟ ସମସ୍ତ ଅଛି ।' ଆମ ଧର୍ମ ଧାରଣା ପୂଜା ପର୍ବରେ ଲୌକିକତା ଓ ଅଲୌକିକତାର ସୁନ୍ଦର ମିଳନ ଘଟିଛି । ଆମର ଜାତୀୟ ଦେବତା ଜଗନ୍ନାଥ ପରଂବ୍ରହ୍ମ, ଆକାର ମଧ୍ୟରେ ନିରାକାର ପୂର୍ଣ୍ଣ ପୁରୁଷୋତ୍ତମ । ତ୍ରିମୂର୍ତ୍ତିର ତିନି ବର୍ଣ୍ଣରେ ତ୍ରିକାଳ ଓ ସମଗ୍ର ମାନବ ଜାତି ପ୍ରତୀକିତ । ପୁରୁଷୋତ୍ତମ ରୂପେ ସେ ଭୋଗ ବିଳାସର ଅଧିକାରୀ । ବ୍ରାହ୍ମ ମୁହୂର୍ତ୍ତରୁ ନିଶାର୍ଦ୍ଧ ଯାଏ ଛପନ ଭୋଗ, ଛତିଶ ଖଟଣୀ, ଛତିଶା ନିଯୋଗ । ଶ୍ରୀମନ୍ଦିରରେ ଜାତକର୍ମରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ସମସ୍ତ କର୍ମ ଅନୁଷ୍ଠିତ ।

ଓଡ଼ିଆର ସମଦୃଷ୍ଟିରେ କ୍ଷୁଦ୍ର-ବୃହତ୍, ଉଚ୍ଚ-ନୀଚର ପାର୍ଥକ୍ୟ ନାହିଁ । ସେ ବଙ୍ଗୀୟ ଶିଳ୍ପୀ ପରି ଗୀତି ରଚନା କରି ଓ କ୍ଷୁଦ୍ର ମୂର୍ତ୍ତି ନିର୍ମାଣ କରି ପରିତୃପ୍ତ ନୁହେଁ । ଓଡ଼ିଆ କାରିଗର, କ୍ଷୁଦ୍ର ବୃହତ୍ ମୂର୍ତ୍ତି ଓ ମନ୍ଦିର ନିର୍ମାଣରେ ଯେପରି ପାରଦର୍ଶୀ, ସେହିପରି ଓଡ଼ିଆ କବି ଗୀତି କବିତା ଓ ମହାକାବ୍ୟ ସୃଷ୍ଟିରେ ଚରମ କଳା କୌଶଳ ପ୍ରଦର୍ଶନ କରିଛି । ନୀଳାଚଳରେ ବ୍ରାହ୍ମଣ ଚଣ୍ଡାଳ, ରାଜା ପ୍ରଜା ସମାନ । ଏ ଦେଶର ରାଜା ଚଣ୍ଡାଳ କାର୍ଯ୍ୟ କରିବାକୁ କୁଣ୍ଠା ପ୍ରକାଶ କରେ ନାହିଁ । ଓଡ଼ିଆ ନାରୀର ବୁଦ୍ଧିବୃତ୍ତି ଗୃହ କର୍ମ ନିପୁଣତା ବା ଅନ୍ତଃପୁର ମଣ୍ଡନ ମଧ୍ୟରେ ସୀମିତ ନୁହେଁ । ସେ ଆବଶ୍ୟକ ସମୟରେ ରାଜ୍ୟ ପରିଚାଳନା ଓ ଦେଶ ରକ୍ଷାରେ ନିଜକୁ ନିୟୋଜିତ କରିଛି । ଦଣ୍ଡୀ ମହାଦେବୀ, ତ୍ରିଭୁବନ ମହାଦେବୀ ଓ ରାଣୀ ଶୁକଦେଈ ଏହାର ଜ୍ୱଳନ୍ତ ଉଦାହରଣ । ପାଷାଣ ଭିତ୍ତିରେ ଅଙ୍କିତ ଖଡ୍ଗଧାରିଣୀ ଦ୍ୱାର-ପାଳିକା (ଚେଟ୍ଟିକିରି) ଓ ଅଶ୍ୱାରୋହିଣୀ କରବାଳ ହସ୍ତା । ନାରୀ ମୂର୍ତ୍ତି ମୁକ୍ତେଶ୍ୱର ମନ୍ଦିରାଙ୍କୁ ଅନ୍ୟ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ ପାରେ ।

ଏତଦ୍‌ବ୍ୟତୀତ ଓଡ଼ିଆ ଜାତି ଶାନ୍ତିପ୍ରିୟ ଓ ସୌନ୍ଦର୍ଯ୍ୟର ପୂଜାରୀ । ଛବିଳ ଉତ୍କଳର ମନୋଜ୍ଞ ପ୍ରକୃତି ବୋଧହୁଏ ଓଡ଼ିଆ ଜାତିକୁ ସୌନ୍ଦର୍ଯ୍ୟପ୍ରାଣ କରିଛି । ଓଡ଼ିଆ ଶିଳ୍ପୀ ପାଷାଣ ଗାତ୍ରରେ ସ୍ମରାନନା, ପୀନସ୍ତନା, ମୁକୁର ବା ଲୀଳା କମଳ ହସ୍ତା ଅଳସକନ୍ୟା, ଶାଳଭଞ୍ଜିକା, ତୋରଣ ଶାଳ ଭଞ୍ଜିକା, ଅଭିସାରିକା, ଦୟିତା, ଖଣ୍ଡିତା ନାରୀ ମୂର୍ତ୍ତି ଅଙ୍କନ କରିବା ସଙ୍ଗେ ସଙ୍ଗେ ନର୍ତ୍ତକୀର ଲାସ୍ୟ ତନିମା ଏବଂ ମୁଦ୍ରାରେ ଫୁଟାଇଛି ଲଳିତ କମନୀୟ ଭାବ ମୂର୍ଚ୍ଛନା ।

ସରଳ ପ୍ରାଣତା, ଆଡ଼ମ୍ବରଶୂନ୍ୟତା ଓ ଈଶ୍ୱର ବିଶ୍ୱାସ ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ । ବାହ୍ୟାଡ଼ମ୍ବର ଓଡ଼ିଆ ଜାତିର ଆଦର୍ଶ ନୁହେଁ । ଓଡ଼ିଶାର ମନ୍ଦିର ତାହାର ମୂକସାକ୍ଷୀ । ଓଡ଼ିଆ ଶିଳ୍ପୀ ଦାକ୍ଷିଣାତ୍ୟର ତୁଙ୍ଗ ଗୋପୁର ନିର୍ମାଣ ପଦ୍ଧତିକୁ ଅନୁସରଣ କରେ ନାହିଁ । ବାହାର ଏବଂ ଭିତର, ମୁଖଶାଳା ଓ ମନ୍ଦିରର ଶ୍ରୀ ସମ୍ପାଦନରେ ସେ ଯତ୍ନଶୀଳ । ଭୌତିକ ଅନଟନ ଉତ୍କଳୀୟର ଶାନ୍ତି ଓ ସନ୍ତୋଷକୁ ବ୍ୟାହତ କରିପାରେ ନାହିଁ । ବିରାଟ କୀର୍ତ୍ତି ନିର୍ମାଣ କରି ଆତ୍ମ ପ୍ରଚାର କରିବାରେ ସେ ଆଗ୍ରହୀ ନୁହେଁ । ତାହା ଭଗବତ୍ କୃପାରୁ ସୃଷ୍ଟ ବୋଲି ସେ କହେ । ତା'ର ବଂଶଧର ଏହି କୃତି ପାଇଁ ଗର୍ବ ପ୍ରକାଶ କରି ପାରନ୍ତି, ତେଣୁ ସେ ନିର୍ବଂଶ ହେବାକୁ ପ୍ରାର୍ଥନା କରେ ।

ଉଦାର ମାନବ ପ୍ରୀତି, ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱ ଓଡ଼ିଆ ସଂସ୍କୃତିର ପ୍ରାଣ । ନୀଳାଚଳ ଏ ଜାତିର ହୃତ୍‌ପିଣ୍ଡ, ସଂସ୍କୃତି ସ୍ପନ୍ଦନର ଗୌରବ, ବିଶ୍ୱ ମାନବିକତାର ନିର୍ଯ୍ୟାସ । ଗୋପବନ୍ଧୁଙ୍କ ଭାଷାରେ :

"ଭାରତ ସରସେ ଉତ୍କଳ କମଳ,
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ପରିମାର୍ଜନ ବା ସଂସ୍କାର ସଂସ୍କୃତିର ମୂଳ ଧର୍ମ । କିନ୍ତୁ ଧର୍ମ ସବୁବେଳେ ରକ୍ଷଣଶୀଳତା ଓ ସଂକୀର୍ଣ୍ଣତା ନିଗଡ଼ରୁ ମୁକ୍ତ ନୁହେଁ । ତଥାକଥିତ ଧର୍ମଧ୍ୱଜୀ ରକ୍ଷଣଶୀଳ ବଡ଼ପଣ୍ଡାମାନେ ଏହି ଚିରନ୍ତନ ମୂଲ୍ୟବୋଧକୁ ରୁଦ୍ଧପଲ୍ୱଳରେ ପରିଣତ କରିବାକୁ ଚେଷ୍ଟିତ ।

ବିଦେଶୀ ସଭ୍ୟତାର ଅନ୍ଧାନୁକରଣ, ଆଳସ୍ୟ, ସଂକୀର୍ଣ୍ଣତା, ଅହଂକାର ଓ ସ୍ୱାର୍ଥପରତାର ଆକର୍ଷଣ ଜାତିକୁ ପଥଭ୍ରଷ୍ଟ କରେ । ନାରୀ ସଂସ୍କୃତିର ରକ୍ଷାକର୍ତ୍ତ୍ରୀ । ସୌଭାଗ୍ୟର କଥା ଓଡ଼ିଆଣୀ ଏଯାବତ୍ ପଶ୍ଚିମ ମୁହାଁ ହୋଇନି । ଓଡ଼ିଆ ଘରର ଗମ୍ଭୀରୀ ଭିତରେ, ତୁଳସୀ ମୂଳରେ ଜଳୁଥିବା ସନ୍ଧ୍ୟାବତୀର ଶିଖାକୁ ପଶ୍ଚିମା ପବନ ଲିଭାଇବା ତ ଦୂର କଥା ଥରାଇବି ପାରିନି ।

ଉତ୍କଳୀୟ ସଂସ୍କୃତିର ମହାନ ଐତିହ୍ୟ ପ୍ରତି ଓଡ଼ିଆ ପାଇଁ ଗର୍ବ ଆଉ ଗୌରବର ବିଷୟ । ଅପର ନିକଟରୁ ଶ୍ରଦ୍ଧା, ସମ୍ମାନ ଓ ମର୍ଯ୍ୟାଦା ପାଇବା ପାଇଁ ଯେଉଁ ସ୍ୱାତନ୍ତ୍ର୍ୟ ଆବଶ୍ୟକ ତାହା ଆମ ସଂସ୍କୃତି ଆମକୁ ଦେଇଛି । ଅତଏବ୍, ଦେଶରେ ବା ବିଦେଶରେ ଯିଏ ଯେଉଁଠି ଥାଉନା କାହିଁକି, ଜଣେ ଯୁବକ ଉତ୍ତରଦାୟାଦ ରୂପେ ସଂସ୍କୃତିର ସୁରକ୍ଷା, ସଂସ୍କାର ଓ ସମ୍ପ୍ରସାରଣ ଦିଗରେ ଯତ୍ପରୋନାସ୍ତି ଚେଷ୍ଟା କରିବା ସର୍ବଥା ସମୀଚୀନ ।

---

ଅଧ୍ୟାପକ,
ଓଡ଼ିଆ ବିଭାଗ,
ଖଲ୍ଲିକୋଟ ମହାବିଦ୍ୟାଳୟ,
ବ୍ରହ୍ମପୁର, ଗଞ୍ଜାମ ।

ରାଉରକେଲାରେ ୧୯୬୪ରେ ଆଉ ଏକ ପୁଲିସର ଆଞ୍ଚଳିକ ଅଫିସ ଖୋଲାଯାଇଥିଲା । ସରକାରୀ କର୍ମଚାରୀ ତଥା ଅନ୍ୟାନ୍ୟ ସ୍ତରରେ ଦୁର୍ନୀତି ରୋକିବା ନିମନ୍ତେ ଭିଜିଲାନ୍ସ ଶାଖାକୁ ପୁଲିସରୁ ଅଲଗା କରାଯାଇ ଆଜିର ଏହି ଭିଜିଲାନ୍ସ ବିଭାଗ ସୃଷ୍ଟି ହୋଇଛି ।

୧୯୬୦ ସାଲରୁ କ୍ରମଶଃ ରାଜ୍ୟର ଜନସଂଖ୍ୟା ବୃଦ୍ଧି ପାଇ ତାହା ୧୯୯୧ ବେଳକୁ ୨,୬୩,୭୦,୨୭୧ରେ ପହଞ୍ଚିଥିଲା । ବର୍ତ୍ତମାନ ତାହା ଅଧିକ ବୃଦ୍ଧି ପାଇଲାଣି । ରାଜ୍ୟରେ ସହର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବା ସଙ୍ଗେସଙ୍ଗେ ବିଭିନ୍ନ କଳକାରଖାନା ସ୍ଥାପିତ ହେଲା, ଗମନାଗମନର ସୁବିଧା ସୃଷ୍ଟି ହୋଇପାରିଲା । ବିଭିନ୍ନ ଅଞ୍ଚଳର ଲୋକେ ଓଡିଶାକୁ ଆସିବାର ସୁବିଧା ପାଇପାରିଲେ । ଅଳ୍ପ ପରିଶ୍ରମ କରି ବହୁତ ରୋଜଗାର କରିବାର ଲକ୍ଷ୍ୟ ଲୋକଙ୍କ ମଧ୍ୟରେ ପ୍ରକାଶ ପାଇଲା । ବେକାର ସମସ୍ୟା ବୃଦ୍ଧି ଘଟିବା ହେତୁ ଅର୍ଥନୈତିକ ଅପରାଧମାନ ମୁଣ୍ଡ ଟେକିବାକୁ ଲାଗିଲା । ପୁନଶ୍ଚ ରାଜ୍ୟର ରାଜନୈତିକ, ଧର୍ମଗତ ଓ ଜାତିଗତ ଶତ୍ରୁତା ଇତ୍ୟାଦି ବହୁ ଅପରାଧର ସମ୍ମୁଖୀନ ହେଲା ଓଡିଶା ପୁଲିସ । ସନ୍ତ୍ରାସବାଦୀଙ୍କ ଆତଙ୍କରାଜ ଦେଶ ତଥା ରାଜ୍ୟବାସୀଙ୍କ ପାଇଁ ଜଟିଳ ସମସ୍ୟା ସୃଷ୍ଟି କଲା । ଏହି ସମସ୍ତ ଅପରାଧୀଙ୍କ ମୁକାବିଲା କରି ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ଓ ଶୃଙ୍ଖଳିତ ଶାସନ ପରିଚାଳନା ପାଇଁ ପୁଲିସର ଦାୟିତ୍ୱ ବହୁତ ବେଶୀ ଅନୁଭୂତ ହୋଇଥିଲା । ତେଣୁ ସରକାର ରାଜ୍ୟ ପୁଲିସ ସଙ୍ଗଠନକୁ ଅଧିକ ସୁଦୃଢ କରିବା ଚିନ୍ତା କରି ଏହାର ବ୍ୟାପକ ପରିବର୍ତ୍ତନ ଓ ସମ୍ପ୍ରସାରଣ କରିଛନ୍ତି । ବର୍ତ୍ତମାନ ରାଜ୍ୟରେ ଛଅଟି ପୁଲିସ ଆଞ୍ଚଳିକ କାର୍ଯ୍ୟାଳୟ, ସତରଟି ପୁଲିସ ଜିଲ୍ଲା, ୪୩୩ଟି ଥାନା, ୪୫୧ଟି ଫାଣ୍ଡି ସ୍ଥାପନ କରାଗଲାଣି । ଓଡିଶା ପୁଲିସ ମହାନିର୍ଦ୍ଦେଶକ ପଦବୀ ସୃଷ୍ଟି କରାଯାଇ ତାଙ୍କରି ଅଧୀନରେ ବର୍ତ୍ତମାନ ଦୁଇଜଣ ସ୍ୱତନ୍ତ୍ର ଆଇ.ଜି., ଜଣେ ଆଇ.ଜି., ୧୬ ଜଣ ଡି.ଆଇ.ଜି., ତିନିଜଣ ଏ.ଆଇ.ଜି., ୭୩ ଜଣ ଏସ୍.ପି., ୨୭ ଜଣ ଅତିରିକ୍ତ ଏସ୍.ପି. ଓ ୨୦ ଜଣ ଏ.ଏସ୍.ପି., ୧୬୭ ଜଣ ଡି.ଏସ୍.ପି., ୪୩୦ ଜଣ ଇନସ୍ପେକ୍ଟର୍, ୨,୧୭୬ ଜଣ ଏସ୍.ଆଇ., ୨,୪୩୭ ଜଣ ଏ.ଏସ୍.ଆଇ., ୨,୭୬୧ ଜଣ ହାବିଲଦାର ଓ ୯,୫୧୦ ଜଣ କନଷ୍ଟେବଲ୍ କାର୍ଯ୍ୟ କରୁଛନ୍ତି । ଏତଦ୍‌ବ୍ୟତୀତ ପୂର୍ବର ଓ.ଏମ୍.ପି ସଙ୍ଗଠନର ପରିବର୍ତ୍ତନ କରାଯାଇ ତାକୁ ଓ.ଏସ୍.ଏ.ପି. (ଓଡିଶା ସ୍ୱତନ୍ତ୍ର ସଶସ୍ତ୍ର ପୁଲିସ ବାହିନୀ) ନାମରେ ନାମିତ କରାଯାଇ, ସେହିଭଳି ସାତଗୋଟି ସଙ୍ଗଠନ ରାଜ୍ୟର ଚାରବାଟିଆ, ଝାରସୁଗୁଡା, କୋରାପୁଟ, ରାଉରକେଲା, ରଙ୍ଗମାଟିଆ, କଟକ ଏବଂ ଭୁବନେଶ୍ୱରରେ ସ୍ଥାପିତ କରାଯାଇଛି । ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା ଓ ଜନସାଧାରଣଙ୍କ ଆବଶ୍ୟକତା ପୂରଣ ନିମନ୍ତେ ବର୍ତ୍ତମାନ ବିଭିନ୍ନ ପଦପଦବୀର ମୋଟ ୩୩,୭୮୯ ଜଣ ପୁଲିସ କର୍ମଚାରୀ ରାଜ୍ୟ ପାଇଁ ସୃଷ୍ଟି କରାଗଲାଣି । ଏତଦ୍‌ବ୍ୟତୀତ ଅପରାଧ ତଦନ୍ତ କ୍ଷେତ୍ରରେ ବିଜ୍ଞାନର ପ୍ରୟୋଗ ସକାଶେ ଭୁବନେଶ୍ୱରରେ ଏକ ରାଜ୍ୟସ୍ତରୀୟ ଫରେନ୍‌ସିକ୍ ବିଜ୍ଞାନାଗାର ପ୍ରତିଷ୍ଠା କରାଯାଇ ଏହାର ଶାଖା ସମ୍ବଲପୁର ଓ ବ୍ରହ୍ମପୁରରେ ଖୋଲାଗଲାଣି । ପୁନଶ୍ଚ ଅପରାଧ ନିର୍ଣ୍ଣୟ ଦିଗରେ କୁକୁର ଦଳର ସହାୟତା ସଙ୍ଗେସଙ୍ଗେ ଆଧୁନିକ କମ୍ପ୍ୟୁଟରର ମଧ୍ୟ ବ୍ୟବହାର କରାଗଲାଣି । ରାଜ୍ୟର ଥାନାଗୁଡିକର କାର୍ଯ୍ୟଦକ୍ଷତା ବୃଦ୍ଧି ନିମନ୍ତେ ସମ୍ବାଦ ସରବରାହ ସକାଶେ ବିଭିନ୍ନ ଆଧୁନିକ ଯନ୍ତ୍ରପାତି ଓ ଯାନବାହନର ବ୍ୟବସ୍ଥା କରାଯାଇଛି । ରାଜ୍ୟ କ୍ରାଇମ୍ ବ୍ରାଞ୍ଚକୁ ସମ୍ପ୍ରସାରଣ କରାଯାଇ ଜଣେ ଆଇ.ଜିଙ୍କ ଅଧୀନରେ ପରିଚାଳିତ କରାଯାଉଛି । ସେହିଭଳି ରାଜ୍ୟର ବିଭିନ୍ନ ଗୁପ୍ତ ତଥ୍ୟର ସଂଗ୍ରହକାରୀ ଗୁଇନ୍ଦା ସଂସ୍ଥାକୁ ଜଣେ ନିର୍ଦ୍ଦେଶକଙ୍କ ତତ୍ତ୍ୱାବଧାନରେ ପରିଚାଳିତ କରାଯାଉଛି । ଏହିସବୁ ପଦକ୍ଷେପ ଫଳରେ ରାଜ୍ୟର ଅପରାଧ ସଂଖ୍ୟାକୁ ହ୍ରାସ କରିବା, ବିଭିନ୍ନ ଅପରାଧ ତଦନ୍ତରେ ସଫଳତା ଲାଭ କରିବା, ସମାଜର ସୁରକ୍ଷା ଓ ଜନସାଧାରଣଙ୍କ ଆବଶ୍ୟକତା ପୂରଣ କରିବା ତଥା ରାଜ୍ୟ ଶାସନର ସୁପରିଚାଳନା କ୍ଷେତ୍ରରେ ପୁଲିସର ଆବଶ୍ୟକ ବିନିଯୋଗ କରିବା ଏବଂ ରାଜ୍ୟର ଅର୍ଥନୈତିକ କ୍ଷେତ୍ରରେ ସହାୟତା ପ୍ରଦାନ କରିବା ଇତ୍ୟାଦି ପୁଲିସ ପକ୍ଷେ ପୂର୍ବାପେକ୍ଷା ସହଜ ହୋଇ ପାରିଛି । ଆଜି ପୁଲିସ ଜନତାର ସେବାକାରୀ ସଂସ୍ଥାରୂପେ ପରିଗଣିତ, ପୁଲିସ ସଙ୍ଗଠନ ବିନା ରାଜ୍ୟ ତଥା ସମାଜର ଅଗ୍ରଗତି ସମ୍ଭବପର ହୋଇ ନ ପାରେ । ଅତଏବ, ପୁଲିସର କାର୍ଯ୍ୟକ୍ରମକୁ ସଫଳ କରିବାରେ ରାଜ୍ୟବାସୀଙ୍କ ସହଯୋଗ ଅପରିହାର୍ଯ୍ୟ ମନେହୁଏ ।

ଆରକ୍ଷୀ ମହାନିର୍ଦ୍ଦେଶକ,
ଓଡିଶା, କଟକ–୭୫୩୦୦୧



ଶାରୀରିକ ଅକ୍ଷମଲୋକମାନଙ୍କ ଭୋଟ ଦାନ

ମହାନିରୀକ୍ଷକ ରୂପେ କଟକରେ କାର୍ଯ୍ୟ ଆରମ୍ଭ କରିଥିଲେ । ସେତିକିବେଳେ ରାଜ୍ୟରେ ଥିଲା ମାତ୍ର ୧୬୯ ଗୋଟି ଥାନା ୩୮ଗୋଟି ଫାଣ୍ଡି ଏବଂ ୧୦ ଗୋଟି ବିଟ୍ ହାଉସ । କାର୍ଯ୍ୟରେ ନିଯୁକ୍ତ ଥିବା ମୋଟ ୩,୯୬୨ ପୁଲିସ କର୍ମଚାରୀଙ୍କ ମଧ୍ୟରେ ଥିଲେ ମାତ୍ର ଜଣେ ଏ.ଆଇ.ଜି., ଆଠଜଣ ଏସ୍.ପି., ତିନିଜଣ ଏ.ଏସ୍.ପି., ପାଞ୍ଚଜଣ ସର୍ଜେଣ୍ଟ, ୧୬୩ଜଣ ହେଡ କନେଷ୍ଟବଲ ଏବଂ ୩,୪୪୮ ଜଣ ଅନ୍ୟାନ୍ୟ ପଦବୀର କର୍ମଚାରୀ । ଅର୍ଥାତ୍ ସେତିକି ବେଳର ଜନସଂଖ୍ୟା ଅନୁପାତରେ ୨,୨୦୯ ଜଣ ଲୋକ ପିଛା ଜଣେ ପୁଲିସ କାର୍ଯ୍ୟ କରୁଥିଲେ । ଏହା ପର୍ଯ୍ୟାପ୍ତ ନଥିଲା ।

ପ୍ରାରମ୍ଭରେ ପୁଲିସ ତାଲିମ୍ ବ୍ୟବସ୍ଥାର ସୁବିଧା ନୂତନ ଓଡ଼ିଶା ପ୍ରଦେଶରେ ନଥିଲା । ଅବଶ୍ୟ ୧୯୧୪ରେ କଟକର ଚାଉଳିଆଗଞ୍ଜରେ ଏକ କନ୍‌ଷ୍ଟେବଲ୍ ତାଲିମ୍ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଥିଲା । କିନ୍ତୁ କୌଣସି କାରଣରୁ ୧୯୨୫ରେ ତାକୁ ବନ୍ଦ କରିଦିଆଯିବା ଫଳରେ ଆମକୁ ସେତିକିବେଳେ ବିହାର ପ୍ରଦେଶକୁ ପୁଲିସ ତାଲିମ୍ ପାଇଁ ପଠାଇବାକୁ ହେଉଥିଲା । ୧୯୩୭ର ମଧ୍ୟ ଭାଗ ଯାଏଁ ଏହି ଅସୁବିଧା ଥିଲା । ସେହିବର୍ଷ ସେପ୍ଟେମ୍ବର ମାସରେ ନୂତନ ଭାବେ ଅନୁଗୁଳଠାରେ କନଷ୍ଟେବଲ ତାଲିମ୍ ନିମନ୍ତେ ଏକ ବିଦ୍ୟାଳୟ ସ୍ଥାପନ କରାଗଲା । କନଷ୍ଟେବଲ ତାଲିମ୍ କରିବା ସମସ୍ୟା କେତେକ ପରିମାଣରେ ସୁଧୁରିଥିଲେ ସୁଦ୍ଧା, ଅଫିସର ତାଲିମ୍ ପାଇଁ ବିହାରର ହଜାରୀବାଗ ପୁଲିସ ଅନୁଷ୍ଠାନ ଉପରେ ନିର୍ଭର କରିବାକୁ ପଡୁଥାଏ । ତେଣୁ ଓଡ଼ିଶାରେ ପୁଲିସ ଅଫିସରଙ୍କ ତାଲିମ୍ ବ୍ୟବସ୍ଥା ନିମନ୍ତେ ଚିନ୍ତା କରାଯାଇ, ୧୯୪୧ ବେଳକୁ ଉକ୍ତ ଅନୁଗୁଳ ପୁଲିସ ତାଲିମ୍ ବିଦ୍ୟାଳୟରେ ପୁଲିସ ଏସ୍.ଆଇ. ତାଲିମ୍‌ର ସୁବିଧା ସୃଷ୍ଟି କରାଯାଇଥିଲା । ଏହାର ସାତବର୍ଷ ପରେ ଉକ୍ତ ଅନୁଷ୍ଠାନକୁ ପୁଲିସ ଟ୍ରେନିଙ୍ଗ୍ କଲେଜ୍‌ରେ ପରିଣତ କରାଯାଇ ସମସ୍ତ ପୁଲିସ ଅଫିସରମାନଙ୍କ ତାଲିମ୍‌ର ସୁବିଧା ମଧ୍ୟ କରାଗଲା । ଫଳରେ ବର୍ତ୍ତମାନ ଏସ୍.ଆଇ., ଏ.ଏସ୍.ଆଇ., ଇନିସପେକ୍ଟର ଓ ଡି.ଏସ୍.ପି. ପାହ୍ୟାର ପୁଲିସ ଅଫିସରମାନେ ଓଡ଼ିଶାରେ ତାଲିମ୍ ପାଇପାରୁଛନ୍ତି । ଅନୁଗୁଳ ପୁଲିସ ତାଲିମ୍ କଲେଜ ବ୍ୟତୀତ ବର୍ତ୍ତମାନ ନୟାଗଡ଼ରେ ଏକ କନଷ୍ଟେବଲ ତାଲିମ୍ ବିଦ୍ୟାଳୟ ଏବଂ ଭୁବନେଶ୍ୱରରେ ଏକ ଟ୍ରାଫିକ୍ ତାଲିମ୍ ବିଦ୍ୟାଳୟ ମଧ୍ୟ ଖୋଲାଯାଇଛି ।

୧୯୩୬ ଠାରୁ ୧୯୪୭ ମଧ୍ୟରେ ଦେଶର ସ୍ୱାଧୀନତା ଆନ୍ଦୋଳନ, ଦ୍ୱିତୀୟ ବିଶ୍ୱଯୁଦ୍ଧ, ବିଭିନ୍ନ ସାମ୍ପ୍ରଦାୟିକ ଗୋଳମାଳ ଯୋଗୁଁ, ଓଡ଼ିଶା ପାଇଁ ଅଧିକ ସଂଖ୍ୟକ ପୁଲିସ ସୃଷ୍ଟିର ଆବଶ୍ୟକତା ଉପଲବ୍ଧି କରାଯାଇ ୧୯୪୬ ଜାନୁଆରୀ ଶେଷାର୍ଦ୍ଧରେ କଟକରେ ଗଠିତ ହେଲା ପ୍ରଥମ ବାଟାଲିଅନ ଓ.ଏମ୍.ପି. । ଏଥିରେ ସେତିକିବେଳେ ୮୦୦ଜଣ ପୁଲିସ ନିଯୁକ୍ତ ହୋଇଥିଲେ । ୧୯୪୭ରେ ଦେଶ ସ୍ୱାଧୀନତା ଲାଭ କରିବା ପରେ ପରେ ପୁଲିସ ସଙ୍ଗଠନରେ ବହୁ ପରିବର୍ତ୍ତନ କ୍ରମଶଃ ଘଟିଆସିଛି ।

ଭାରତ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶା ସହିତ ୧୯୪୮ରେ ମୋଟ ୨୪ଗୋଟି ଦେଶୀୟ ରାଜ୍ୟ ମିଶି ଯିବା ଫଳରେ, ଓଡ଼ିଶା ୧୩ଗୋଟି ଜିଲ୍ଲାକୁ ନେଇ ପୁନର୍ଗଠିତ କରିଥିଲା । ସେହି ଅନୁପାତରେ ଓଡ଼ିଶାର ଆୟତନ ବୃଦ୍ଧି ପାଇ [illegible] ବର୍ଗ ମାଇଲରେ ପହଞ୍ଚିଥିଲା ବେଳେ, ଜନସଂଖ୍ୟା ୧,୪୬,୪୫,୯୪୬ରେ ପହଞ୍ଚିଥିଲା । ଦେଶର ଅଭ୍ୟନ୍ତରୀଣ ନିରାପତ୍ତା, ଶାନ୍ତି ଓ ସୁରକ୍ଷା ପ୍ରଭୃତିକୁ ମୁଖ୍ୟ ହେତୁଥିବା ବିଭିନ୍ନ ଆଇନର ରକ୍ଷା ନିମନ୍ତେ ପୁଲିସ ସଙ୍ଗଠନ ସମ୍ପ୍ରସାରଣର ଆବଶ୍ୟକତା ଦେଖା ଦେଇଥିଲା । ସେହି ଅନୁଯାୟୀ ତତ୍କାଳୀନ ସରକାର ରାଜ୍ୟର ଥାନା ସଂଖ୍ୟାକୁ ୨୭୦କୁ ଓ ଫାଣ୍ଡି ସଂଖ୍ୟା ୧୩୫କୁ ବୃଦ୍ଧି କରିବା ସଙ୍ଗେସଙ୍ଗେ ପୋଲିସ କର୍ମଚାରୀ ସଂଖ୍ୟାକୁ ୧୦,୩୫୮କୁ ବୃଦ୍ଧି କରିଥିଲେ ଏବଂ ସେତେବେଳର ଅନୁପାତ ଥିଲା ୧,୨୨୯ ଜଣ ପିଛା ଜଣେ ପୁଲିସ । ସେହିବର୍ଷ ଓଡ଼ିଶା ପୁଲିସ ଅନ୍ୟାନ୍ୟ ଆଇନଶୃଙ୍ଖଳା ପରିସ୍ଥିତି ଓ ବାତ୍ୟାବନ୍ୟା ଭଳି ପ୍ରାକୃତିକ ବିପର୍ଯ୍ୟୟର ସହାୟତା କରିବା ସଙ୍ଗେସଙ୍ଗେ ୨୨,୮୯୪ ଗୋଟି ଧର୍ତ୍ତବ୍ୟ ଅପରାଧ ତଦନ୍ତ କରି, ଅପରାଧୀମାନଙ୍କ ବିରୁଦ୍ଧରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ରାଜ୍ୟର ଜନସଂଖ୍ୟା ବୃଦ୍ଧି ଓ ବିଭିନ୍ନ ଯୋଜନାର ଅଗ୍ରଗତି ସାଙ୍ଗକୁ ବିଭିନ୍ନ ଧରଣର ଅପରାଧୀ ଦେଶ ତଥା ରାଜ୍ୟ ମଧ୍ୟରେ ଅସ୍ଥିରତା ସୃଷ୍ଟି କରିବାରେ ଲାଗିଲେ । ତେଣୁ ପୁଣି ପୁଲିସ ସଙ୍ଗଠନର ଅଭିବୃଦ୍ଧି ଅନିବାର୍ଯ୍ୟ ହୋଇ ପଡିଥିଲା । ଫଳରେ ୧୯୪୮ ସାଲର ପ୍ରଥମାର୍ଦ୍ଧରେ ଢେଙ୍କାନାଳରେ ଦ୍ୱିତୀୟ ବାଟାଲିୟନ, ଓ.ଏମ୍.ପି. ସ୍ଥାପନ କରାଗଲା ଏବଂ ସମ୍ବଲପୁରରେ ପୁଲିସର ଉତ୍ତରାଞ୍ଚଳ କାର୍ଯ୍ୟାଳୟ ପ୍ରତିଷ୍ଠା ହୋଇଥିଲା ।

ସ୍ୱାଧୀନତା ପରେ ରାଜ୍ୟର ଅର୍ଥନୈତିକ ଅଗ୍ରଗତି ଶିଳ୍ପବିପ୍ଳବ, ବ୍ୟବସାୟ ପ୍ରସାର, ଗମନାଗମନର ସୁବିଧା ସୃଷ୍ଟି ହେବା ସଙ୍ଗେସଙ୍ଗେ ଗଣତନ୍ତ୍ର ଦେଶର ପୁଲିସକୁ ଜନସାଧାରଣଙ୍କ ସେବକ ରୂପେ ଗଢିବା ସକାଶେ, ପୂର୍ବର ଔପନିବେଶିକ ପୁଲିସ ଢାଞ୍ଚାର ପରିବର୍ତ୍ତନ କରାଯାଇଥିଲା ୧୯୫୧ ସାଲର ମଧ୍ୟ ଭାଗରେ । ସେହିବର୍ଷର ଅଗଷ୍ଟ ମାସରେ ଓଡ଼ିଶାରେ ସର୍ବପ୍ରଥମେ ଜଣେ ଭାରତୀୟଙ୍କୁ ମଧ୍ୟ ଆରକ୍ଷୀ ମହାନିରୀକ୍ଷକ ରୂପେ ଅବସ୍ଥାପିତ କରାଗଲା । ପୁଲିସ ଅଇନ କାନୁନକୁ ଅନେକ ପରିମାଣରେ ସରଳୀକରଣ କରାଗଲା । ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରରେ ଜନତାର ପ୍ରକୃତ ଜଣେ ସେବାକାରୀ ରୂପେ ପୁଲିସ ସଂସ୍ଥାର ପୁନର୍ଗଠନ ହେଲା । ପୁଲିସର ପୂର୍ବ ପ୍ରଚଳିତ ଅଭିମୁଖ୍ୟକୁ ଅନେକ କ୍ଷେତ୍ରରେ ପରିବର୍ତ୍ତନ ମଧ୍ୟ କରାଗଲା । ପୁଲିସର ଯେପରି ସାଧୁତା, ନୈତିକତା, କର୍ମଦକ୍ଷତା, ସହନଶୀଳତା, ନିରପେକ୍ଷତା ଓ ସମ୍ବେଦନଶୀଳତା ଇତ୍ୟାଦି ଗୁଣଗୁଡିକ ସୃଷ୍ଟି ହୋଇପାରିବ ସେହିସବୁ ତାଙ୍କରି ତାଲିମ୍ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଗଲା । ୧୯୫୧ଠାରୁ ୧୯୫୬ ମଧ୍ୟରେ ରାଜ୍ୟରେ ରାଉରକେଲାର ଇସ୍ପାତ କାରଖାନା, ସମ୍ବଲପୁର ହୀରାକୁଦ ବନ୍ଧ, ଭୁବନେଶ୍ୱରରେ ନୂଆ ରାଜଧାନୀ, ଚୌଦ୍ୱାର ଓ ତାଳଚେରରେ ଶିଳ୍ପ ପ୍ରତିଷ୍ଠାନ ଗଢି ଉଠିବା ସଙ୍ଗେସଙ୍ଗେ ବିଭିନ୍ନ ଶ୍ରମିକ ଆନ୍ଦୋଳନ ଦେଖାଦେଇଥିଲା । ଫଳରେ ଶିଳ୍ପ ନିରାପତ୍ତାର ଆବଶ୍ୟକତା ବୃଦ୍ଧି ପାଇଲା । ପୁନଶ୍ଚ ୧୯୬୦ରେ କୋରାପୁଟ ଜିଲ୍ଲାର ଦଣ୍ଡକାରଣ୍ୟ, ଓ ଜୁନାବେଡାରେ ଶରଣାର୍ଥୀ ଥଇଥାନ ସମସ୍ୟା ଏବଂ ରାଉରକେଲା, ସୁନ୍ଦରଗଡ଼, ଝାରସୁଗୁଡା ଓ ସମ୍ବଲପୁର ପ୍ରଭୃତି ଅଞ୍ଚଳରେ ସୃଷ୍ଟି ହୋଇଥିବା ତତ୍କାଳୀନ ସାମ୍ପ୍ରଦାୟିକ ଉତ୍ତେଜନା ପୁଲିସ ସଙ୍ଗଠନକୁ ଦୋହଲାଇ ଦେଇଥିଲା । ଏହିଭଳି ଉଚ୍ଚାଟ ଆଇନଶୃଙ୍ଖଳା ପରିସ୍ଥିତିର ମୁକାବିଲା ନିମନ୍ତେ ଅଧିକ ସଂଖ୍ୟକ ପୁଲିସ ଫୋର୍ସର ଆବଶ୍ୟକତା ପଡିବା ହେତୁ ସେତିକିବେଳେ କୋରାପୁଟରେ ତୃତୀୟ ବାଟାଲିୟନ୍ ଓ.ଏମ୍.ପି. ଏବଂ ରାଉରକେଲାରେ ଚତୁର୍ଥ ବାଟାଲିୟନ୍ ଓ.ଏମ୍.ପି. ସଂସ୍ଥା ସୃଷ୍ଟି କରାଯାଇଥିଲା । ସେହିବର୍ଷ କଟକରେ ବେତାର ପୁଲିସ କାର୍ଯ୍ୟାଳୟ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । ପୁଲିସର ଜ୍ଞାନ କୌଶଳ ବୃଦ୍ଧି ପାଇଥିଲା । ଆଧୁନିକ ଅସ୍ତ୍ରଶସ୍ତ୍ରରେ ମଧ୍ୟ ପୁଲିସକୁ ସଜ୍ଜିତ କରାଯାଇ, ଆବଶ୍ୟକ ସ୍ଥଳେ ଶୀଘ୍ର ପହଞ୍ଚିବା ନିମନ୍ତେ ଯାନବାହନର ସୁବିଧା ମଧ୍ୟ ଯୋଗାଇ ଦିଆଗଲା । ଆବଶ୍ୟକତା ଦୃଷ୍ଟିରୁ

# ଶ୍ରୀମନ୍ଦିରରେ ପୁଲିସ ବ୍ୟବସ୍ଥା

ଶ୍ରୀ ବଟକୃଷ୍ଣ ତ୍ରିପାଠୀ,

ପୂର୍ବ ଭାରତ ଉପକୂଳ ଅଞ୍ଚଳର ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବହୁ କାଳରୁ ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରି ଆସିଛି । ଶ୍ରୀଜଗନ୍ନାଥଙ୍କ ଇତିହାସ ପୁରାତନ କଳିଙ୍ଗ ତଥା ବର୍ତ୍ତମାନର ଓଡ଼ିଶା ଇତିହାସ ସଙ୍ଗେ ଓତଃପ୍ରୋତଃ ଭାବେ ଜଡ଼ିତ । ଜଗନ୍ନାଥ ସଂସ୍କୃତି, ଓଡ଼ିଆ ଜାତିର ସଂସ୍କୃତି ତଥା ସର୍ବଭାରତୀୟ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବନି । ଋକ୍‌ବେଦରେ ପୁରୁଷୋତ୍ତମ କ୍ଷେତ୍ରରେ ଦାରୁବ୍ରହ୍ମର ପୂଜା ହେବାର ପ୍ରମାଣ ମିଳେ :

"ଅଦୋ ଯତ୍ ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍,
ତଦା ର ଭସ୍ୱ ଦୁର୍ହଣୋଃ ତେନ ଗଚ୍ଛପରସ୍ତରମ୍ ।"

ଋକ୍‌ବେଦକୁ ଛାଡିଦେଲେ ମହାଭାରତର ବନ ପର୍ବରେ କଳିଙ୍ଗ ଦେଶର ସମୁଦ୍ର କୂଳରେ ମହାବେଦୀର ପୂଜା ବର୍ଣ୍ଣନା କରାଯାଇଛି । ସେତେବେଳର ସେ ବେଦୀକୁ ପୁରୁଷୋତ୍ତମ କ୍ଷେତ୍ରର ନୀଳଶୈଳ ବୋଲି କୁହାଯାଏ ଏବଂ ପରବର୍ତ୍ତୀ କାଳରେ ରତ୍ନ ବେଦୀର ପ୍ରତିଷ୍ଠା ହୁଏ । ଖ୍ରୀଷ୍ଟାବ୍ଦ ୭୦୭ ମସିହାରେ ବୌଦ୍ଧ ପଣ୍ଡିତ ଇନ୍ଦ୍ରଭୂତିଙ୍କ ଲେଖାରୁ ଜଣାଯାଏ :

"ପ୍ରଣପତ୍ୟ ଜଗନ୍ନାଥମ୍ ସର୍ବଜୀନ ବରାର୍ଚ୍ଚିତମ,
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନମ୍ ଗଗନୋପମମ୍ ।"

ନବମ ଶତାବ୍ଦୀରେ ଆଦିଶଙ୍କର ଜଗନ୍ନାଥଙ୍କୁ ଦର୍ଶନ କରି "ଜଗନ୍ନାଥାଷ୍ଟକ" ଲେଖିଥିବନ୍ତି । ପୁରୀରେ ତାଙ୍କର ଚାରିଧାମ ମଧ୍ୟରୁ ଗୋଟିଏ ଧାମ ପ୍ରତିଷ୍ଠା କରିଛନ୍ତି । ବର୍ତ୍ତମାନର ଯେଉଁ ମନ୍ଦିର ଦେଖାଯାଏ ସେ ମନ୍ଦିର ଖ୍ରୀଷ୍ଟାବ୍ଦ ୧୦୭୮ରୁ ୧୧୪୭ ମଧ୍ୟରେ ଗଙ୍ଗବଂଶର ରାଜା ଅନଙ୍ଗ ବର୍ମନ୍ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତା' ପୂର୍ବରୁ ଜଗନ୍ନାଥ ବର୍ତ୍ତମାନର ନୃସିଂହ ମନ୍ଦିରରେ ପୂଜା ପାଉଥିଲେ ବୋଲି କେତେକ ଐତିହାସିକ ବିଶ୍ୱାସ କରନ୍ତି । କେତେକ ଐତିହାସିକଙ୍କ ମତରେ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ କେବଳ ଜଗନ୍ନାଥ ପୂଜା ପାଉଥିଲେ ପୁରୁଷୋତ୍ତମ ନାମରେ । ସେମାନେ କୁହନ୍ତି, ଜଗନ୍ନାଥଙ୍କ ନାମ ସେ ସମୟର ଶିଳାଲିପି, ତାମ୍ରଲିପି, ପତ୍ର କିମ୍ବା ସମସାମୟିକ କବିମାନଙ୍କର ଲେଖାରେ ଦେଖିବାକୁ ମିଳେ ନାହିଁ ।

ସେହିପରି ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ବଳଭଦ୍ର, ସୁଭଦ୍ରାଙ୍କ ନାମ ମଧ୍ୟ ଦେଖିବାକୁ ମିଳେନାହିଁ କେବଳ ଶଙ୍କରଙ୍କ ଅଷ୍ଟକକୁ ଛାଡ଼ିଦେଲେ । ପୁଣି କେତେକ ପଣ୍ଡିତ କୁହନ୍ତି ଯେ ଶଙ୍କରଙ୍କ ଜଗନ୍ନାଥ ଅଷ୍ଟକ ଆଦି ଶଙ୍କରଙ୍କ ଲେଖା ନୁହେଁ । ଅଳ୍ପଦିନ ତଳେ ନୃସିଂହ ମନ୍ଦିରରୁ କେତେକ ଶିଳାଲିପି ବାହାରିଛି । ଏଇ ଶିଳାଲିପିର ବିଷୟବସ୍ତୁ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ଏହି ଶିଳାଲିପିରୁ ଜଣାଯାଏ ଯେ ଖ୍ରୀଷ୍ଟାବ୍ଦ "୧୧୩୦ ମସିହାରେ ନାରାୟଣ ନାମଧେୟ ମହାଦଣ୍ଡାଧିକାରୀ ମହାଦ୍ୱାଦଶୀ ଉତ୍ସବ ଉପଲକ୍ଷେ ଶ୍ରୀ ପୁରୁଷୋତ୍ତମଙ୍କୁ ଅଖଣ୍ଡ ଦୀପ ଉତ୍ସର୍ଗ କରିଥିଲେ ।" ଏଇ ଶିଳାଲିପିରେ ମଧ୍ୟ ପୁରୁଷୋତ୍ତମଙ୍କ ନାମ ଅଛି । ତେଣୁ ଆଉ କେତେକ ଐତିହାସିକ ମନ୍ଦିରର ତିଆରି ୧୧୪୭ ମସିହାରୁ ୧୧୯୭ ମସିହା ମଧ୍ୟରେ ହୋଇଥିବାର କୁହନ୍ତି ।

ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗ ଦେବ ବର୍ତ୍ତମାନର ମନ୍ଦିର ତୋଳାଇ ସାରି ଠାକୁରଙ୍କୁ ରତ୍ନ ବେଦୀରେ ବସାଇଲା ପରେ ମନ୍ଦିର ପରିଚାଳନା ଏବଂ ସେବା ପୂଜା ପାଇଁ ନୀତି ନିୟମ ଗଢ଼ିଥିବାର ଶିଳାଲିପି ଏବଂ ମନ୍ଦିର ପଞ୍ଜିକା ମାଦଳା ପାଞ୍ଜିରୁ ମିଳେ । ମନ୍ଦିର ସେବା ପୂଜା, ପରିଚାଳନାକୁ ୩୬ଗୋଟି ବିଭାଗରେ ବନ୍ଟନ କରି ୩୬ ନିଯୋଗ ସୃଷ୍ଟି କରିଥିଲେ । ରାଜା ନିଜେ ମନ୍ଦିର ପରିଚାଳକ ଥିଲେ । ପୁରୀ ସହର ସେ ସମୟରେ ଗୋଟିଏ ପ୍ରସିଦ୍ଧ ତୀର୍ଥସ୍ଥାନ ହୋଇଥିବା ଦୃଷ୍ଟିରୁ ସହର ତଥା ମନ୍ଦିରର ସୁରକ୍ଷା ଦାୟିତ୍ୱ କ୍ଷେତ୍ରର "ମହାଦଣ୍ଡଧାରୀ"ଙ୍କ ବା "ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ ହସ୍ତରେ ନ୍ୟସ୍ତ କରିଥିଲେ । ୧୧୯୭ ମସିହାଠାରୁ ୧୫୬୮ ପର୍ଯ୍ୟନ୍ତ ପୁରୀ ରାଜାଙ୍କ ପ୍ରତ୍ୟକ୍ଷ ଦାୟିତ୍ୱରେ ୩୬ ନିଯୋଗ ସେବାୟତଙ୍କ ଦ୍ୱାରା ମନ୍ଦିର କାର୍ଯ୍ୟ ପରିଚାଳନା ହେଉଥିଲା । ଏହି ସେବାୟତମାନଙ୍କ ସଂଖ୍ୟା ପରବର୍ତ୍ତୀ କାଳରେ ଅଧିକ ହେବାର ଜଣାଯାଏ । ୧୮୦୫ ମସିହାରେ ପୁରୀ କଲେକ୍ଟର ମିଃ ଗ୍ରୋମଙ୍କ ରିପୋର୍ଟରୁ ଜଣାଯାଏ ଯେ ପ୍ରାୟ ୨୫୦ ପ୍ରକାର ସେବାୟତ ଏ ମନ୍ଦିରରେ କାର୍ଯ୍ୟ କରୁଥିଲେ । ସେହିପରି ଜଗନ୍ନାଥ ମନ୍ଦିର ରେକର୍ଡ଼ସ ୧୨୦ ନିଯୋଗର ସେବା ପୂଜାର ଅଧିକାର ଥିବା ଦେଖିବାକୁ ମିଳେ । ପ୍ରତ୍ୟକ୍ଷ କ୍ଷେତ୍ରରେ ସବୁ ସମୟରେ ୩୬ ନିଯୋଗର କାର୍ଯ୍ୟ ଦେଖିବାକୁ ମିଳେ । ଏହି ସେବାୟତମାନଙ୍କ ମଧ୍ୟରୁ ପ୍ରତିହାରୀ ନିଯୋଗ ମୁଖ୍ୟତଃ ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ନେଇଥାନ୍ତି । ସେମାନଙ୍କ

## STATEMENT ABOUT OWNERSHIP AND OTHER PARTICULARS ON UTKAL PRASANG

...

FORM - IV (See Rule 8)

| | |
|---|---|
| 1. Place of Publication :- | Bhubaneswar |
| 2. Periodicity of its Publication :- | Monthly |
| 3. Printer's name :- | SRI S.R.PATNAIK, I.A.S., For and on behalf of the Government of Orissa. |
| Nationality:- | Indian |
| Address:- | Director, Printing, Stationery and Publications. Orissa,Madhupatna, Cuttack - 753010. |
| 4. Publisher's name :- | SRI A.K.TRIPATHY, I.A.S., For and on behalf of Government of Orissa. |
| Nationality :- | Indian |
| Address :- | Director of Information and Public Relations and Additional Secretary to Government, Information and Public Relations Department, Bhubaneswar-751001. |
| 5. Editor's name :- | SRI BISWAJIT DAS |
| Nationality :- | Indian |
| Address :- | Editor, Utkal Prasanga Information and Public Relations Department, Bhubaneswar-751001. |
| Name and Address of Individuals who owners papers and partners or share holders holding more than one percent of the total Capital :- | Government of Orissa, Bhubaneswar |

I, SRI AJIT KUMAR TRIPATHY,I.A.S.,Director of Information and Public Relations and Additional Secretary to Government, Information & Public Relations Department hereby declare that the particulars given above are true to the best of my knowledge and belief.

Sd/-
A. K. Tripathy
Signature of Publisher.

ହେବାର ଦେଖା ଦେଇଥିଲା । ୧୮୫୩ ମସିହାରେ ନବଯୌବନ ଦର୍ଶନ ବେଳେ ସିଂହଦ୍ୱାରରେ ଯାତ୍ରୀମାନଙ୍କ ଭିଡ଼ ଯୋଗୁ ଦଳାଚକଟାରେ ୧୮ ଜଣ ମହିଳାଙ୍କ ସମେତ ୩ ଜଣ ପୁରୁଷ ମୃତ୍ୟୁବରଣ କଲେ । ଏପରି ଦୁର୍ଘଟଣା ପାଇଁ କମ୍ପାନୀ ସରକାର ମାଜିଷ୍ଟ୍ରେରିଆଲ୍ ତଦନ୍ତ ବସାଇଥିଲେ ଏବଂ ତଦନ୍ତ ତାର ରିପୋର୍ଟରେ ମନ୍ଦିର ପରିଚାଳନାକୁ ଦୋଷୀ ସାବ୍ୟସ୍ତ କଲେ ।

"The Majistrate criticised Police over whom Raja had no control" ଏହି ତଦନ୍ତ ରିପୋର୍ଟରେ ମାଜିଷ୍ଟ୍ରେଟ ମନ୍ଦିର ପାଇଁ ସ୍ୱତନ୍ତ୍ର ପୁଲିସ ବ୍ୟବସ୍ଥା କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ଏହି ଘଟଣା ପରେ ପରେ ପୁଣି ୧୮୫୬ ମସିହାରେ ସିଂହ ଦ୍ୱାର ପାଖରେ ଦଳାଚକଟାରେ ସାତଜଣ ଯାତ୍ରୀ ପ୍ରାଣ ହରାଇଲେ । ସେହି ବର୍ଷ ନବକଳେବର ପଡ଼ିଥିଲା ଏବଂ ଦର୍ଶନ ପାଇଁ ଦୁଇ ଲକ୍ଷରୁ ଅଧିକ ଯାତ୍ରୀ ସମାଗମ ହୋଇଥିଲା । ତଦନ୍ତରେ କଲେକ୍ଟର ଲେଖିଥିଲେ ଯେ, "The small police force at my disposal was wholly inadequate to them under control." ଥରକୁ ଥର ମନ୍ଦିର ବାହାରେ ଏବଂ ମନ୍ଦିର ଭିତରେ ଦୁର୍ଘଟଣା ଘଟି ଯାତ୍ରୀମାନଙ୍କ ମୃତ୍ୟୁ ଯୋଗୁ ତତ୍‌କାଳୀନ କଲେକ୍ଟର ଉଦ୍‌ବେଗ ପ୍ରକାଶ କରି କମିଶନରଙ୍କ ପାଖକୁ ପ୍ରସ୍ତାବ ଦେଇ ଲେଖିଥିଲେ ମନ୍ଦିର ଭିତରେ ଏବଂ ବାହାର ପାଇଁ ମୁତୟନ ଥିବା ୫୭ ଜଣ ବରକନ୍ଦାଜ, ୧ ଜଣ ଜମାଦାର ଯଥେଷ୍ଟ ନୁହନ୍ତି । ଯେଉଁ ସଂଖ୍ୟାରେ ଯାତ୍ରୀମାନେ ଜଗନ୍ନାଥ ଦର୍ଶନ ପାଇଁ ବିଭିନ୍ନ ଯାତ୍ରା ସମୟରେ ଭିଡ଼ କରୁଛନ୍ତି, ସେମାନଙ୍କ ନିରାପତ୍ତା ଏବଂ ମନ୍ଦିର ଭିତରେ ଏବଂ ବାହାରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ଅତି କମ୍‌ରେ ୧୦୦ ଜଣ ବରକନ୍ଦାଜ, ୨ ଜଣ ଜମାଦାର ଦିଆଯାଉ ଏବଂ ଏମାନଙ୍କ ଦରମା ବାବଦକୁ ୬,୮୦୪ ଟଙ୍କା ମନ୍ଦିର ବହନ କରୁ ।

"The force is to be kept as Government establishment but the expense will be borne by the Temple Fund."

କଲେକ୍ଟରଙ୍କ ପ୍ରସ୍ତାବକୁ କମିଶନର୍ ଅନୁମୋଦନ କଲାପରେ ମନ୍ଦିର ମଧ୍ୟରେ ସରକାରୀ ପୁଲିସ ମୁତୟନ କରାଗଲା । ମାତ୍ର ସରକାରୀ ପୁଲିସ ମୁତୟନ ବିରୁଦ୍ଧରେ ପୁରୀ ରାଜା ଏବଂ ପ୍ରତିହାରୀ ସେବକମାନେ ସରକାରଙ୍କ ପାଖେ ଅଭିଯୋଗ କରିଥିଲେ । ରାଜା ତାଙ୍କର ମେମୋରିଆଲ୍‌ରେ ଲେଖିଥିଲେ, "......Under these circumstance your memorialist prays that the police force be withdrawn from the Temple, that the Pratiharis and Pandas be allowed to discharge the duties of guarding the pilgrims."

ରାଜା ବୀରକିଶୋର ଦେବଙ୍କ ଏହି ମେମୋରିଆଲ୍ ତତ୍‌କାଳୀନ କଲେକ୍ଟର୍ କିମ୍ବା କମିଶନର୍ ଅନୁମୋଦନ କରି ନଥିଲେ । ମାତ୍ର ତାହା ଗଭର୍ଣ୍ଣର୍-ଇନ୍-ଜେନେରାଲ୍‌ଙ୍କ ପାଖେ ବିଚାର ପାଇଁ ଗୃହୀତ ହେଲା । ୧୮୫୯ ମସିହାରେ ରାଜା ବୀରକିଶୋର ଦେବଙ୍କ ମୃତ୍ୟୁ ପରେ ତାଙ୍କର ନାବାଳକ ପୁତ୍ର ଦିବ୍ୟସିଂହ ଦେବ ତତ୍ତ୍ୱାବଧାରକ ହିସାବରେ ସୂର୍ଯ୍ୟମଣୀ ପାଟ ମହାଦେଈ ମନ୍ଦିର ପରିଚାଳନା ଦାୟିତ୍ୱ ବହନ କଲେ ।

ସରକାରୀ ପୁଲିସ ମନ୍ଦିର ମଧ୍ୟରେ ଏବଂ ବାହାରେ ରହି କାମ କରିବା ପ୍ରସ୍ତାବ ଏବଂ କଲେକ୍ଟର୍ ଜେ: ବି: ମ୍ୟାକ୍‌ଫରଙ୍କ ସମସ୍ତ ଯୁକ୍ତି କାର୍ଯ୍ୟକାରୀ ହେଲା ନାହିଁ । ୧୮୬୩ ମସିହାରେ ଗଭର୍ଣ୍ଣର୍-ଇନ୍-ଜେନେରାଲ୍‌ଙ୍କ ନିର୍ଦ୍ଦେଶ ଅନୁସାରେ ମନ୍ଦିର ମଧ୍ୟରୁ ସରକାରୀ ପୁଲିସଙ୍କୁ କାଢ଼ି ନିଆଗଲା । କାଢ଼ି ନିଆଗଲା ପରେ, ସରକାରୀ ପୁଲିସ ବାହାରେ ରହି ଦରକାର ବେଳେ ମନ୍ଦିର ପରିଚାଳକଙ୍କ ଅନୁମତି ପାଇ ଭିତରକୁ ପ୍ରବେଶ କରିପାରିବେ ବୋଲି ମଧ୍ୟ ଆଦେଶ ଦେଲେ । ୧୮୬୪ ଅଗଷ୍ଟ ୧୮ ତାରିଖ ଦିନ ମନ୍ଦିର ପାଇଁ ମୁତୟନ ହୋଇଥିବା ଜଣେ ଜମାଦାର, ୩ ଜଣ ଦଫାଦାର ଏବଂ ୩୦ ଜଣ ବରକନ୍ଦାଜଙ୍କୁ ମନ୍ଦିର ଭିତରୁ କାଢ଼ି ନିଆଯାଇଥିଲା ।

୧୮୬୩ ମସିହାରେ ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ପାଟ ମହାଦେଈ ୬୦ ଜଣ ବରକନ୍ଦାଜଙ୍କୁ ସ୍ୱତନ୍ତ୍ର ଭାବେ ମୁତୟନ କଲେ । ସେମାନେ ମନ୍ଦିର ବରକନ୍ଦାଜ୍ ଭାବେ ପରିଚିତ ହେଲେ ଏବଂ ରାଣୀଙ୍କ ନିର୍ଦ୍ଦେଶରେ କାମ କଲେ । ମନ୍ଦିରରେ ପୁଲିସ ମୁତୟନ ହେଲେ ମଧ୍ୟ, ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳାରେ ବିଶେଷ କିଛି ଉନ୍ନତି ଦେଖାଦେଲା ନାହିଁ । ସୂର୍ଯ୍ୟମଣୀ ଦେଈ ୧୮୫୯ରୁ ୧୮୭୫ ପର୍ଯ୍ୟନ୍ତ ଦାୟିତ୍ୱରେ ଥିଲେ । ଏହି ସମୟରେ ମନ୍ଦିରରେ ନୀତି ବିଭ୍ରାଟ ଓ ଅଶାନ୍ତି ଦେଖା ଦେଇଥିଲା । ୧୮୭୫ ମସିହାରେ ରାଜା ଦିବ୍ୟସିଂହ ଦେବ ରାଜା ହେଲେ ଏବଂ ୧୮୭୭ ମସିହାରେ ତାଙ୍କୁ ବ୍ରିଟିଶ୍ ସରକାର ମହାରାଜା ଉପାଧିରେ ଭୂଷିତ କଲେ ମାତ୍ର ଠିକ୍ ବର୍ଷକ ପରେ ୧୮୭୮ ମସିହାରେ ତାଙ୍କୁ ଏକ ହତ୍ୟାକାରୀ ଭାବେ ଦ୍ୱୀପାନ୍ତରିତ ଦଣ୍ଡଭୋଗ କରିବାକୁ ପଡ଼ିଥିଲା । ପୁଣି ସୂର୍ଯ୍ୟମଣୀ ପାଟ ମହାଦେଈ ମନ୍ଦିର ପରିଚାଳନାର ଦାୟିତ୍ୱ ନେଲେ । ୧୮୭୯ ମସିହା ମାର୍ଚ୍ଚ ମାସ ୫ ତାରିଖ ଦିନ ଗୋବିନ୍ଦ ଦ୍ୱାଦଶୀ ବ୍ରତ ପଡ଼ିଥିଲା । ଏହି ବ୍ରତ ପାଇଁ ପୁରୀ ଜିଲ୍ଲା ପୁଲିସ ଏସ୍: ପି: ଜିଲ୍ଲା ଡି: ଓ: ନମ୍ବର ୧୫୫ ଅନୁସାରେ ପୁଲିସ ବନ୍ଦୋବସ୍ତ କରିଥିଲେ ।

"Puri District D. O. No. 155, dated 4. 3. 1879. The following arrangements are to be made for Govinda Dwadasi Festival on the morning of 5th March 1879."

ଏ ପୁଲିସ ବ୍ୟବସ୍ଥାରେ ମନ୍ଦିର ମଧ୍ୟରେ ମନ୍ଦିର ପୁଲିସକୁ ସାହାଯ୍ୟ କରିବା ପାଇଁ ଜଣେ ସବ୍‌ଇନିସ୍‌ପେକ୍ଟର୍, ଚାରି ଜଣ ହେଡ୍ କନେଷ୍ଟବଲ୍ ଏବଂ ୨୬ ଜଣ କନେଷ୍ଟବଲ୍ ମୁତୟନ ହୋଇଥିଲେ । ତାହା ଛଡ଼ା ମନ୍ଦିର ବାହାରେ, ସମୁଦ୍ର କୂଳ ଏବଂ ଅନ୍ୟାନ୍ୟ ପୁଷ୍କରିଣୀ କୂଳରେ ଆଉ ୮୦ ଜଣ ଏସ୍: ଆଇ: ଏବଂ ଜଣେ ଇନିସ୍‌ପେକ୍ଟର୍ ନିଯୁକ୍ତ ହୋଇଥିଲେ । ସେ ବର୍ଷ ଦଳାଚକଟାରେ ମଧ୍ୟ କେତେକ ଯାତ୍ରୀ ପ୍ରାଣ ହରାଇଥିଲେ । ତା' ପୂର୍ବରୁ ୧୮୭୨ ମସିହା ଦୋଳଯାତ୍ରା ସମୟରେ ୯ ଜଣ ପ୍ରାଣ ହରାଇଥିଲେ ।

ଦିବ୍ୟସିଂହ ଦେବଙ୍କ କଳାପାଣି ଦଣ୍ଡରେ ମନ୍ଦିର ପରିଚାଳନାରେ ବିଶେଷ ଅସୁବିଧା ସୃଷ୍ଟି ହେଲା । ୧୮୮୫ ମସିହା ବେଳକୁ କଲେକ୍ଟର୍ ମନ୍ଦିର ପରିଚାଳନା ପାଇଁ ନୂଆ ଟ୍ରଷ୍ଟ ବସାଇବା ପାଇଁ ପ୍ରସ୍ତାବ ଦେଲେ । ଏହି ପ୍ରସ୍ତାବ ବିରୁଦ୍ଧରେ ପାଟ ମହାଦେଈ ଅଦାଲତରେ ମକଦ୍ଦମା ରୁଜୁ କଲେ ଏବଂ ମକଦ୍ଦମାକୁ ମଧୁବାବୁ ପରିଚାଳନା କଲେ । ଶେଷକୁ ସରକାର ବାଧ୍ୟ ହୋଇ ମକଦ୍ଦମା ଉଠାଇ ନେଇ ରାଣୀଙ୍କ ସଙ୍ଗେ କମ୍ପ୍ରମାଇଜ୍ କଲେ । ଏଇ ନିଷ୍ପତ୍ତି ଅନୁସାରେ ରାଜା ନାବାଳକ ଥିବା ଦୃଷ୍ଟିରୁ ମନ୍ଦିର ପରିଚାଳନା ପାଇଁ ଜଣେ ମ୍ୟାନେଜର୍ ନିଯୁକ୍ତ ହେଲେ । ମ୍ୟାନେଜର୍ ଜଣେ ସିନିୟର ଡେପୁଟି କଲେକ୍ଟର୍ ଥିଲେ ।

୧୯୦୩ ମସିହାରେ ମନ୍ଦିର ମ୍ୟାନେଜରଙ୍କ ପ୍ରସ୍ତାବ ଅନୁସାରେ ମନ୍ଦିର ଭିତର କାର୍ଯ୍ୟରେ ମନ୍ଦିର ବରକନ୍ଦାଜଙ୍କୁ ସାହାଯ୍ୟ କରିବା ପାଇଁ ୧୨ ଜଣ କନେଷ୍ଟବଲ୍ ଏବଂ ୨ ଜଣ ହେଡ୍‌କନେଷ୍ଟବଲ୍ ମୁତୟନ ହେଲେ । ତା'ଛଡ଼ା ଜଣେ ଇନିସ୍‌ପେକ୍ଟର୍ ଟେମ୍ପୁଲ୍ ଇନିସ୍‌ପେକ୍ଟର୍ ଭାବେ ଦାୟିତ୍ୱ ନେଲେ । ଏଇ ଟେମ୍ପୁଲ୍ ଇନିସ୍‌ପେକ୍ଟର୍ ମନ୍ଦିର ଭିତରେ ଏବଂ ବାହାର କାର୍ଯ୍ୟ ମଧ୍ୟ ତଦାରଖ କଲେ । ପୁରୀ ସହରର ଲୋକସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ରାସ୍ତାଘାଟର ଉନ୍ନତି, ଟ୍ରେନ୍ କମ୍ୟୁନିକେସନ୍ ଯୋଗୁ ପୁରୀ ସହରରେ ବର୍ଷକୁ ବର୍ଷ ଯାତ୍ରୀ ସଂଖ୍ୟା ବଢ଼ିବାକୁ ଲାଗିଲା । Temple Inspector, Town Inspector ଭାବେ କାର୍ଯ୍ୟ କଲେ ।

ଛଡ଼ା ଖୁଣ୍ଟିଆ, ପାଇକ ସେବାୟତମାନଙ୍କର ମନ୍ଦିର ସମ୍ପତ୍ତି ରକ୍ଷା କରିବାର ଦାୟିତ୍ୱ ମଧ୍ୟ ଅଛି । ଏହି ସେବାୟତମାନେ ସେମାନଙ୍କ ସେବା ଲାଗି ମନ୍ଦିର କୋଠ ଭୋଗରୁ ଶେଷ ପାଉଥାନ୍ତି ଏବଂ କେତେକ ମଧ୍ୟ ଭୂମି ଜାଗିରି ହିସାବରେ ପାଉଥାନ୍ତି । ୧୮୬୭ ମସିହାରେ ପ୍ରତିହାରୀ ନିୟୋଗ ତାଙ୍କର କାର୍ଯ୍ୟ ଏବଂ ଦାୟିତ୍ୱ ବିଷୟରେ ଉଲ୍ଲେଖ କରି ଗୋଟିଏ ଅଭିଯୋଗ ପତ୍ର ତତ୍କାଳୀନ ଗଭର୍ଣ୍ଣର ଜେନେରାଲ୍ ଇନ୍ କାଉନ୍‌ସିଲ୍‌ଙ୍କୁ ଦେଇ ଉଲ୍ଲେଖ କରିଥିଲେ ଯେ :

"From the time immemorial, one generation succeding another – they are officiating as principal Shebaits – Pratiharis both before and after the accession of British supremacy discharging their duties as custodians of lives and property of the pilgrims with satisfaction of the ruling power."

ପ୍ରତିହାରୀ ସେବକମାନଙ୍କୁ ଛାଡ଼ିଦେଲେ ପାଇକ ସେବକ କେତେକାଂଶରେ ପୁଲିସ କାର୍ଯ୍ୟ କରୁଛନ୍ତି Records of Right ଅନୁସାରେ "ପାଳସର ପାଳି କରି ଦିବାରାତି ମନ୍ଦିରରେ ଉପସ୍ଥିତ ରହିବେ ଓ ଦଳାଇ ଦଳବେହେରାଙ୍କ ନିର୍ଦ୍ଦେଶରେ କାମ କରିବେ । ମୁଦ ଘରକୁ ପାଇକ ଦଳବେହେରାଙ୍କ ସହ ଜଗିବେ ।" ମୁଦ ଘର ଜଗିବା କାମ ଏମାନଙ୍କୁ ଦିଆଯାଇଛି । ସେହିପରି ଖୁଣ୍ଟିଆ ସେବକମାନେ "ପାଳିଆ ପଶୁପାଳକ ସିଂହାସନ ଉପରକୁ ଉଠି ଲା ବେଳେ ଓ ଓହ୍ଲାଇଲା ବେଳେ ଶ୍ରୀପଣ ମଣୋହି କରିବେ । ପଞ୍ଚା ପଶୁପାଳକ ଗଲାବେଳେ ଏହାଙ୍କୁ କହିଯାଆନ୍ତି ଓ ଆସନ୍ତି । ପାହେଡ଼ ହେଲେ ଉକ୍ତ ସେବକ ତନଖି କରନ୍ତି । ଦ୍ୱାଦଶ ଶତାବ୍ଦୀ ପରେ ପରେ ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷୀ ଯାତ୍ରୀ ଏବଂ ଭକ୍ତଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । ପୁରୀ, ଚାରିଧାମ ମଧ୍ୟରୁ ଶ୍ରେଷ୍ଠ ଧାମ ହିସାବରେ ପରିଗଣିତ ହେଲା । ପରବର୍ତ୍ତୀ କାଳରେ ବହୁ ପ୍ରସିଦ୍ଧ ସନ୍ଥମାନଙ୍କ ଜଗନ୍ନାଥ ଦର୍ଶନ ଲାଗି ଆଗମନ ଯୋଗୁ ହିନ୍ଦୁ ଭକ୍ତମାନଙ୍କ ଉପରେ ଏହାର ପ୍ରଭାବ ପଡ଼ିଲା । ରାମାନୁଜ, କବୀର, ନାନକ ଏବଂ ଚୈତନ୍ୟଙ୍କ ତୀର୍ଥ ଦର୍ଶନ ଏବଂ ଧର୍ମ ପ୍ରଚାର ଯୋଗୁ ପୁରୁଷୋତ୍ତମ କ୍ଷେତ୍ରର ଯାତ୍ରୀ ଏବଂ ଭକ୍ତଙ୍କ ସଂଖ୍ୟା ବଢ଼ିଥିଲା । ବର୍ଷକୁ କେତେ ସଂଖ୍ୟାରେ ଯାତ୍ରୀ ଆସୁଥିଲେ ଏହାର ସଠିକ ହିସାବ ଏହି ସମୟରେ ମିଳୁ ନଥିଲେ ମଧ୍ୟ ପରବର୍ତ୍ତୀ ମୋଗଲ, ମରହଟ୍ଟା ଏବଂ ବ୍ରିଟିଶ୍ ସମୟରେ ଏ ସବୁର ହିସାବ ମିଳେ । କାରଣ ଏହି ବିଦେଶୀ ଶାସକମାନେ ଯାତ୍ରୀମାନଙ୍କ ଉପରେ ତିର୍ଥିଆ କର ବସାଇଥିଲେ ଏବଂ ପ୍ରତ୍ୟେକ ଯାତ୍ରୀଙ୍କଠାରୁ ଯାତ୍ରୀ କର ଆଦାୟ କରୁଥିଲେ ।

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ, କଳାପାହାଡ଼ଙ୍କଠାରୁ ୧୫୬୮ ମସିହାରେ ଯୁଦ୍ଧରେ ହାରିଗଲା ପରେ, ଆଫଗାନ୍ ଓଡ଼ିଶାକୁ ଅଧିକାର କରିନେଲା । ଆଫଗାନ୍‌ମାନେ ମନ୍ଦିରକୁ ଲୁଣ୍ଠନ କଲେ । ପରବର୍ତ୍ତୀ କାଳରେ ଆଫଗାନ୍‌ମାନଙ୍କୁ ତଡ଼ି ମୋଗଲ ଓଡ଼ିଶା ଅଧିକାର କଲା । ଆକବରଙ୍କ ସେନାପତି ରାଜା ମାନସିଂହ ୧୫୯୨ ମସିହାରେ ରାଜା ହିସାବରେ ଗ୍ରହଣ କରି ପୁରୀ ମନ୍ଦିର ପରିଚାଳନା ଦାୟିତ୍ୱ ନେଲେ । ସେଇ ଦିନଠାରୁ ଖୋର୍ଦ୍ଧା ରାଜା ପୁରୁଷାନୁକ୍ରମେ ମନ୍ଦିର ପରିଚାଳନାର ଦାୟିତ୍ୱ ବହନ କଲେ । ମୋଗଲ ସମୟରେ ଶ୍ରୀଜଗନ୍ନାଥ ମନ୍ଦିର ସୁରକ୍ଷିତ ନଥିଲା । ଠାକୁର ବର୍ଷ ବର୍ଷ ଧରି ମନ୍ଦିରରୁ ବାହାରି ଅନ୍ୟତ୍ର ପଳାଇ ହେଉଥିଲେ । ପ୍ରାୟ ୧୫୦ ବର୍ଷ ଧରି ଶ୍ରୀକ୍ଷେତ୍ର ଶ୍ରୀହୀନ ହୋଇ ପଡ଼ିଥିଲା । ୧୭୫୧ ମସିହାରେ ବେଙ୍ଗଲ୍ ନବାବ୍ ଆଲିବର୍ଦ୍ଦି ଖାଁ ଏବଂ ରଘୁଜୀ ଭୋସଲାଙ୍କ ମଧ୍ୟରେ ସନ୍ଧି ହେବା ପରେ ଓଡ଼ିଶା ମରହଟ୍ଟା ଶାସନ ଅଧୀନକୁ ଆସିଲା । ମରହଟ୍ଟା ଶାସନ ବେଳେ ଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ମରହଟ୍ଟାମାନଙ୍କ ହାତକୁ ଗଲା । ତିନିଜଣ ପରିଛାଙ୍କ ହାତରେ ଏଇ ଦାୟିତ୍ୱ ଦିଆଗଲା । ରାଜାଙ୍କ ଅଧିକାର ସୀମିତ ହୋଇଗଲା । ମରହଟ୍ଟାମାନେ ମଧ୍ୟ ଯାତ୍ରୀ କର ଆଦାୟ କଲେ ଏବଂ ଏଇ ଯାତ୍ରୀ କର ଆଦାୟରୁ ମନ୍ଦିର ମଧ୍ୟରେ ସେମାନେ "ମିଲିଟାରୀ ପୁଲିସ୍"ଙ୍କ ଦରମା ଦେଉଥିଲେ । ମନ୍ଦିର ମଧ୍ୟରେ ଶାନ୍ତି ଶୃଙ୍ଖଳା ଏବଂ ଯାତ୍ରୀମାନଙ୍କ ସୁରକ୍ଷା ପାଇଁ ଏମାନେ ବିଧିବଦ୍ଧ ଭାବରେ ବରକନ୍ଦାଜ ମୁତୟନ କଲେ । ଏମାନଙ୍କ ସଂଖ୍ୟା କେତେ ଥିଲା ତାର ହିସାବ ସଠିକ୍ ଭାବେ ମିଳିନଥିଲେ ମଧ୍ୟ ସମସାମୟିକ ରେକର୍ଡ଼ରୁ ଜଣାପଡ଼େ ଯେ ପ୍ରାୟ ୪୦ରୁ ୫୦ ଜଣ ପର୍ଯ୍ୟନ୍ତ ବରକନ୍ଦାଜ (ମିଲିଟାରୀ ପୁଲିସ୍) ମନ୍ଦିର ଭିତରେ ଏବଂ ବାହାରେ ମୁତୟନ ଥିଲେ । ମରହଟ୍ଟା ସମୟରେ ମନ୍ଦିର ପରିଚାଳନା ସେତେ ସନ୍ତୋଷଜନକ ନଥିଲା । ଏମାନେ ଯାତ୍ରୀଙ୍କଠାରୁ ବହୁ ପ୍ରକାର କର ଆଦାୟ କରୁଥିଲେ । ମନ୍ଦିର ମଧ୍ୟରେ ଚୋରି ଇତ୍ୟାଦି ଦେଖାଯାଉଥିଲା ।

୧୮୦୩ ମସିହାରେ ବ୍ରିଟିଶ୍ ଓଡ଼ିଶା ଅଧିକାର କଲା ପରେ ମନ୍ଦିରର ପରିଚାଳନା ଦାୟିତ୍ୱ କମ୍ପାନୀ ସରକାର ହାତକୁ ନେଲେ । ମନ୍ଦିରର ଦାୟିତ୍ୱ ନେଲା ପରେ ସେମାନେ ଯାତ୍ରୀ କର ଉଠାଇ ଦେଲେ ଏବଂ ହିନ୍ଦୁମାନଙ୍କର ଧର୍ମ ଉପରେ ଯେପରି ହସ୍ତକ୍ଷେପ କରା ନଯାଏ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟିଦେଲେ. ମାତ୍ର କମ୍ପାନୀର ଏତାଦୃଶ କାର୍ଯ୍ୟକୁ ସେ ସମୟର ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟ ନାପସନ୍ଦ କରିଥିଲେ । ତେଣୁ ୧୮୦୯ ମସିହାରେ କମ୍ପାନୀ ସରକାର ମନ୍ଦିର ପରିଚାଳନା ଦାୟିତ୍ୱ ଖୋର୍ଦ୍ଧା ରାଜାଙ୍କ ହସ୍ତରେ ଅର୍ପଣ କଲେ ।

ମନ୍ଦିର ପରିଚାଳନା ଦାୟିତ୍ୱ ନେଲା ପରେ, ରାଜା ପ୍ରାୟ ୪୦ ଜଣ ବରକନ୍ଦାଜଙ୍କୁ ନେଇ ମନ୍ଦିର ବାହାର କାର୍ଯ୍ୟ ତୁଲାଉଥିଲେ । ଏମାନଙ୍କର ମନ୍ଦିର ଭିତରକୁ ପ୍ରବେଶ କରିବାର ଅଧିକାର ନଥିଲା । କମ୍ପାନୀ ସରକାର ଓଡ଼ିଶା ଅଧିକାର କଲା ପରେ, ପୁରୀ ସହରରେ ଗୋଟିଏ ଥାନା ୧୮୦୬ ମସିହାରେ ବସାଇଥିଲେ । ଏଇ ଥାନାରେ ଜଣେ ଦାରୋଗା, ଜଣେ ଜମାଦାର, ୮ ଜଣ ବରକନ୍ଦାଜ୍ ମୁତୟନ ଥିଲେ । ଏମାନେ ସହର ଶାନ୍ତି ଶୃଙ୍ଖଳା ରକ୍ଷାର ଦାୟିତ୍ୱ ନେଇଥିଲେ । ମନ୍ଦିରରେ ପ୍ରବେଶ କରିବାର ଅଧିକାର ଏମାନଙ୍କର ନଥିଲା ।

ବ୍ରିଟିଶ୍ ସରକାର ଓଡ଼ିଶା ଶାସନ ଅଧିକାର ପରେ ରାଜ୍ୟରେ ଶାନ୍ତି ଦେଖାଗଲା । ଯାତ୍ରୀମାନେ ବାଟରେ ଆସୁଥିବା ସମୟରେ ଯେତେବେଳେ ଡାକୁମାନଙ୍କର ସମ୍ମୁଖୀନ ହେଉଥିଲେ, ସରକାର ସେ ସବୁକୁ ଦୃଢ଼ ହସ୍ତରେ ଦମନ କରୁଥିଲେ । ରାସ୍ତାଘାଟ, ସହର ବଜାରରେ ନିରାପତ୍ତା ରହିଲା ଏବଂ ଯାତ୍ରୀମାନେ ବହୁ ସଂଖ୍ୟାରେ ପୁରୀ ଆସିବାକୁ ଲାଗିଲେ । ରେକର୍ଡରୁ ଜଣାପଡ଼େ ଯେ ରଥଯାତ୍ରା ସମୟରେ ନିମ୍ନଲିଖିତ ସଂଖ୍ୟାରେ ଯାତ୍ରୀ ପୁରୀକୁ ଆସିଥିଲେ :

| | | |
|---|---|---|
| ୧୮୧୭-୧୮ | | |
| ୧୮୧୮-୧୯ | ମୋଟ | ୭୫,୬୪୧ |
| ୧୮୧୯-୨୦ | | ୫୧,୧୯୧ |
| ୧୮୨୦-୨୧ | | ୧,୩୧,୮୭୫ |
| ୧୮୨୧-୨୨ | | ୩୩,୫୫୬ |
| | | ୫୨,୮୬୦ |

ପରବର୍ତ୍ତୀ କାଳରେ ଯାତ୍ରୀମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ।

ଯେଉଁ ପରିମାଣରେ ଯାତ୍ରୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ବିଭିନ୍ନ ଯାତ୍ରା ସମୟରେ ପୁରୀକୁ ଆସିଲେ ସେମାନଙ୍କ ସୁରକ୍ଷା ଏବଂ ଶାନ୍ତି ଶୃଙ୍ଖଳା ପାଇଁ ମନ୍ଦିର ମଧ୍ୟରେ ସେପରି କିଛି ସୁବନ୍ଦୋବସ୍ତ ନଥିଲା । ସେବାୟତମାନେ ତାଙ୍କ ସେବା ସଙ୍ଗେ ସଙ୍ଗେ ଯାତ୍ରୀ କାରବାରରେ ମଧ୍ୟ ଲିପ୍ତ ରହିଲେ । ମନ୍ଦିର ମଧ୍ୟରେ ସ୍ୱତନ୍ତ୍ର ପୁଲିସ ବ୍ୟବସ୍ଥା ନଥିବା ଯୋଗୁ ଯାତ୍ରୀମାନେ ଅକଥନୀୟ ଅସୁବିଧାର ସମ୍ମୁଖୀନ ହେଲେ । ୧୮୦୯ ମସିହାରୁ ୧୮୬୩ ମସିହା ମଧ୍ୟରେ ବହୁ ଯାତ୍ରୀ ରଥଯାତ୍ରା, ଦୋଳଯାତ୍ରା ସମୟରେ ଦଳାଚକଡ଼ାରେ ମୃତ୍ୟୁବରଣ କଲେ । ୧୮୦୯ରୁ ୧୮୬୩ ମସିହା ମଧ୍ୟରେ କମ୍ପାନୀ ସରକାର ଏବଂ ରାଜାଙ୍କ ମଧ୍ୟରେ ବହୁବାର ମନ୍ଦିର ପ୍ରବେଶ ଏବଂ ରାଜସ୍ୱ ଆଦାୟକୁ ନେଇ ବହୁବାର ଭିଡ଼ାଓଟରା

ଓଁ ଆ ବ୍ରହ୍ମନ୍ ବ୍ରାହ୍ମଣୋ
ବ୍ରହ୍ମବର୍ଚସୀ ଜାୟତା —
ମା ରାଷ୍ଟ୍ରେ ରାଜନ୍ୟଃ ଶୂର
ଇଷବ୍ୟୋଽତିବ୍ୟାଧୀ ମହାରଥୋ ଜାୟତାମ୍ ।
ଦୋଗ୍ଧ୍ରୀ ଧେନୁର୍ବୋଢାନଡ୍ ବାନାଶୁଃ
ସପ୍ତିଃ ପୁରନ୍ଧିର୍ଯୋଷା ଜିଷ୍ଣୁ
ରଥେଷ୍ଠାଃ ସଭେୟୋ ଯୁବାସ୍ୟ
ଯଜମାନସ୍ୟ ବୀରୋ ଜାୟତାମ୍ ।
ନିକାମେ ନିକାମେ ନଃ ପର୍ଜନ୍ୟୋ ବର୍ଷତୁ ।
ଫଳବତ୍ୟୋ ନ ଓଷଧୟଃ ପଚ୍ୟନ୍ତାମ୍
ଯୋଗକ୍ଷେମୋ ନଃ କଳ୍ପତାମ୍ ॥

[-ଯଜୁ ୨୨, ୨୨]



— ହେ ବ୍ରହ୍ମନ୍ ! ଆମମାନଙ୍କର ରାଷ୍ଟ୍ରରେ ଜ୍ଞାନ ପ୍ରସାର ପାଇଁ ବ୍ରହ୍ମତେଜଯୁକ୍ତ, ସଦାଚାରୀ ଉପଦେଶକ ଜନ୍ମଲାଭ କରନ୍ତୁ । ନ୍ୟାୟ ପ୍ରତିଷ୍ଠା ପାଇଁ ଶସ୍ତ୍ରନିପୁଣ କ୍ଷତ୍ରିୟ ବୀର ଉତ୍ପନ୍ନ ହୁଅନ୍ତୁ । ସମୃଦ୍ଧି ପାଇଁ ଗୋଧନ, ଅଶ୍ୱ, ଅଶ୍ୱଶକ୍ତି ସଂପନ୍ନ ଯନ୍ତ୍ରାଦି ବୃଦ୍ଧି ପାଉ । ବୁଦ୍ଧିମତୀ ମହିଳା, ତେଜସ୍ୱୀ ବୀର, ଉତ୍ତମ ସନ୍ତାନ ଜାତ ହୁଅନ୍ତୁ । ଯଥା ସମୟରେ ବୃଷ୍ଟିପାତ ହେଉ । ବିବିଧ ଶସ୍ୟ ଓ ଓଷଧି ଉତ୍ପାଦିତ ହେଉ । ଅପ୍ରାପ୍ତ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଉ । ପ୍ରାପ୍ତ ଐଶ୍ୱର୍ଯ୍ୟ ସଂରକ୍ଷିତ ରହୁ । ହେ ମଙ୍ଗଳମୟ ! ସର୍ବ କ୍ଷେତ୍ରରେ ଆମମାନଙ୍କ ରାଷ୍ଟ୍ରର ଅଭ୍ୟୁଦୟ ସଂଗଠିତ ହେଉ ।

ଦୈନନ୍ଦିନ ଯାତ୍ରୀ ସଂଖ୍ୟା ବୃଦ୍ଧି ପାଇବାରେ ୧୯୩୦ ମସିହା ବେଳକୁ ମନ୍ଦିରରେ ସରକାରୀ ପୁଲିସ ସଂଖ୍ୟା ୨ ଜଣ ହାବିଲଦାର୍ ଓ ୩୫ ଜଣ କନେଷ୍ଟବଲଙ୍କୁ ବଢ଼ିଥିଲା ।

୧୯୨୬ ମସିହାରେ ମୁକୁନ୍ଦ ଦେବଙ୍କ ମୃତ୍ୟୁ ଘଟେ । ତାଙ୍କ ମୃତ୍ୟୁ ପରେ ରାମଚନ୍ଦ୍ର ଦେବ ପୁରୀ ରାଜା ହେଲେ ଏବଂ ମନ୍ଦିର ପରିଚାଳନା ଦାୟିତ୍ୱ ନେଲେ । ସେ ଦାୟିତ୍ୱ ନେଲା ପରେ ଡେପୁଟୀ କଲେକ୍ଟର୍ ମ୍ୟାନେଜରଙ୍କୁ ପରିଚାଳନାରୁ ବାଦ୍ ଦିଆଗଲା । ୧୯୨୬ରୁ ୧୯୫୨ ପର୍ଯ୍ୟନ୍ତ ମନ୍ଦିର ପୁଲିସ ବ୍ୟବସ୍ଥାରେ କିଛି ପରିବର୍ତ୍ତନ ଘଟି ନଥିଲା । ଦେଶ ସ୍ୱାଧୀନ ହେଲା ପରେ ପୁରୀ ମନ୍ଦିର ପରିଚାଳନା ପାଇଁ **Jagannath Temple Act. 1954** ମସିହାରେ ଗୃହୀତ ହେଲା । ଏହି ଆଇନ୍ ଅନୁଯାୟୀ ମନ୍ଦିର ପରିଚାଳନା ଦାୟିତ୍ୱ ଟେମ୍ପଲ୍ ମ୍ୟାନେଜିଂ କମିଟି ହାତରେ ନ୍ୟସ୍ତ କରାଗଲା । ଏହି ମ୍ୟାନେଜିଂ କମିଟିରେ ପୁରୀ ରାଜା ସଭାପତି ଏବଂ ଜିଲାପାଳ ଉପସଭାପତି ଭାବେ ରହିଲେ । ତାହା ଛଡ଼ା ସେବାୟତ ଗୋଷ୍ଠୀରୁ ମଧ୍ୟ ସଭ୍ୟ ରହିଲେ । ପୁରୀ ରାଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରୁ ମନ୍ଦିର ପରିଚାଳନା ଦାୟିତ୍ୱ କାଢ଼ି ନିଆଗଲା । ୧୯୬୦ ମସିହା ବେଳକୁ ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ଏବଂ ବିଭିନ୍ନ ଅପରାଧକୁ ରୋକିବା ପାଇଁ ମନ୍ଦିର ଭିତରେ ପୁଲିସ ସଂଖ୍ୟା ୫ ଜଣ ହାବିଲଦାର୍ ଏବଂ ୩୬ ଜଣ କନେଷ୍ଟବଲରେ ପହଞ୍ଚିଥିଲା । ମନ୍ଦିର ଆଇନ୍ ଅନୁସାରେ ମନ୍ଦିର ଭିତରେ ଘଟୁଥିବା ଅପରାଧକୁ ପୁଲିସ ଧର୍ତ୍ତବ୍ୟ ଅପରାଧ ରୂପେ ଗ୍ରହଣ କରିପାରିବେ ଏବଂ କେତେକ ଅପରାଧରେ ବିନା ୱ୍ୟାରେଣ୍ଟରେ ଗିରଫଦାର୍ କରିପାରିବାର ଅଧିକାର ଦିଆଗଲା । ତାହା ଛଡ଼ା ମନ୍ଦିର ପରିଚାଳକଙ୍କର ମଧ୍ୟ ଦଣ୍ଡ ଦେବା ପାଇଁ ଅଧିକାର ରହିଲା ।

ମନ୍ଦିର ମଧ୍ୟରେ କେବଳ ହାବିଲଦାର୍ ଏବଂ ୩୬ ଜଣ କନେଷ୍ଟବଲ୍ ଥିବା ଦୃଷ୍ଟିରୁ ଏବଂ ସେମାନଙ୍କର କୌଣସି ଧର୍ତ୍ତବ୍ୟ ଅପରାଧ ତଦନ୍ତ କରିବା ପାଇଁ ଅଧିକାର ନଥିବା ଦୃଷ୍ଟିରୁ ମନ୍ଦିର ଆଇନ୍ ହେଲା ପରଠାରୁ ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ଇନିସ୍‌ପେକ୍ଟର୍, ଏସ୍: ଆଇ: ପୋଷ୍ଟ ସୃଷ୍ଟି ପାଇଁ ପ୍ରସ୍ତାବ ଦିଆଯାଇଥିଲା । ୧୯୬୦ ମସିହା ପରଠାରୁ ପୁରୀ ସହରରେ ଯାତ୍ରୀ ସଂଖ୍ୟା ବଢ଼ିବାରେ ଲାଗିଲା । ୧୯୬୯ ମସିହା ନବ କଳେବର ସମୟରେ ପୁରୀ ସହରରେ ପ୍ରାୟ ୧୦ ଲକ୍ଷ ଯାତ୍ରୀ ସମାଗମ ହୋଇଥିଲା, ସେହିପରି ୧୯୬୯ ନବ କଳେବର, ୧୯୭୭ ମସିହା ନବ କଳେବର ଉତ୍ସବରେ ପାଦ, ୨୦ ଲକ୍ଷ ଯାତ୍ରୀଙ୍କ ସମାଗମ ହୋଇଥିଲା । ତାହା ଛଡ଼ା ପ୍ରତ୍ୟେକ ଦିନ ଯାତ୍ରୀଙ୍କ ସଂଖ୍ୟା ମଧ୍ୟ ମନ୍ଦିରରେ ବଢ଼ିବାକୁ ଲାଗିଲା ।

୧୯୮୩ ମସିହାରେ ମନ୍ଦିର ସରକାରୀ ପୁଲିସ ସଂଖ୍ୟାରେ ଜଣେ ସବ୍‌ଇନିସ୍‌ପେକ୍ଟର ଏବଂ ଆଉ ଦୁଇ ଜଣ ହାବିଲଦାର୍ ଯୋଗ ହେଲେ । ମନ୍ଦିର ପାଇଁ କୌଣସି ସ୍ୱତନ୍ତ୍ର ଡି: ଏସ୍: ପି: ପଦବୀ ସୃଷ୍ଟି ହେଲା ମାତ୍ର ପରବର୍ତ୍ତୀ କାଳରେ ଡି: ଏସ୍: ପି: ପଦବୀ ସହରାଞ୍ଚଳ ଡି: ଏସ୍: ପି: ହିସାବରେ କାର୍ଯ୍ୟ କଲା । ବର୍ତ୍ତମାନ ମନ୍ଦିରରେ ସରକାରୀ ପୁଲିସ ସଂଖ୍ୟା ହେଲା, ଜଣେ ସବ୍‌ଇନିସ୍‌ପେକ୍ଟର୍, ୬ ଜଣ ହେଡ୍‌କନେଷ୍ଟବଲ୍, ୪୭ ଜଣ କନେଷ୍ଟବଲ୍ ଏବଂ ୫ ଜଣ ମହିଳା କନେଷ୍ଟବଲ୍ । ଉପରୋକ୍ତ ପୁଲିସ ମନ୍ଦିରର ଦୈନନ୍ଦିନ ପରିଚାଳନାରେ ସାହାଯ୍ୟ କରିବା ପାଇଁ ରହିଛି । ଅବଶ୍ୟ ମନ୍ଦିର ନିରାପତ୍ତାରେ ସାହାଯ୍ୟ କରିବା ପାଇଁ ମନ୍ଦିର ପରିଚାଳନା ତରଫରୁ ୧୦୦ ଜଣ ଟେମ୍ପଲ୍ ପୁଲିସ ରଖାଯାଇଛି । ଏମାନଙ୍କ କାର୍ଯ୍ୟ ମୁଖ୍ୟତଃ ସେବାୟତମାନଙ୍କୁ ଡାକିବା ଏବଂ ଯାତ୍ରୀମାନଙ୍କ ଉପରେ ଆଖି ରଖିବା । ଏମାନେ ପୁଲିସ ଆଇନ ଅନୁଯାୟୀ ମୁତୟନ ହୋଇନଥିବା ଦୃଷ୍ଟିରୁ ଏମାନଙ୍କର ଅଧିକାର ସୀମିତ ।

ମନ୍ଦିର ଭିତରେ ଦୈନନ୍ଦିନ କାର୍ଯ୍ୟକୁ ଛାଡ଼ିଦେଲେ, ବଡ଼ ବଡ଼ ପର୍ବ ପର୍ବାଣିରେ ସ୍ୱତନ୍ତ୍ର ପୁଲିସ ବ୍ୟବସ୍ଥା କରାଯାଏ । ପର୍ବ ପର୍ବାଣି ମଧ୍ୟରେ ମୁଖ୍ୟତଃ ସ୍ନାନ ଯାତ୍ରା, ରଥ ଯାତ୍ରା, ଚନ୍ଦନ, ଝୁଲଣ ଏବଂ କାର୍ତ୍ତିକ ମାସର ପୂର୍ଣ୍ଣିମା । ତାଛଡ଼ା ଗୋବିନ୍ଦ ଦ୍ୱାଦଶୀ ପ୍ରଭୃତି ବାରୁଣୀ ଯୋଗ ଏବଂ ସ୍ୱତନ୍ତ୍ର ପର୍ବ ପାଇଁ ସ୍ୱତନ୍ତ୍ର ପୁଲିସ ବ୍ୟବସ୍ଥା ହୋଇଥାଏ ।

୧୯୬୧ (୨୭/୨/୧୯୬୧) ମସିହା ଗୋବିନ୍ଦ ଦ୍ୱାଦଶୀ ସମୟରେ ପୁରୀ ସହର, ମନ୍ଦିର ପାଇଁ ଜଣେ ପୁଲିସ ଡି: ଆଇ: ଜିଙ୍କ ତତ୍ତ୍ୱାବଧାନରେ ୩ ଜଣ ଏସ୍: ପି:, ୧୫ ଜଣ ଡି: ଏସ୍: ପି:, ୨୬ ଜଣ ଇନିସ୍‌ପେକ୍ଟର୍, ୧୩୬ ଜଣ **ସବ୍‌ଇନିସ୍‌ପେକ୍ଟର୍, ୧୮୮ ଜଣ ଏ: ଏସ୍: ଆଇ:** ୨୨ ଜଣ ହେଡ୍‌କନେଷ୍ଟବଲ୍ ଏବଂ କନେଷ୍ଟବଲଙ୍କ ସହ ସର୍ବମୋଟ ୨,୭୫୦ ଜଣ ପୁଲିସ ମୁତୟନ ହୋଇଥିଲା । ୧୮୭୯ ମସିହା ଗୋବିନ୍ଦ ଦ୍ୱାଦଶୀରେ ସର୍ବମୋଟ ଜଣେ ଇନିସ୍‌ପେକ୍ଟର୍ ସମେତ ୧୧୦ ଜଣ ଥିବା ସମୟରେ ୮୨ ବର୍ଷ ପରେ ତାହା ୨୭ ଗୁଣ ଅଧିକା ହୋଇଥିଲା । ସେହିପରି ୧୯୬୯ ଏବଂ ୧୯୭୭ ନବ କଳେବର ସମୟରେ ପ୍ରାୟ ୩,୦୦୦ରୁ ଊର୍ଦ୍ଧ୍ୱ ପୁଲିସ ଅଫିସର୍ ଏବଂ ଜଓ୍ୱାନ୍ ମନ୍ଦିର କାର୍ଯ୍ୟ ଏବଂ ଠାକୁରଙ୍କ ଯାତ୍ରା ପାଇଁ ମୁତୟନ ହୋଇଥିଲେ ।

ଯାତ୍ରୀମାନଙ୍କ ଭିଡ଼, ଲୋକସଂଖ୍ୟା ବୃଦ୍ଧି ଦୃଷ୍ଟିରୁ ମନ୍ଦିରରେ ପୁଲିସ ବ୍ୟବସ୍ଥା ମଧ୍ୟ ବୃଦ୍ଧି ପାଇବା ଉଚିତ । ୧୯୮୮ ମସିହା ରଥ ସମୟରେ ଶାନ୍ତି ଶୃଙ୍ଖଳା ପାଇଁ ଜଣେ ଏସ୍: ପିଙ୍କ ତତ୍ତ୍ୱାବଧାନରେ ୩ ଜଣ ଅତିରିକ୍ତ ଏସ୍: ପି:, ୨ ଜଣ ଡି: ସି:, ୧୩ ଜଣ ଡି: ଏସ୍: ପି: ଏବଂ ଏ: ସି:, ଇନିସ୍‌ପେକ୍ଟର୍ ୧୭, ଏସ୍: ଆଇ: ଏବଂ ଜମାଦାର ମିଶି ୧୨୯, ଏ: ଏସ୍: ଆଇ: ୧୧୭, ହେଡ୍‌କନେଷ୍ଟବଲ୍ ୬୪, କନେଷ୍ଟବଲ୍, ମହିଳା କନେଷ୍ଟବଲଙ୍କୁ ମିଶାଇ ୫୭୦, ସ୍ୱତନ୍ତ୍ର ଓଡ଼ିଶା ପୁଲିସ ୮୭୦, ଗୃହରକ୍ଷୀ ୩୬୪ ନିଯୁକ୍ତ ହୋଇଥିଲେ । ସେହିପରି ୧୮୮୯ ମସିହା ରଥଯାତ୍ରା ସମୟରେ ଅଫିସର ଏବଂ ଜଓ୍ୱାନ ମିଶି ସର୍ବମୋଟ ଜଣେ ଏସ୍: ପିଙ୍କ ତତ୍ତ୍ୱାବଧାନରେ ସର୍ବମୋଟ ୨,୩୩୯ ଜଣ ମୁତୟନ ହୋଇଥିଲେ ।

ବିଗତ କେତେବର୍ଷରେ ପୁରୀ ସହରର ଦୈନନ୍ଦିନ ଯାତ୍ରୀ ସଂଖ୍ୟା ବଢ଼ିବାରେ ଲାଗିଛି । ପ୍ରାୟ ପ୍ରତ୍ୟେକ ଦିନ ୨୦ ହଜାରରୁ ୫୦ ହଜାର ପର୍ଯ୍ୟନ୍ତ ଯାତ୍ରୀ ମନ୍ଦିର ଦର୍ଶନକୁ ଯାଇଥାନ୍ତି । ଏହାଛଡ଼ା ଛୁଟି ଦିନମାନଙ୍କରେ, ଦଶହରା, ଏକ୍ସମାସ୍, ଦୋଳ, ଗରମ ଭ୍ୟାକେସନ୍ ସମୟରେ ଯାତ୍ରୀ ସଂଖ୍ୟା ଲକ୍ଷାଧିକ ହୋଇଥାଏ । ପୁରୀ ସହରରେ ଦ୍ରୁତ ଭାବେ ଗଢ଼ି ଉଠିଥିବା ଆଧୁନିକ ଧରଣର ହୋଟେଲ୍ ମଧ୍ୟ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରି ପାରିଛି ।

ଏ ସମସ୍ତକୁ ଆଖି ଆଗରେ ରଖି ମନ୍ଦିର ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା ଏବଂ ଯାତ୍ରୀମାନଙ୍କ ନିରାପତ୍ତା ପାଇଁ ବର୍ତ୍ତମାନର ସରକାରୀ ପୁଲିସ ସଂଖ୍ୟା ଯେ ବଢ଼ିବାର ନିତାନ୍ତ ଆବଶ୍ୟକତା ଅଛି କହିଲେ ଅତ୍ୟୁକ୍ତି ହେବନି । ୧୮୬୫ ମସିହାରେ ତତ୍କାଳୀନ ଜିଲ୍ଲା କଲେକ୍ଟର୍ ପ୍ରସ୍ତାବ ଦେଇଥିଲେ ଯେ ମନ୍ଦିର ପୁଲିସ ସଂଖ୍ୟା ଅତି କମ୍‌ରେ ଦୁଇ ଜଣ ଜମାଦାର, ୧୦୦ ଜଣ କନେଷ୍ଟବଲ୍ ହେବା ଉଚିତ । ୧୩୫ ବର୍ଷ ପରେ ମଧ୍ୟ ସେହି ପ୍ରସ୍ତାବ ଦିଆଯାଇଛି ଯେ ବର୍ତ୍ତମାନର ସରକାରୀ ପୁଲିସ ସଂଖ୍ୟାକୁ ୧୦ ଜଣ ହେଡ୍‌କନେଷ୍ଟବଲ୍, ୧୦୦ ଜଣ କନେଷ୍ଟବଲଙ୍କୁ ବଢ଼ାଇ ସେମାନଙ୍କୁ ତଦାରଖ କରିବା ପାଇଁ ଜଣେ ଇନିସ୍‌ପେକ୍ଟର୍ ଏବଂ ଜଣେ ଡି: ଏସ୍: ପି: ପଦବୀ ସୃଷ୍ଟି ହେଉ ।


ସହାୟକ ଗ୍ରନ୍ଥ

1. History of Orissa–W. W. Hunter.
2. History of Orissa–John Beams
3. History of the Jagannath Temple, in 19th Century–P. Mukharjee.
4. Legends of Jagannath Puri–R. K. Das.
5. Pilgrimage to Juggernat Puri–D. B. Smith.
6. Puri Police District DO Book 1879.
7. Jagannath Temple Records of Right.


ସୁପରିନ୍‌ଟେଣ୍ଡେଣ୍ଟ ଅଫ୍ ପୁଲିସ୍, ପୁରୀ ।

ରସାସ୍ୱାଦନରେ ସମୃଦ୍ଧ ବନ୍ଦିତ ହେଉ' ଏହି ଲକ୍ଷରେ ପଣ୍ଡିତଜୀ ଦୃପ୍ତ କଣ୍ଠରେ କହିଥିଲେ :

If I was asked what is the greatest treasure which India possess and waht is her finest heritage, I would answer unhasitatingly - it is the Sanskrit language and literature and all that it contains. This is magnificent inheritance and so long as this endures and influences the life of our people so long the basic genius of India will continue.[3]

ଜାତିର ଜନକ ମହାତ୍ମାଗାନ୍ଧୀଙ୍କଠାରୁ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପର୍ଯ୍ୟନ୍ତ ଅଥବା ସ୍ୱାମୀ ବିବେକାନନ୍ଦଙ୍କଠାରୁ ଯୋଗୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ଭାରତର ସମସ୍ତ ରାଷ୍ଟ୍ରନାୟକଙ୍କ ସହିତ ଏକମତ ହୋଇ ପଣ୍ଡିତ ନେହେରୁ ଭାରତବର୍ଷର ମୌଳିକ ପ୍ରଗତି ମୂଳରେ ସଂସ୍କୃତର ଅବଦାନ ସମ୍ପର୍କରେ ଯେଉଁ ମତବ୍ୟକ୍ତ କରିଥିଲେ ତାହାକୁ ବର୍ତ୍ତମାନର ରାଷ୍ଟ୍ରନାୟକମାନେ କିପରି ଏତେ ଶୀଘ୍ର ଭୁଲି ପାରନ୍ତି, ତାହା ବିସ୍ମୟ ଜାତ କରାଏ ।

## ସଂସ୍କୃତହିଁ ଭାରତୀୟ ସଭ୍ୟତାର ପ୍ରତୀକ :

୧୯୫୪ ମସିହା ଅଗଷ୍ଟ ୭ ତାରିଖରେ ସମ୍ବିଧାନର ଭାଷା ପରିଚ୍ଛେଦରୁ ସଂସ୍କୃତ ବିଲୋପ ବିତର୍କର ଉତ୍ତରରେ ପଣ୍ଡିତ ନେହେରୁ ଉଚ୍ଛ୍ୱସିତ କଣ୍ଠରେ ଘୋଷଣା କରିଥିଲେ ଯେ ସଂସ୍କୃତକୁ କୌଣସିମତେ ବାଦ ଦିଆଯାଇପାରିବ ନାହିଁ । ତାଙ୍କ ଭାଷାରେ—

Every one knows Sanskrit is the symbol of our magnificent civilisation in the past. Whenever I think of it I am overwhelmed by the achievements of Sanskrit. It is a tremendous thing. Now we cannot leave it.[4]

## ରାଷ୍ଟ୍ରୀୟ ଏକତା ରକ୍ଷାରେ ସଂସ୍କୃତର ଭୂମିକା :

ଲୋକସଭାର ଏକ ଆଲୋଚନା ପ୍ରସଙ୍ଗରେ ପଣ୍ଡିତଜୀ ଭାରତର ମହତ୍ତ୍ୱ ଏବଂ ମୌଳିକ ଚିନ୍ତନର ଆଧାରକ ହିଁ ସଂସ୍କୃତ ବୋଲି ଅଭିହିତ କରିବା ସଙ୍ଗେସଙ୍ଗେ ଭାଷା ମାଧ୍ୟମରେ ଏହା ଏକତା ଆଣି ପାରିବ ବୋଲି ମତବ୍ୟକ୍ତ କରିଥିଲେ :

If there is anything which embodies the greatness of Indian thought and culture in the past, it is Sanskrit. We donot talk Sanskrit now, but the Indian language of today are either directly descended from Sanskrit or, like the Southern languages, have been closely allied with it. The background of thought and culture of the Southern languages, whether Tamil, Telugu or Malayalam : is closely allied to the background of thought and culture of the Northern languages, because of Sanskrit and its effect on the whole of India. I do not say all of Sanskrit is good, but it has provided the roots on which India has grown up. If we cut away those roots it will be very bad for us.[5]

## ଭାରତୀୟ ଭାଷାର ପ୍ରାଣଦୀପିକା ସଂସ୍କୃତ :

ସଂସ୍କୃତ ଶିକ୍ଷାର ଅଭାବରୁ ମହାଭାରତୀୟ ଚିନ୍ତନ ଓ ଚେତନା ବିଲୋପ ଘଟିବ, ଏତଦ୍ ସଙ୍ଗେସଙ୍ଗେ ଭାରତର ଘୋର ଅନିଷ୍ଟ ଘଟିବ ବୋଲି ପଣ୍ଡିତ ନେହେରୁଙ୍କ ଉପର୍ଯୁକ୍ତ ବାଣୀ ଯେପରି ପ୍ରଣିଧାନ ଯୋଗ୍ୟ ସେହିପରି ଭାରତୀୟ ଭାଷାକୁ ବଳିଷ୍ଠ ଏବଂ ଉତ୍କୃଷ୍ଟ କରିବାରେ ସଂସ୍କୃତ ଭୂମିକା ହିଁ ଅନବଦ୍ୟ ବୋଲି ତାଙ୍କର ଅଭିମତ ସତତ ସ୍ୱୀକାର୍ଯ୍ୟ । ତାଙ୍କ ଭାଷାରେ—
Northern languages, apart from the four southern languages, are daughters of Sanskrit and have grown out of Sanskrit. The other languages also, to some extent, have grown from that root and have been closely associated and affected by Sanskrit.[6]

## ଭାରତ ପାଇଁ ସଂସ୍କୃତର ଅବଦାନ ଅତୁଳନୀୟ :

ସଂସ୍କୃତ ଭାଷା ଯଦି ନ ଥାନ୍ତା ତା'ହେଲେ ଭାରତ ଆଜି ବିଶ୍ୱରେ ଏହି ବିଶିଷ୍ଟ ସ୍ଥାନ ଲାଭ କରି ପାରିନଥାନ୍ତା ବୋଲି ବହୁବାର ମୁକ୍ତକଣ୍ଠରେ ସ୍ୱୀକାର କରି ଜବାହରଲାଲଜୀ କହିଛନ୍ତି—

I often wonder which is the most important of many things that have distinguished India in the past in its history of thousands of years. I have no doubt in my mind that it is the Sanskrit language. I think it is that which has embodied the genius of our race, the wisdom of our race and almost every thing that has come out in later years can some how be found to have spung from this magnificent language.[7]

## ସଂସ୍କୃତ ଶିକ୍ଷା :

ସତ୍ୟର ପ୍ରକାଶ କରିବାକୁ ତାଙ୍କର ବ୍ୟାକୁଳିତ ମନ ଭାରତର ଜୀବନ୍ତ ପରମ୍ପରାକୁ ରକ୍ଷିମନ୍ତ କରିବାକୁ ସତତ ଆହ୍ୱାନ ଦେଉ କହୁଥିଲା— I should like to encourage the learning of Sanskrit as widely as possible. Sanskrit gives a certain basis and foundation for our present day languages, still strengthens them, gives them depth and so on. We should cherish it.[8]

ସଂସ୍କୃତ ଶିକ୍ଷା ମାଧ୍ୟମରେ ଯେ ଜନସାଧାରଣଙ୍କ ମଧ୍ୟରେ କେବଳ ଯେ ଭାଷାଗତ ଐକ୍ୟ ଏବଂ ଭାବଗତ ସଂହତି ସ୍ଥାପନା ପାଇଁ ସେ ବ୍ୟାକୁଳ ଥିଲେ, ତାହା ନୁହେଁ, ଏତଭିନ୍ନ ସଂସ୍କୃତରେ ଲୁକ୍କାୟିତ ଅମୂଲ୍ୟ ତତ୍ତ୍ୱକୁ ଲୋକଲୋଚନକୁ ଆଣିବାକୁ ସେ

# ନେହେରୁଙ୍କ ଦୃଷ୍ଟିରେ ସଂସ୍କୃତ

ଅଧ୍ୟାପକ ସଦାନନ୍ଦ ଦୀକ୍ଷିତ

ଆଧୁନିକ ଭାରତବର୍ଷର ନିର୍ମାତା ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଜଣେ ରାଷ୍ଟ୍ରନାୟକ ଓ ରାଜନୀତିଜ୍ଞ ଭାବେ ଲୋକମାନେ ଯେପରି ଜାଣନ୍ତି ତାଙ୍କୁ ଜଣେ କୃତବିଦ୍ୟ ଲେଖକ ଏବଂ ଭାରତୀୟ ସଂସ୍କୃତିର ଉଦ୍‌ଗାତା ରୂପେ ସେପରି ଜାଣନ୍ତି ନାହିଁ । ଭାରତମାତାର ଅନ୍ତର୍ନିହିତ ତତ୍ତ୍ୱକୁ ଅନ୍ୱେଷଣ କରି ସେ ଯେଉଁ ସତ୍ୟକୁ ଉପଲବ୍ଧି କରିଥିଲେ ତାହା ତାଙ୍କ ରଚିତ Discovery of India ପୁସ୍ତକର ପ୍ରତି ପୃଷ୍ଠାକୁ ଅଳଙ୍କୃତ କରିଛି । କେବଳ ସେତିକି ନୁହେଁ ବିଭିନ୍ନ ପ୍ରସଙ୍ଗରେ ଭାରତର ପ୍ରାଣସତ୍ତା ଏବଂ ପ୍ରାଣପ୍ରାଚୁର୍ଯ୍ୟର ପ୍ରକାଶିକା ସଂସ୍କୃତ ଭାଷାର ମହତ୍ତ୍ୱକୁ ପଣ୍ଡିତ ନେହେରୁ ମୁକ୍ତକଣ୍ଠରେ ଘୋଷଣା କରୁଥିଲେ । ଲୋକସଭାର ଗୁରୁତ୍ୱପୂର୍ଣ୍ଣ ବିତର୍କରେ ଅଥବା ସାହିତ୍ୟିକ ସମାବେଶରେ ତାଙ୍କର ସ୍ୱଭାବ ସୁଲଭ କାବ୍ୟିକ ଭାଷା ସଂସ୍କୃତ ଭାଷାର ପ୍ରଶଂସାରେ ମୁଖର ହୋଇ ଉଠୁଥିଲା । ସଂସ୍କୃତ ଭାଷାର ଅଧ୍ୟୟନ ଉପରେ ସେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ ।

ନେହେରୁଙ୍କ ସ୍ୱପ୍ନର ଭାରତବର୍ଷ ଏଯାଏଁ ବାସ୍ତବରେ ରୂପାୟିତ ହୋଇ ପାରିବ ନାହିଁ ଏବଂ ସଂସ୍କୃତ ଭାଷାର ଅଧ୍ୟୟନ ଉପରେ ସରକାରଙ୍କ ହେୟ ମନୋବୃତ୍ତି ବିଶେଷ ହ୍ରାସ ପାଇନାହିଁ । ପଣ୍ଡିତ ନେହେରୁଙ୍କ ଉକ୍ତି ସମୂହକୁ ଉଦ୍ଧାର କରି ସଂସ୍କୃତ ଭାଷାର ବହୁବିଧ ମହତ୍ତ୍ୱ ଉପରେ ଆଲୋକପାତ କରିବା ଏହି ନିବନ୍ଧର ଉଦ୍ଦେଶ୍ୟ ।

## ସଂସ୍କୃତ ଏବଂ ଭାରତୀୟତା :

ପୁନା ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ମହୋତ୍ସବରେ ଦୀକ୍ଷାନ୍ତ ଭାଷଣ ଦେବା ପୂର୍ବରୁ ନେହେରୁଙ୍କୁ ସଂସ୍କୃତ ଭାଷାରେ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ସ୍ୱାଗତର ଉତ୍ତରରେ ପଣ୍ଡିତଜୀ ଯେଉଁ ସତ୍ୟର ଉଦ୍‌ଘାଟନ କରିଥିଲେ ତାହା ଚିରକାଳ ନିମିତ୍ତ ଅମ୍ଳାନ ରହିବ । ପ୍ରତ୍ୟେକ ଭାରତୀୟ ଆତ୍ମା ସଂସ୍କୃତ ସହିତ ଏକ ନିବିଡ ସମ୍ପର୍କ ସୂତ୍ରରେ ସ୍ୱାଭାବିକ ଭାବରେ ବନ୍ଧା ହୋଇଛି । ସେ କହିଥିଲେ -

Unfortunately, I have had no occassion to learn Sanskrit either in school or elsewhere. Consequently, I am unable to follow adequately the Sanskrit citations just read out by the Dean. But I must confess that I was greatly moved and thrilled by the mellifluous rythm of the Sanskrit language. Even the mere sound of that language has gently touched and stirred the inner core of my heart. I believe that history itself has established a kind of innate affinity between Sanskrit and my Indian soul.[1]

## ସଂସ୍କୃତ ହିଁ ଭାରତର ଅମୂଲ୍ୟନିଧି :

ଜୀବନରେ କେବେହେଲେ ସଂସ୍କୃତ ପଢିବାର ସୁଯୋଗ ନ ପାଇ ମଧ୍ୟ ସଂସ୍କୃତ ଭାଷାର ମହନୀୟତାକୁ ସେ ତିଳତିଳ କରି ଅନୁଭବ କରୁଥିଲେ । ଭାରତବର୍ଷର ଗୌରବମୟ ଅତୀତର ଦିବ୍ୟସୌଧ ନିର୍ମାଣରେ ସଂସ୍କୃତ ଯେପରି ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ବର୍ତ୍ତମାନ ଏବଂ ଭବିଷ୍ୟତରେ ମଧ୍ୟ ସେ ଭୂମିକାକୁ ସ୍ୱୀକାର କରିବାକୁ ଯାଇ ସେ କହିଛନ୍ତି—

The past has gone and the present is with us and we work for the future. But I have no doubt that whatever shape that future may take, one of the biggest, the strongest and the powerful and the most valued of our legacies will be the Sanskrit language.[2]

## ସଂସ୍କୃତ ହିଁ ଭାରତର ଗୌରବ :

ଆଗାମୀ ଯୁଗରେ ସଂସ୍କୃତ ଭାଷା ଏବଂ ସାହିତ୍ୟର ଦିବ୍ୟ ଆଲୋକରେ ଉନ୍ମୀଳିତ ହୋଇ ଭାରତବର୍ଷ ଅମୂଲ୍ୟନିଧି ସଂସ୍କୃତର



ସମ୍ବଲପୁର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ୟୁ.ଜି.ସି. ଚେୟାରମ୍ୟାନ୍
ପ୍ରଫେସର ଶ୍ରୀଯୁକ୍ତ ଯଶପାଲ

କେନ୍ଦ୍ରିତ ଥିଲେ । ପଣ୍ଡିତ ନେହେରୁ କହିଥିଲେ—I should like to promote the study of Sanskrit and to put our scholars to work, to explore and to bring to light the burried literature in this language that has bee n almost forgotten.[9]

ସଂସ୍କୃତ ଭାଷାର ଅଧ୍ୟୟନ ଏବଂ ବ୍ୟବହାର ଅଭାବରୁ ଏହା କ୍ରମଶଃ ଯଦି ମୃତଭାଷାରେ ପରିଣତ ହୁଏ, ତା'ହେଲେ ଭାରତର ଅପୂରଣୀୟ କ୍ଷତି ଘଟିବ ବୋଲି ଭବିଷ୍ୟତ ବଂଶଧରମାନଙ୍କୁ ସତର୍କ କରିଦେଇ ନେହେରୁ କହିଛନ୍ତି—

I am an admirer of Sanskrit, not that I know very much of Sanskrit, but I admire it greatly. I think that it would be very pity if Sanskrit becomes a completely dead language in India at any time. That would do great damage to all that we stand for in India.[10]

ମର୍ମେ ମର୍ମେ ସଂସ୍କୃତର ଉପାଦେୟତାକୁ ଅନୁଭବ କରି ଏହାର ବ୍ୟବହାର, ଶିକ୍ଷା, ସୁରକ୍ଷା ପାଇଁ ଆହ୍ୱାନ ଦେଉଥିବା ନେହେରୁଙ୍କ ଏହି ଅଭିବ୍ୟକ୍ତି ସମସ୍ତଙ୍କ ପାଇଁ ସ୍ମରଣୀୟ ।

ଲୋକଭାଷା ପ୍ରଚାର ସମିତି, ବଡ଼ ଓଡ଼ିଆ ମଠ, ପୁରୀ ।

## References


1. Nehru's speech at the University of Poona on the occasion of conferring the honorary degree of D.Litt. on him (Quoted in the address of Prof. R.N. Dandekar on the occasion of the first convocation of Sri Jagannath Sanskrit University, Puri, August, 16, 1985.)
2. Quoted in the address of Dr Shankar Dayal Sharma, Hon'ble Vice-President of India, on the occasion of inaugurating the all-India Sanskrit Convention at Sapru House, New Delhi on 19.8.1989.
3. Report of the Sanskrit Commission, 1956-57, Page-72.
4. Loka Sabha Debates, Page-32
5. Quoted in the massage of Shri E.S. Venkataramiah, Hon'ble Chief Justice of India, sent to the India Digest, Hongkong, No.15, Nov./Dec.-1989.
6. Ibid
7. Quoted in the address of Dr. Shankar Dayal Sharma, Hon'ble Vice-President of India, on the occasion of inaugurating the All India Sanskrit convention at Sapru House, New Delhi on 19.8.1989.
8. Quoted from the massage of Shri E.S. Venkataramiah, Hon'ble Chief Justice of India, sent to the India Digest, Hongkong, No.15, Nov./Dec.-1989.
9. 'Hindu', 13.12.1949
10. Quoted in the massage of Shri E. S. Venkataramiah, Hon'ble Chief Justice of India, sent to the India Digest, Hongkong, No.15, Nov./Dec.-1989.




କଟକଠାରେ ପଙ୍ଗୁ ବିକଳାଙ୍ଗ ଓ କୁଷ୍ଠରୋଗୀମାନଙ୍କ ଭୋଟ ଦାନ

OGP—MP-VI (I. & P.R.) 62—10,000—25.3.1990

